.... "ଯେଉଁ ସୈନ୍ୟମାନଙ୍କର ପ୍ରତ୍ୟକ୍ଷ ସାହାଯ୍ୟରେ ଓ ପ୍ରାଣଦାନରେ ଏ ଦେଶରେ ବ୍ରିଟିଶ୍ ଶାସନ ମଜବୁତ୍ ହୋଇଥିଲା, ସେହି ସେନାବାହିନୀ ମଧ୍ୟ ଏ ଦେଶରୁ ବିଦେଶୀ ଶାସନର ମୂଳୋତ୍ପାଟନ କରିବାକୁ ବାରମ୍ବାର ଦୁଃସାହିକ ଓ ବିପଦ୍‌ଜନକ ଅଭିଯାନ କରି ଶହ ଶହ ସଂଖ୍ୟାରେ ପ୍ରାଣଦାନ ମଧ୍ୟ କରି ଅଛନ୍ତି ।" ଅବଶ୍ୟ ଲେଖକ ଏହି ପ୍ରକ୍ରିୟାକୁ ଏକ ବିଡ଼ମ୍ବନା ବୋଲି ବର୍ଣ୍ଣନା କରି ଅଛନ୍ତି । କିନ୍ତୁ ଏହାହିଁ ହେଉଛି ବିକାଶର ନିୟମ । ଯେଉଁ ସର୍ବହରା ଶ୍ରେଣୀ ପେଟ ପାଟଣାର ତାଗିଦ୍‌ରେ ତାହାର ଲୁହ ଲହୁ ନେଇ ପୁଞ୍ଜିପତିର ପୁଞ୍ଜିକୁ କ୍ରମାଗତ ଭାବେ ବୃଦ୍ଧି କରାଇ ତାହାକୁ ମଜବୁତ୍ କରେ, ସେହି ସର୍ବହରା ଶ୍ରେଣୀ ଶେଷରେ ପୁଞ୍ଜିବାଦକୁ କବର ଦିଏ । ...

ଡକ୍ଟର ନାରାୟଣ

# ଭାରତର ସ୍ୱାଧୀନତା ସଂଗ୍ରାମରେ ସାମରିକ ବିଦ୍ରୋହ

| | |
|---|---|
| ଲେଖକ | ପ୍ରଫୁଲ୍ଲ ଦାସ |
| ପ୍ରକାଶକ | ଲୋହିଆ ଏକାଡେମୀ ଟ୍ରଷ୍ଟ |
| | ପ୍ଲଟ୍ ନଂ - ଏ/୩, ଇଉନିଟ୍ -୯, ଭୁବନେଶ୍ୱର |
| ପ୍ରାପ୍ତିସ୍ଥାନ | 'ନିହାର୍ଡ଼', କଲ୍ୟାଣୀ ନଗର, କଟକ - ୧୩ |
| | 'ଅଗ୍ରଦୂତ', ବାଙ୍କାବଜାର, କଟକ - ୨ |
| ଡିଟିପି ଓ ମୁଦ୍ରଣ : | ଆକୃତି ଗ୍ରାଫିକ୍ସ, ଦାସ ସାହି, କଟକ - ୧୨ |
| ପ୍ରଚ୍ଛଦ | ଶଶୀକାନ୍ତ ରାଉତ, ଗୁଏର୍ନିକା ଗ୍ରାଫିକ୍ସ, କଟକ - ୮ |
| ପ୍ରଥମ ପ୍ରକାଶ | ୨୦୦୬ |
| ମୂଲ୍ୟ | ଟ. ୧୦୦ /- |

***Bharatara Swadhinata Sangramare Samarika Bidroha***

| | |
|---|---|
| Author | **Prafulla Das** |
| Publisher | **Lohia Akademy Trust** |
| | Plot No. A/3, Unit -9, Bhubaneswar (India) |
| Printer | **Akruti Ggraphics** |
| | Dasa Sahi, Sankarpur, Cuttack - 753 012 |
| Language | **Oriya** |
| 1st edition | 2006 |
| Price | **Rs. 100/-** |

# ଉତ୍ସର୍ଗ




ଭାରତର

ପ୍ରଥମ ସ୍ୱାଧୀନତା ସଂଗ୍ରାମ

(୧୮୫୭)ର ୧୫୦ ବର୍ଷ ପୂର୍ତ୍ତି ଉପଲକ୍ଷେ

ଶହୀଦ୍ ହୋଇଥିବା

ସେହି ଅଗଣିତ ଅମ୍ଳାନ ପ୍ରତିଭାମାନଙ୍କୁ

ଅନାବିଳ ସ୍ନେହ ଓ ଅକୁଣ୍ଠ ଶ୍ରଦ୍ଧାର

ସହ ଅର୍ପଣ କରୁଛି ।

॥ ପ୍ରଫୁଲ୍ଲ ଦାସ ॥

# ମୁଖବନ୍ଧ

ସ୍ୱପତ୍ରିକା ''ଅଗ୍ନିବୀଣା''ରେ ଧାରାବାହିକ ଭାବେ ପ୍ରକାଶିତ ଶ୍ରୀଯୁକ୍ତ ପ୍ରଫୁଲ୍ଲ ଦାସଙ୍କର 'ଭାରତର ସ୍ୱାଧୀନତା ସଂଗ୍ରାମରେ ସାମରିକ ବିଦ୍ରୋହ'' ଶୀର୍ଷକ ଲେଖାଗୁଡ଼ିକ ପୁସ୍ତକ ଆକାରରେ ପ୍ରକାଶିତ ହେଉଥିବାର ଜାଣି ମୁଁ ବିଶେଷ ଆନନ୍ଦ ଅନୁଭବ କରୁଅଛି । ଉକ୍ତ ପୁସ୍ତକର ମୁଖବନ୍ଧ ଲେଖିବାର ସମ୍ମାନ ଶ୍ରୀଯୁକ୍ତ ଦାସ ମୋତେ ପ୍ରଦାନ କରିଥିବାରୁ ତାଙ୍କୁ ଅଶେଷ ଧନ୍ୟବାଦ ।

ମାନବ ସମାଜର ଇତିହାସରେ ବହୁ ବୈପ୍ଳବିକ ମହାଯୁଦ୍ଧର ବିବରଣୀରେ କେବଳ ମହାନାୟକମାନଙ୍କର ଜୟଗାନ ଶୁଭେ । କିନ୍ତୁ ଅନଳର ତେଜରେ ଆକର୍ଷିତ ହୋଇ ସେଥିରେ ଲୀନ ହୋଇଯାଉଥିବା ଅସଂଖ୍ୟ ପତଙ୍ଗ ଭଳି ଉପରୋକ୍ତ ସଂଗ୍ରାମମାନଙ୍କରେ ଝାସ ଦେଇଥିବା ଅଗଣିତ ମେହେନତୀ ମଣିଷମାନଙ୍କର ତ୍ୟାଗଦୀପ୍ତ ସଂଗ୍ରାମ କାହାଣୀ କିଏ ବା ଖୋଜେ ? କାର୍ଲମାର୍କ୍ସ କହିଛନ୍ତି ''ବ୍ୟାପକ ଜନଗଣ ହିଁ ଇତିହାସର ପ୍ରକୃତ ନିର୍ମାତା, ଯଦିଓ ମେଧାବୀ ବ୍ୟକ୍ତିମାନଙ୍କ ସେଥିରେ ସ୍ୱତନ୍ତ୍ର ଭୂମିକା ଥାଏ । ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ମହାନାୟକ- ମହାନାୟିକାମାନଙ୍କର ଅବଦାନ ସମ୍ପର୍କରେ ବହୁଲେଖା ପଢ଼ିବାକୁ ମିଳେ ଓ ସମାଜର ବଡ଼ପଣ୍ଡାମାନଙ୍କର ଭାଷଣମାନଙ୍କରୁ ଶୁଣିବାକୁ ମଧ ମିଳେ । କିନ୍ତୁ ସାଧାରଣ ସୈନ୍ୟମାନଙ୍କ ସମ୍ପର୍କରେ ସମାଜର ନୂତନ ପିଢ଼ି କିଛି ପଢ଼ିବାକୁ ବା ଶୁଣିବାକୁ ପାଏନା । କାର୍ଲମାର୍କ୍ସଙ୍କ ଆଦର୍ଶରେ ଅନୁପ୍ରାଣିତ ଶ୍ରୀଯୁକ୍ତ ଦାସ ଏହି ପୁସ୍ତକରେ ତାଙ୍କ କଲମ ମୁନରେ ସେହିମାନଙ୍କୁ ହିଁ ଧରି ରଖି ଅଛନ୍ତି ।

ସୈନ୍ୟବାହିନୀର ବିଦ୍ରୋହ ସୈନ୍ୟମାନଙ୍କର କୌଣସି ପେଶାଗତ ବା ଗୋଷ୍ଠିଗତ ସ୍ୱାର୍ଥ ପାଇଁ ସଂଘଠିତ ହୋଇନଥିଲା । ଏହା ପ୍ରକୃତରେ ହୋଇଥିଲା ଦେଶର ମୁକ୍ତି ସଂଗ୍ରାମରେ ସେମାନେ ଜନଗଣଙ୍କ ହାତରେ ହାତ ଓ କାନ୍ଧରେ କାନ୍ଧ ମିଳାଇ ନିଜ ନିଜକୁ ଉତ୍ସର୍ଗ କରିବା ପାଇଁ ।

ଏ ଦେଶରେ ବିଦେଶୀଶକ୍ତିର ପ୍ରବେଶଠାରୁ ଆରମ୍ଭ କରି ପ୍ରସ୍ଥାନ ବା ତଥାକଥିତ ସ୍ୱାଧୀନତା ପର୍ଯ୍ୟନ୍ତ ଭାରତ ବାହାରେ ଯେଉଁ ସାମରିକ ବିଦ୍ରୋହ ଘଟିଯାଇଛି, ଏ ସମସ୍ତକୁ ଏକ ଗବେଷଣାତ୍ମକ ପଦ୍ଧତିରେ ଲେଖକ ବିଧିବଦ୍ଧ ଭାବରେ ଐତିହାସିକ କ୍ରମରେ ସଜ୍ଜିତ କରି ଅଛନ୍ତି ।

ଶ୍ରୀଯୁକ୍ତ ଦାସଙ୍କ ଉକ୍ତି ଯଥା ''ଯେଉଁ ସୈନ୍ୟମାନଙ୍କର ପ୍ରତ୍ୟକ୍ଷ ସାହାଯ୍ୟରେ ଓ ପ୍ରାଣଦାନରେ ଏ ଦେଶରେ ବ୍ରିଟିଶ୍ ଶାସନ ମଜବୁତ୍ ହୋଇଥିଲା, ସେହି ସେନାବାହିନୀ ମଧ୍ୟ ଏ ଦେଶକୁ ବିଦେଶୀ ଶାସନର ମୂଳୋତ୍ପାଟନ କରିବାକୁ ବାରମ୍ବାର ଦୁଃସାହସିକ ଓ ବିପଦ୍‌ଜନକ ଅଭିଯାନ କରି ଶହ ଶହ ସଂଖ୍ୟାରେ ପ୍ରାଣଦାନ ମଧ୍ୟ କରିଅଛନ୍ତି ।'' ଅବଶ୍ୟ ଲେଖକ ଏହି ପ୍ରକ୍ରିୟାକୁ ଏକ ବିଡ଼ମ୍ବନା ବୋଲି ବର୍ଣ୍ଣନା କରି ଅଛନ୍ତି । କିନ୍ତୁ ଏହାହିଁ ହେଉଛି ବିକାଶର ନିୟମ । ଯେଉଁ ସର୍ବହରା ଶ୍ରେଣୀ ପେଟ ପାଟଣାର ତାଗିଦ୍‌ରେ ତାହାର ଲୁହ ଲହୁ ନେଇ ପୁଞ୍ଜିପତିର ପୁଞ୍ଜିକୁ କ୍ରମାଗତ ଭାବେ ବୃଦ୍ଧି କରାଇ ତାହାକୁ ମଜବୁତ୍ କରେ, ସେହି ସର୍ବହରା ଶ୍ରେଣୀ ଶେଷରେ ପୁଞ୍ଜିବାଦକୁ କବର ଦିଏ । ଋଷ୍ ବିପ୍ଳବ ଓ ଚୀନ ବିପ୍ଳବ ତାହାର ଉଦାହରଣ । ଏହାକୁ ଦୁଇଟି ବିରୋଧୀ ପକ୍ଷ ମଧ୍ୟରେ ଐକ୍ୟ ଓ ସଂଘର୍ଷର ନିୟମ କୁହାଯାଏ । (Law of unity of Opposites)

ଶ୍ରୀଯୁକ୍ତ ଦାସ ଯଥାର୍ଥରେ ଲେଖିଅଛନ୍ତି ଯେ ''କଂଗ୍ରେସ ପାର୍ଟି ବିଦେଶୀମାନଙ୍କ ଦ୍ୱାରା ବିଦେଶୀମାନଙ୍କର ଓ ବିଦେଶୀମାନଙ୍କ ପାଇଁ ଥିଲା ଏକ ସଙ୍ଗଠନ । କିନ୍ତୁ ବ୍ରିଟିଶ୍ ସହିତ ଦର କଷାକଷି ପାଇଁ ଏ ଦେଶର ଉଚ୍ଚବର୍ଗ ଆପାମର ଜନତାକୁ ଯେ ଅହିଂସ ଆନ୍ଦୋଳନକୁ ଟାଣି ଆଣୁଥିଲେ, ତାହା ମନେ ହୁଏନା । ବରଂ ବ୍ରିଟିଶ୍ ବିରୁଦ୍ଧରେ ଭାରତରେ କୋଣେ କୋଣେ ସ୍ୱତଃସ୍ଫୂର୍ତ୍ତ ଭାବେ ଗଢ଼ି ଉଠୁଥିବା ଅସଂଖ୍ୟ ହିଂସାତ୍ମକ ଆନ୍ଦୋଳନକୁ ଅହିଂସ ମାର୍ଗରେ ନିୟନ୍ତ୍ରଣ କରି ବ୍ରିଟିଶ୍‌ମାନଙ୍କର ଜୀବନ ସୁରକ୍ଷା ପାଇଁ ଏହା ଉଦ୍ଦିଷ୍ଟ ଥିଲା । ଭାରତର ଅସଂଖ୍ୟ ନଷ୍ଟପଟ (ଭୟାଳୁ ନୁହଁନ୍ତି) ଜନଗଣଙ୍କୁ ଅହିଂସ ଆନ୍ଦୋଳନରେ ବାନ୍ଧି ରଖିବା ପାଇଁ ଗାନ୍ଧୀଜୀ ଥିଲେ ଏକ ନିପୁଣ କଳାକାର । ବିପ୍ଳବୀ ଶାସ୍ତ୍ରରେ ଏହାକୁ ଜନବିରୋଧୀ ପ୍ରତିବିପ୍ଳବ ବୋଲି କୁହାଯାଏ । ୧୯୨୨ର ଅସହଯୋଗ ଆନ୍ଦୋଳନ, ୧୯୩୦ର ଲବଣ ସତ୍ୟାଗ୍ରହ, ୧୯୪୨ର ଭାରତ ଛାଡ଼ ଆନ୍ଦୋଳନ ଓ ୧୯୪୬ର ନୌ ଗଣ ବିଦ୍ରୋହକୁ ସ୍ୱାଭାବିକ ଗତିରେ ଛାଡ଼ି ନଦେଇ କିପରି ସେଥିରେ ପ୍ରବଳ ବାଧା ସୃଷ୍ଟି କରାଯାଇଛି, ସେ ସମ୍ପର୍କରେ ଲେଖକ ଏହି ପୁସ୍ତକରେ ବିସ୍ତୃତ ଭାବେ ବର୍ଣ୍ଣନା କରିଅଛନ୍ତି ।

୧୮୫୭ର ମହାବିଦ୍ରୋହ ଓ ୧୯୪୪-୪୬ର ନୌବିଦ୍ରୋହ ଏହି ଦୁଇଟି ଯୁଗକୁ ବିପ୍ଳବ ଯୁଗ କହିଲେ ଅତ୍ୟୁକ୍ତି ହେବ ନାହିଁ । କିନ୍ତୁ ୧୯୪୪-୪୬କୁ ସର୍ବାତ୍ମକ ବିପ୍ଳବ ଯୁଗ କହିବା ଠିକ୍ ନୁହେଁ ବୋଲି ମୁଁ ମନେ କରୁଅଛି । କାରଣ ଲେନିନ୍‌ଙ୍କ ଭାଷାରେ ୧୯୪୪-୪୬ ସାମ୍ରାଜ୍ୟବାଦ ତଥା ସର୍ବହରାର ଯୁଗ । ଏହି ଯୁଗରେ ସାମ୍ରାଜ୍ୟବାଦ ବିରୁଦ୍ଧରେ ଗଣତାନ୍ତ୍ରିକ ବିପ୍ଳବକୁ ସଫଳ କରିବାକୁ ହେଲେ ସର୍ବହରା ଶ୍ରେଣୀର ନେତୃତ୍ୱ ହିଁ (ଅର୍ଥାତ୍ ତାହାର କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱ ହିଁ) ଅପରିହାର୍ଯ୍ୟ । ମାଓ-ସେ-ତୁଙ୍ଗଙ୍କ ତତ୍ତ୍ୱରେ ଏହି ବିପ୍ଳବ ପାଇଁ ତିନିଗୋଟି ମୌଳିକ ଉପାଦାନର ଆବଶ୍ୟକତା ପଡ଼େ ।

(୧) ସର୍ବହରା ପାର୍ଟି, (୨) ସର୍ବହରା ଶ୍ରେଣୀର ନେତୃତ୍ୱରେ ଏକ କ୍ଷୁଦ୍ର ଫ୍ରଣ୍ଟ, (୩) ଓ ସର୍ବହରା ପାର୍ଟିର ନେତୃତ୍ୱରେ ଏକ ସଶସ୍ତ୍ର ଗଣମୁକ୍ତି ବାହିନୀ ।

ପୁନଶ୍ଚ ଭାରତ ବର୍ଷ ଭଳି ଅର୍ଥନୈତିକ, ରାଜନୈତିକ ଓ ଭୌଗୋଳିକ ପରିବେଶରେ ସଶସ୍ତ୍ର ଜନ ବିଦ୍ରୋହ ପାଇଁ ଆବଶ୍ୟକ ଥିଲା - ସଶସ୍ତ୍ର ଜନଯୁଦ୍ଧ (People's Armed Insurrection) ତଥା ଲଗାତର ଜନଯୁଦ୍ଧ (Protracted People's war)ର ମିଳିତ ରଣକୌଶଳ । କିନ୍ତୁ ଉପରୋକ୍ତ ସମସ୍ତ ଉପାଦାନ ଦୁର୍ବଳ ଥିଲା । ପ୍ରଥମତଃ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ମାର୍କ୍ସବାଦ- ଲେନିନ୍‌ବାଦରେ ପରିପକ୍ୱ ନଥିଲା ଯାହା ଫଳରେ କି ତାହା ଅନ୍ଧ ଭାବରେ Cmmunist Internationalକୁ ମାନୁଥିଲା ଯାହାକି ଷ୍ଟାଲିନ୍‌ଙ୍କ ନେତୃତ୍ୱରେ ପରିଚାଳିତ ହେଉଥିଲା । ଦ୍ୱିତୀୟତଃ ଯୁକ୍ତ ଫ୍ରଣ୍ଟ ଗଢ଼ିବା ପାଇଁ ତାହା ଅସମର୍ଥ ଥିଲା । ତୃତୀୟତଃ ଯଦିଓ ନେତାଜୀଙ୍କ ନେତୃତ୍ୱରେ ମୁକ୍ତି ବାହିନୀ ଗଠିତ ହୋଇଥିଲା ପ୍ରାୟତଃ ତାହା ଜାପାନ ଉପରେ ନିର୍ଭରଶୀଳ ଥିଲା ତଥା ବିଦେଶରେ ହିଁ ପର୍ଯ୍ୟବେସିତ ଥିଲା, ଯାହାକି ତାହାର ବିପର୍ଯ୍ୟୟ ପାଇଁ ମୁଖ୍ୟ କାରଣ ହୋଇଥିଲା ।

ଶ୍ରୀଯୁକ୍ତ ଦାସ ଯେହେତୁ ଶୋଷଣମୁକ୍ତ ସମାଜ ପ୍ରତିଷ୍ଠା ସକାଶେ ଏକ ସଠିକ୍ ମାର୍ଗ ସ୍ଥିର କରିବା ପାଇଁ ଏହି ପୁସ୍ତକରେ ଉଦ୍ୟମ କରିଅଛନ୍ତି ତେଣୁ ମୁଖବନ୍ଧଟିକୁ ତାତ୍ତ୍ୱିକ ଓ ତର୍କସିଦ୍ଧ କରିବା ଅପରିହାର୍ଯ୍ୟ ହୋଇଥିବାରୁ ତାହା ସାମାନ୍ୟ ଦୀର୍ଘ ହେବାକୁ ବାଧ୍ୟ । ''ଭାରତର ସ୍ୱାଧୀନତା ସଂଗ୍ରାମରେ ସାମରିକ ବିଦ୍ରୋହ'' ଶୀର୍ଷକ ଲେଖାଟି ଦୁଇଶହ ବର୍ଷର ସ୍ୱାଧୀନତା ସଂଗ୍ରାମର ଏକ ସଂକ୍ଷିପ୍ତ ଇତିହାସ । ଇତିହାସ ଯେପରି ସେହି ସମୟର ସାମାଜିକ, ରାଜନୈତିକ ଓ ସାଂସ୍କୃତିକ ଘଟଣାକୁ ବାଦ ଦେଇ ଲେଖା ହୋଇପାରେନା, ସେହି କାରଣରୁ ଲେଖାରେ ତତ୍‌କାଳୀନ ସାମାଜିକ, ଅର୍ଥନୈତିକ ଓ ସାଂସ୍କୃତିକ ଜୀବନ ପ୍ରତିଫଳିତ ହୋଇଅଛି । ଶ୍ରୀଯୁକ୍ତ ଦାସ ବିଭିନ୍ନ ଶ୍ରେଣୀର ଚରିତ୍ର ଓ ମାନସିକତା ଭଳି ସୂକ୍ଷ୍ମ ଉପାଦାନ ଗୁଡ଼ିକୁ ତାଙ୍କ ଲେଖାରେ ସୁନ୍ଦର ଭାବେ ତୋଳି ଧରିଛନ୍ତି ।

୧୮୫୭ରେ ସିପାହୀ ବିଦ୍ରୋହର ବୈଶିଷ୍ଟ୍ୟ ଯେ ସିପାହୀମାନେ ବିଦ୍ରୋହ କରି କେବଳ ଜନସାଧାରଣଙ୍କ ମଧ୍ୟରେ ବୈପ୍ଳବିକ ଜାଗରଣ ସୃଷ୍ଟି କରିଛନ୍ତି, ତାହା ନୁହେଁ, ବିଫଳ ମନୋରଥ ହୋଇ ବସି ଯାଇଥିବା ରାଜା ମହାରାଜା- ନବାବ ଓ ରାଣୀ- ମହାରାଣୀ, ବେଗମ୍ ଜମିଦାର-ଗୌନ୍ତିଆ, ହିନ୍ଦୁ ପୁରୋହିତ, ମୁସଲମାନ ମୌଲବୀ, କନ୍ଧ, କୋହ୍ଲ ସାନ୍ତାଳ ଆଦି ବିଭିନ୍ନ ଉପଜାତିର ମୁଖିଆମାନଙ୍କୁ ମଧ୍ୟ ଏହି ବିଦ୍ରୋହର ନେତୃତ୍ୱ ନେବାପାଇଁ ସେମାନଙ୍କ ହୃଦୟରେ ପ୍ରେରଣା ଜାଗ୍ରତ କରିପାରି ଅଛନ୍ତି- ଯେଉଁ ଅଦ୍ଭୁତ ସମନ୍ୱୟ କି ମାନବ ଇତିହାସରରେ ବିରଳ ।

ଜର୍ମାନୀରେ ନେତାଜୀଙ୍କ ଦ୍ୱାରା ଫ୍ରି ଇଣ୍ଡିଆ ସେଣ୍ଟର', ଇଣ୍ଡିଆନ୍ ଲିଜିଅନ୍' ଭଳି ଦୁଇଟି ଗୁରୁତ୍ୱପୂର୍ଣ୍ଣ ସଙ୍ଗଠନ ଗଠିତ ହେବା ଏବଂ ପରେ ପରେ ପୂର୍ବ ଏସିଆରେ ରାସ ବିହାର ବୋଷ୍‌ଙ୍କ ଦ୍ୱାରା ଗଠିତ ଆଜାଦ୍ ହିନ୍ଦ ଫୌଜ, ଏବଂ ପରେ ସୁଭାଷ ତାହାର ନେତୃତ୍ୱ ନେବା ଓ ମୁକ୍ତି ବାହିନୀ ଦ୍ୱାରା ଭାରତର କିଛି ଅଞ୍ଚଳ ''ମୁକ୍ତାଞ୍ଚଳ''ରେ ପରିଣତ କରିବା ଆଦି କୃତିତ୍ୱ ସ୍ୱାଧୀନତା ସଂଗ୍ରାମ ଇତିହାସରେ ଗୋଟିଏ ଗୋଟିଏ ଗୌରବୋଜ୍ଜ୍ୱଳ ଅଧ୍ୟାୟ ।

ନେତାଜୀ ସୁଭାଷଙ୍କ ବୀରତ୍ୱପୂର୍ଣ୍ଣ ସଂଘର୍ଷ ଯେତିକି ପ୍ରେରଣା ଦାୟକ, ତାଙ୍କର ଶେଷ ଅନ୍ତର୍ଦ୍ଧାନ ସେହିଭଳି ଅଶ୍ଳୁଳ । ସେ କେବେ କେଉଁଠାରେ ମୃତ୍ୟୁବରଣ କରିଥିବେ, ତାହା ଯାହା ହେଉନା କାହିଁକି ମୂଳରୁ ଶେଷ ପର୍ଯ୍ୟନ୍ତ ସୋଭିଏତ୍ ରୁଷ୍‌କୁ ଯିବାକୁ ତାଙ୍କର ପ୍ରବଳ ଉତ୍କଣ୍ଠା, ସାମ୍ରାଜ୍ୟବାଦୀ ଚକ୍ରାନ୍ତକାରୀମାନଙ୍କୁ ଖୋରାକ ଯୋଗାଇଥିଲା– ତାଙ୍କ ଭଳି ଜଣେ ନିଷ୍ପାପ ଓ ନିଷ୍କପଟ ଅମ୍ଳାନ ବ୍ୟକ୍ତିତ୍ୱକୁ ଲୋକଲୋଚନରୁ ଅନ୍ତର୍ଦ୍ଧାନ କରିଦେବା ପାଇଁ ।

ପ୍ରଫୁଲ୍ଲ ବାବୁଙ୍କର ଏହି ପୁସ୍ତକରେ ଅନ୍ୟତମ ବିଶେଷତ୍ୱ ହେଉଛି- ସେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ହିନ୍ଦୁ ଓ ମୁସଲମାନଙ୍କ ଭିତରେ ଭ୍ରାତୃତ୍ୱ ଓ ଐକ୍ୟ ପ୍ରତି ଶ୍ରଦ୍ଧା ଓ ସମ୍ମାନ ସହ ବହୁତ ଗୁରୁତ୍ୱ ଦେଇ ଅଛନ୍ତି । ସେହିପରି ନାରୀମାନଙ୍କର ଯୁଦ୍ଧରେ ଅଂଶ ଗ୍ରହଣ- ସେ ସେବିକା ହେଉ, ମହାରାଣୀ ହେଉ ବା ବେଗମ୍ ହେଉ ବା ପୂର୍ବ ଏସିଆରେ ଗଠିତ ଆଜାଦ୍ ହିନ୍ଦ ଫୌଜର ନେତୃତ୍ୱରେ ଝାନ୍‌ସୀ ରାଣୀ ରେଜିମେଣ୍ଟ୍' ହେଉ - ଶ୍ରୀଯୁକ୍ତ ଦାସଙ୍କୁ ବହୁମାତ୍ରାରେ ଭାବ ବିହ୍ୱଳ କରିଦେଇଛି ।

ଅହିଂସା ମୁଖାଧାରୀ ଜାତୀୟ କଂଗ୍ରେସ ଓ ତାହାର ନେତୃବୃନ୍ଦ ବାସ୍ତବରେ କେତେ ଯେ ହିଂସ୍ର, ତାହା ପ୍ରଥମ ବିଶ୍ୱଯୁଦ୍ଧବେଳେ ଗାଁ ଗାଁ ବୁଲି ବ୍ରିଟିଶ୍ ସୈନ୍ୟବାହିନୀରେ ଭାରତୀୟ ଯୁବକମାନଙ୍କୁ ନିଯୁକ୍ତି ଦେବାଠାରୁ ଆରମ୍ଭ କରି ଲାଲ୍‌କିଲ୍ଲାରେ ଆଜାଦ୍ ହିନ୍ଦ୍ ଫୌଜର ସାମରିକ ବିଚାର ହେଉଥିବାବେଳେ ସେଥିପ୍ରତି ଉଦାସୀନତା ପ୍ରକାଶ କରିବା ଆଦିର ବହୁ ପ୍ରମାଣ ଶ୍ରୀଯୁକ୍ତ ଦାସ ତାଙ୍କ ଲେଖାରେ ଉଲ୍ଲେଖ କରିଅଛନ୍ତି ।

ମେରୁଦଣ୍ଡହୀନ ଜାତୀୟ କଂଗ୍ରେସ ବ୍ରିଟିଶ୍ ଶକ୍ତିକୁ ଏଭଳି ଭୟ କରୁଥିଲା ଯେ ବ୍ରିଟିଶ୍ ଶକ୍ତିର ସ୍ୱାର୍ଥରେ ସେମାନେ ନିଜର ସ୍ୱାଧୀନ ମତକୁ ମଧ୍ୟ ବଳିଦାନ୍ କରୁଥିଲେ ।

ଉଦାହରଣ ସ୍ୱରୂପ ପ୍ରଥମ ଅଗଷ୍ଟ ପନ୍ଦର ପୂର୍ବରୁ ମଧ୍ୟବର୍ତ୍ତୀ କାଳୀନ ସରକାରର ପ୍ରଧାନମନ୍ତ୍ରୀ ରୂପେ ନେହରୁ କେନ୍ଦ୍ର ଆସେମ୍ବଲିରେ ଏକ ସର୍ବସମ୍ମତ ପ୍ରସ୍ତାବ ଗ୍ରହଣ କରି ବନ୍ଦୀ ଆଜାଦ୍ ହିନ୍ଦ ଫୌଜମାନଙ୍କୁ ମୁକ୍ତ କରିବା ସକାଶେ ଉଦ୍ୟମ କରିଥିଲେ । କିନ୍ତୁ ତତ୍‌କାଳୀନ ଭାଇସରାୟ ଲର୍ଡ ମାଉଣ୍ଟବ୍ୟାଟେନ୍ ଓ ସର୍ବୋଚ୍ଚ ବ୍ରିଟିଶ୍ ସେନାପତି ଅଚୀନଲେକ୍ ସେହି ପ୍ରସ୍ତାବକୁ ବିରୋଧ କରିବାରୁ ତାହାକୁ ନେହରୁ ସ୍ଥଗିତ ରଖିଲେ । ''ସେପରି କଲେ ସ୍ୱାଧୀନ ଭାରତର ସୈନ୍ୟମାନଙ୍କ ଭିତରେ ଆପଣ ଶୃଙ୍ଖଳା ରଖିପାରିବେ ନାହିଁ ।'' ନେହରୁ ତାହା

ମାନିଗଲେ । ବୀର ଆଜାଦ୍ ହିନ୍ଦ୍ ଫୌଜକୁ ସମ୍ମାନ ଦେଖାଇବା ଦୂରେ ଥାଉ ଅଗଷ୍ଟ ପନ୍ଦର ତାରିଖରେ ସାରା ଦେଶରେ ବିଭିନ୍ନ ଜେଲ୍‌ରେ ଦଣ୍ଡ ଭୋଗୁଥିବା ଚୋର ଡକାୟତ ଖୁନୀ ଆସାମୀ ମାନଙ୍କ ସହ ସେହି ବୀର ସିପାହୀମାନଙ୍କୁ ଖଲାସ କରି ବରଂ ଅପମାନିତ କଲେ । ସେମାନଙ୍କୁ ସର୍ବ କ୍ଷମା ବା amensty ଦିଆଗଲା ।

ସାମରିକ ଅସନ୍ତୋଷ ସହ ଜନ ଅସନ୍ତୋଷ ମିଶିଗଲେ, ତାହା ଯେ କେତେ ଭୟାବହ ହୋଇଉଠେ, ତାହାର ବିଶ୍ଳେଷଣ ଲେଖକଙ୍କର ରାଜନୈତିକ ଦୃଷ୍ଟିକୋଣର ତୀବ୍ରତାକୁ ପରିପ୍ରକାଶ କରେ ।

ଲେଖକଙ୍କର ବଳିଷ୍ଠ ଭାଷା ଏବଂ ଶୈଳୀ ଏତେ ଶକ୍ତିଶାଳୀ ଯେ ତାହା ଏକ ସ୍ଥାଣୁ ବ୍ୟକ୍ତି ମଧ୍ୟରେ ବି ଉଷ୍ମତା ଭରି ଦେବ । ସ୍ୱାଭିମାନଶୂନ୍ୟ ନକଲି ପାଶ୍ଚାତ୍ୟ ସଭ୍ୟତାରେ ଉଦ୍‌ବୁଦ୍ଧ ବ୍ୟକ୍ତିମାନଙ୍କୁ ଛାଡ଼ିଦେଲେ, ଅନ୍ୟ ଯେ କୌଣସି ବ୍ୟକ୍ତି ଯଦି ଏହି ପୁସ୍ତକଟି ଅଧ୍ୟୟନ କରେ, ତେବେ ବର୍ତ୍ତମାନ ଚାଲିଥିବା ବହୁଜାତୀୟ କମ୍ପାନୀମାନଙ୍କର ଭାରତ ତଥା ଓଡ଼ିଶା ଉପରେ ଆକ୍ରମଣ ବିରୁଦ୍ଧରେ ନିଃସନ୍ଦେହରେ ଏକ ସଶସ୍ତ୍ର ସଂଗ୍ରାମ ଗଢ଼ି ତୋଳିବ ଏବଂ ଅତ୍ୟାଚାରୀ ଶାସକ  ଶୋଷକ ଶ୍ରେଣୀ ବିରୋଧରେ ସଂଗ୍ରାମ ଚଳାଇ ରଖିଥିବା ବିପ୍ଳବୀମାନଙ୍କୁ ମଧ୍ୟ ଏହି ପୁସ୍ତକଟି ପ୍ରଚୁର ପ୍ରେରଣା ଯୋଗାଇଦେବ ।

ଶ୍ରୀଯୁକ୍ତ ଦାସଙ୍କର ଲେଖାର ବୈଶିଷ୍ଟ୍ୟ ଏହା ଯେ ପୁସ୍ତକଟି ଅଧ୍ୟୟନ କଲେ, ଏହାର ପ୍ରତ୍ୟେକ ପଂକ୍ତି ଓ ଅନୁଚ୍ଛେଦ ଗୁଡ଼ିକୁ ଉଦ୍ଧୃତ କରିବାର ପ୍ରବଣତା ବଢ଼ିଯାଏ ।

ଏହି ପାଣ୍ଡୁଲିପିକୁ ଅଧ୍ୟୟନ କରୁ କରୁ ମୋତେ ଜଣାପଡୁଥିଲା ଯେପରିକି ବ୍ରିଟିଶ୍ ଶକ୍ତିର ଭାରତ ଭୂଇଁରେ ପ୍ରବେଶ ମାତ୍ରେ ୧୭୫୭ର ପଲାସୀ ଯୁଦ୍ଧଠାରୁ ଆରମ୍ଭ କରି ଅଦ୍ୟାବଧି ସାମ୍ରାଜ୍ୟବାଦ ବିରୋଧୀ ସଶସ୍ତ୍ର ସଂଗ୍ରାମରେ ହିମାଳୟରୁ କୁମାରିକା ଯାଏ ସମସ୍ତ ସଂଗ୍ରାମର ଲେଖକ ଶ୍ରୀଯୁକ୍ତ ଦାସ ଏକ ସେନାପତି ସାଜି କମାଣ୍ଡ କରି ଚାଲିଛନ୍ତି - ''March Forward''ଏବଂ ମୁଁ ତାଙ୍କର ଆଜ୍ଞାବହ ସୈନିକଟି ପରି ଆଗକୁ ଆଗକୁ ମାଡ଼ି ଚାଲିଛି ।

ବାସ୍ତବରେ 'ଭାରତରେ ସ୍ୱାଧୀନତା ସଂଗ୍ରାମରେ ସାମରିକ ବିଦ୍ରୋହ' ପୁସ୍ତକଟି ପୁସ୍ତକ ଭାବରେ ନ ରହୁ ବରଂ ଦୁଇଶତ ବର୍ଷର ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିବା ଅଗଣିତ ବୀରମାନଙ୍କର ଏକ ଶହୀଦ୍ ସ୍ତମ୍ଭ ଭଳି ଚିର ନମସ୍ୟ ହୋଇ ରହିବ ।

।। ଇତି ।।

ଡକ୍ଟର ନାରାୟଣ
ବରୀ ରୋଡ୍, ବାଲେଶ୍ୱର
୨୫/ଡିସେମ୍ବର ୨୦୦୬

# ଲେଖକୀୟ

ଭାରତର ସ୍ୱାଧୀନତା ସଂଗ୍ରାମରେ ''ବିପ୍ଳବବାଦୀ ବା ସଶସ୍ତ୍ର ସଂଗ୍ରାମର ଅବଦାନ'' ସମ୍ପର୍କରେ ପଢ଼ାପଢ଼ି ଓ ଲେଖାଲେଖି କରିବା ଯାହାକି ୧୯୭୨ରେ ଆରମ୍ଭ ହୋଇଥିଲା- ଏହି ପୁସ୍ତକଟିରେ ସେହି ପର୍ଯ୍ୟାୟର ପରିସମାପ୍ତି ଘଟିଲା । ଏ ପର୍ଯ୍ୟନ୍ତ ପ୍ରକାଶିତ ସେହି ପୁସ୍ତକଗୁଡ଼ିକ ହେଲା- ୧. ଅଗ୍ନିଯୁଗର ଆହ୍ୱାନ, ୨. ଭାରତର ସଶସ୍ତ୍ର ମୁକ୍ତି ସଂଗ୍ରାମ, ୩. କଳାପାଣିରେ ଅଗ୍ନିଶିଖା, ୪. ଅଗ୍ନିଯୁଗ ପୁରାଣ,୫. ଭାରତର ନାରୀ ବିପ୍ଳବୀ ରକ୍ତସ୍ନାତା, ୬. ଫାଶୀ ମଞ୍ଚରେ ବିପ୍ଳବୀ, ୭. ନେତାଜୀ ଆଉ ଫେରି ନାହାନ୍ତି, ୮. ଭାରତ ବିଭାଜନର ସେହି ରକ୍ତାକ୍ତ ଅଗଷ୍ଟ ପନ୍ଦର, ୯. ସଶସ୍ତ୍ର ସ୍ୱାଧୀନତା ଯୁଦ୍ଧରେ ଓଡ଼ିଶାର ବୀର ଓ ବୀରାଙ୍ଗନା, ୧୦. ଭାରତର ସ୍ୱାଧୀନତା ଯୁଦ୍ଧରେ ସାମରିକ ବିଦ୍ରୋହ । ଆନନ୍ଦର କଥା ଉପରୋକ୍ତ ଅଧିକାଂଶ ବହି ଓଡ଼ିଆ ପାଠକ ପାଠିକାମାନଙ୍କଦ୍ୱାରା ଆଦୃତ ହୋଇଅଛି, ଯାହା ଫଳରେ ତିନିଖଣ୍ଡ ପୁସ୍ତକର ୨ୟ ସଂସ୍କରଣ ମଧ୍ୟ ପ୍ରକାଶିତ ହେଲାଣି ଏବଂ ''ଫାଶୀମଞ୍ଚରେ ବିପ୍ଳବୀ'' ପୁସ୍ତକଟି ଜୀବନୀ-ସାହିତ୍ୟ ପର୍ଯ୍ୟାୟରେ ୧୯୯୮ରେ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ମଧ୍ୟ ହୋଇଅଛି । ଏହି କୃତିତ୍ୱ ଲେଖକର ନୁହେଁ, ତାହା ବିପ୍ଳବବାଦୀ ସାହିତ୍ୟର । ଅବଶ୍ୟ ସାହିତ୍ୟ ଏକାଡେମୀମାନେ ଇତିହାସକୁ ପୁରସ୍କାର ଉପଯୋଗୀ ସାହିତ୍ୟ ଭାବରେ ବିଚାର କରନ୍ତି ନାହିଁ । କିନ୍ତୁ ଇତିହାସ ଯେ ଗଳ୍ପ- ନାଟକ-ଉପନ୍ୟାସ ଅପେକ୍ଷା ଅଧିକ ରସାଳ, ଇତିହାସର ସତ୍ୟ ଘଟଣାବଳୀ ଯେ ନାଟକ-ଉପନ୍ୟାସରେ କଳ୍ପନାତୀତ ଓ ପାଠକ ଉପରେ ତାହାର ପ୍ରଭାବ ଯେ ସୁଦୂରପ୍ରସାରୀ, ଏହା ସାହିତ୍ୟାଚାର୍ଯ୍ୟମାନେ ଉପଲବ୍ଧି କରିବା ବିଧେୟ ।

କେଉଁ ଔପନ୍ୟାସିକ ବା ନାଟ୍ୟକାର କଳ୍ପନା କରିବାକୁ ସାହସ କରିବ ଯେ- ଗୋଟାଏ ମା' ଲାଗ୍ ଲାଗ୍ ତିନି ଗୋଟି ପୁତ୍ରକୁ ଫାଶୀଖୁଣ୍ଟକୁ ପଠାଇସାରି ପ୍ରାର୍ଥନା କରନ୍ତି, ''ପ୍ରଭୁ, ମୋତେ ଏଭଳି ଆହୁରି ସନ୍ତାନ ଦେଉଥାଅ, ଦେଶ ସ୍ୱାଧୀନ ନହେବା ପର୍ଯ୍ୟନ୍ତ ମୁଁ ଏହିଭଳି ସେ ପୁତ୍ରମାନଙ୍କୁ ଦେଶ ମାତୃକାର ମୁକ୍ତି ଯଜ୍ଞରେ ଆହୁତି ଦେଇ ନିଃସନ୍ତାନ ହୋଇଯାଉଥାଏ ।''

'ଭାରତର ସଶସ୍ତ୍ର ମୁକ୍ତି ସଂଗ୍ରାମ' ଗ୍ରନ୍ଥରେ ଥିବା ମହାରାଷ୍ଟ୍ରର ଚାପେକାର ସଞ୍ଜ୍ଞାଧାରୀ ତିନିଭାଇଙ୍କ ମୃତ୍ୟୁ ସମ୍ପର୍କୀୟ ଉପରୋକ୍ତ ବିବରଣୀ ପାଠକରି ପ୍ରଖ୍ୟାତ

ଔପନାସିକା ପ୍ରତିଭା ରାୟ କିପରି ଅଭିଭୂତା ହୋଇ 'ଜନନୀର ରୂପ' ଶୀର୍ଷକ ଗଳ୍ପଟିଏ ଲେଖି ପକାଇଲେ, ତାହା ସେ ନିଜେ ପ୍ରକାଶ କରିଥିଲେ ଲୋକରତ୍ନ କୁଞ୍ଜବିହାରୀଙ୍କ ଜନ୍ମ ଦିବସରେ ଏହି ଅକିଞ୍ଚନ ଲେଖକର ସମ୍ବର୍ଦ୍ଧନା ସଭାରେ । ଇତିହାସରେ ଘଟିଥିବା ବହୁ ଘଟଣା ଉପନ୍ୟାସ ଭଳି ଅବିଶ୍ୱାସ୍ୟ ମନେ ହେଲେ ମଧ ତାହା କଳ୍ପନା ନୁହେଁ, ବାସ୍ତବ । ବିଶ ବିଶ୍ରୁତ ଇତିହାସକାର ଟୟନବିଙ୍କ ମତରେ ସତ୍ୟ ଆଧାରିତ ଘଟଣାବଳୀର ସମୟାନୁକ୍ରମରେ ଓ ଔପନାସିକ ଶୈଳୀରେ ଉପସ୍ଥାପନ ହିଁ ଇତିହାସ ରଚନା ବା ସଙ୍କଳନର ପ୍ରକୃତ ମାର୍ଗ ।

ଏହି ଲେଖକ ଟୟେନ୍‌ବିଙ୍କର ପ୍ରଦର୍ଶିତ ମାର୍ଗକୁ ଅନୁସରଣ କରିବାରେ କେତେ ସମର୍ଥ ହୋଇଛନ୍ତି- ତାହାର ବିଚାର ପାଠକମାନେ ହିଁ କରିବେ । ତଥାପି କେତେକ ବିଶିଷ୍ଟ ପାଠକ ଲେଖକର ଦୁଇ ତିନିଟି ପୁସ୍ତକ ସମ୍ପର୍କରେ ଯେଉଁ ମନ୍ତବ୍ୟ ଦେଇଛନ୍ତି, ତାହା ଏହିଠାରେ ଉଲ୍ଲେଖ କରିବାର ଲୋଭ ସମ୍ବରଣ କରିପାରି ନାହିଁ । ତଥାପି ତାହାର ବିସ୍ତୃତ ବର୍ଣ୍ଣନା ଆତ୍ମପ୍ରଶଂସାରେ ଦୋଷଦୁଷ୍ଟ ହେବାର ଆଶଙ୍କାରେ ସେଗୁଡ଼ିକର ସାମାନ୍ୟ ସୂଚନା ମାତ୍ର ଦେଉଅଛି ।

ଶହୀଦ ବାସୁ ବିସୁନି (କନିକା ପ୍ରଜା ଆନ୍ଦୋଳନର ଇତିହାସ) ପୁସ୍ତକର ଉନ୍ମୋଚନ ଅବସରରେ ସବୁଜ ଯୁଗର ଅନ୍ୟତମ ପ୍ରତିଭା ଜଷ୍ଟିସ୍ ହରିହର ମହାପାତ୍ର କହିଥିଲେ ''ଏହି ପୁସ୍ତକଟିକୁ ଇତିହାସ ନକହି 'ଔପନ୍ୟାସିକ ଇତିହାସ ବା ଐତିହାସିକ ଉପନ୍ୟାସ' କହିଲେ ତାହା ଅଧିକ ଯୁକ୍ତିଯୁକ୍ତ ହେବ'' । ସେହିପରି 'କଳାପାଣିରେ ଅଗ୍ନିଶିଖା' ପୁସ୍ତକର ସମୀକ୍ଷା କରି ବିଶିଷ୍ଟ ବାମପନ୍ଥୀ ଶ୍ରମିକ ନେତା ଅଜେୟ ରାଉତ 'ଶ୍ରମିକ ଏକତା' ପତ୍ରିକାରେ ଲେଖିଥିଲେ ''କଳାପାଣିର ବନ୍ଦୀ କ୍ରିମିନାଲ୍‌ଙ୍କ ଜୀବନ ଚିତ୍ର ଦେବାକୁ ଯାଇ ଲେଖକ ସେମାନଙ୍କ ସହ ଏଭଳି ଏକାତ୍ମ ହୋଇ ଯାଇ ଅଛନ୍ତି ଯେ ପାଠକ ବେଳେବେଳେ ଅନୁଭବ କରେ ଯେପରିକି ନିଜେ ଲେଖକ ଜଣେ ଡେଞ୍ଜରସ୍ କ୍ରିମିନାଲ୍ ।''

ଏହି 'ସାମରିକ ବିଦ୍ରୋହ' ପୁସ୍ତକର ମୁଖବନ୍ଧରେ ସ୍ୱୟଂ ଡକ୍ଟର ନାରାୟଣଙ୍କ ଭଳି ବିଦ୍ୱାନ ହେତୁବାଦୀ ବିପ୍ଳବୀ ମଧ ପୁସ୍ତକ ସମ୍ବନ୍ଧରେ ସାମାନ୍ୟ ଭିନ୍ନ ରୂପରେ ହେଲେ ବି କିଛି ବ୍ୟତିକ୍ରମ ଅନୁଭବ କରିଅଛନ୍ତି ଯାହାକି ପ୍ରକାଶିତ ମୁଖବନ୍ଧର ଶେଷାଂଶରେ ଉଲ୍ଲେଖ କରିଅଛନ୍ତି । ବିପ୍ଳବୀ ଶହୀଦଙ୍କର କୃଚ୍ଛ୍ରସାଧନା ଓ ଆତ୍ମୋତ୍ସର୍ଗ ଏଭଳି ରୋମାଞ୍ଚକର ଓ ହୃଦୟ ସ୍ପର୍ଶୀ ଯେ ତାହାକୁ ସେହି ଆକାରରେ ଓ ସମ୍ଭବ ହେଲେ ସେ ସମ୍ପର୍କରେ କଥିତ (Anecdote) ବା ସଂସ୍ଲିଷ୍ଟ ଚିତ୍ତାକର୍ଷକ ଆଖ୍ୟାନ ବା କାହାଣୀକୁ ଯୋଡ଼ିଦେଲେ ତାହା ସ୍ୱତଃ ଏକ ଔପନ୍ୟାସିକ ଧ୍ୱନି ବା ଶୈଳୀ ସୃଷ୍ଟି କରେ । ତାହାଫଳରେ ନୀରସ ବା କେମିତି ଶୁଷ୍କ ବୋଧ ହେଉଥିବା ଇତିହାସର ସେହି ଶୁଷ୍କ କାଷ୍ଠରେ ଭରିଦିଏ ନବକିଶଳୟ ଓ

ସୁରଭିତ ପୁଷ୍ପ । ନୈରାଶ୍ୟ ଜର୍ଜରିତ ହତାଶ ମଣିଷମାନଙ୍କୁ ମଧ୍ୟ ନବଜୀବନ ପ୍ରଦାନ କରି ସେମାନଙ୍କ ହୃଦୟରେ ସୃଷ୍ଟି କରେ ବୈପ୍ଳବିକ ପ୍ରେରଣା ଓ ଉଦ୍ଦୀପନା ।

ସେହି ମୃତ୍ୟୁଞ୍ଜୟୀ କିଶୋରମାନଙ୍କୁ ଲକ୍ଷ୍ୟ କରି ରବୀନ୍ଦ୍ରନାଥ ଲେଖିଥିଲେ "ଭୂମା"କୁ ମନୁଷ୍ୟ ଯେତେବେଳେ ସ୍ୱଦେଶ ମଧ୍ୟଦେଇ ଦେଖେ, ସେତେବେଳେ ତାହାର ଆତ୍ମପ୍ରାଣରେ ମମତା ଆଉ ରହେ ନାହିଁ । ସେତେବେଳେ ମନୁଷ୍ୟ ଆନନ୍ଦ ରୂପ ପ୍ରାମୃତମ - ନିଜର ଆନନ୍ଦରୂପକୁ ଅମୃତରୂପକୁ ସର୍ବତ୍ର ସୃଷ୍ଟି କରିଥାଏ । ପ୍ରଦୀପର ଶିଖା ଭଳି ଆତ୍ମଦାନରେ ହିଁ ମନୁଷ୍ୟର ଆତ୍ମୋପଲବ୍ଧି । ... ଯେତେବେଳେ କୌଣସି ବୃହତ୍ ଶକ୍ତିର ଆନନ୍ଦ ତାହା ମଧ୍ୟରେ ଜାଗି ଉଠେ, ସେତେବେଳେ ବାହାର କୃପଣତା କୁଆଡ଼େ ଚାଲିଯାଏ । ସେ ରିକ୍ତ ହୋଇ ମଧ୍ୟ ପୂର୍ଣ୍ଣ ହୋଇଉଠେ । ମୃତ୍ୟୁ ମଧ୍ୟରେ ସେ ଅମୃତର ଆସ୍ୱାଦ ପାଏ । ସେଥିପାଇଁ ମଣିଷ କହେ "ଭୂମୈବ ସୁଖମ୍, ଭୂମାହି ମୋ'ର ସୁଖ ।" ଭୂମାତ୍ୱେବ ବିଜିଜ୍ଞ ସତବ୍ୟଃ । ଭୂମାକୁ ହିଁ ଆମକୁ ଜାଣିବାକୁ ହେବ । ନାଳ୍ପେ ସୁଖ ମସ୍ତି-ଅଳ୍ପରେ ମୋର ସୁଖ ନାହିଁ ।

ଆତ୍ମାକୁ ଅବିନଶ୍ୱର ମନେ କରୁଥିବା ବିପ୍ଳବୀମାନେ ଫାଶୀ ଖୁଣ୍ଟ ଯେ ଆରୋହଣ କରିବା ବେଳେ ଭାବୁଥିଲେ ଯେ "ଆମ ହିନ୍ଦୁ, ମରଣକୁ ଭୟ କଲେ ଜୀବନର ପ୍ରଥମ ସୋପାନ ମଧ୍ୟ ଆମ୍ଭେମାନେ ଅତିକ୍ରମ କରିପାରିବା ନାହିଁ । ଆମେ ଜାଣୁ ଯେ ମୃତ୍ୟୁ ଆମର ହୁଏନା, ହୁଏ ଏହି ନଶ୍ୱର ଶରୀରର । ଆତ୍ମା ତ ଅମର । ସେହି ଆତ୍ମା ହିଁ ମୁଁ ।"

ଭଗବତ୍ ଗୀତାରେ କୁହାଯାଇଛି-

"ହତୋବା ପ୍ରାପ୍ସ୍ୟସି ସ୍ୱର୍ଗମ୍, ଜିତ୍ୱାବା ଭୋକ୍ଷସେ ମହୀ,

ତସ୍ମାଦୁତ୍ତିଷ୍ଠ କୌନ୍ତେୟ ଯୁଦ୍ଧାୟ କୃତ ନିଶ୍ଚୟ । ୩୭ ॥

ଅର୍ଥାତ୍, ମରିଲେ ସ୍ୱର୍ଗ ଲାଭ, ଜୟ କଲେ ରାଜ୍ୟଭୋଗ କରିବ । ଯେଉଁମାନେ ଭଗବଦ୍ ଗୀତାର ବାର୍ତ୍ତା ଓ ନିର୍ଦ୍ଦେଶକୁ ଅଲଂଘନୀୟ ମନେ କରୁଥିଲେ ଏବଂ ତାହା ସ୍ୱୟଂ ଈଶ୍ୱର ବା ଶ୍ରୀକୃଷ୍ଣଙ୍କ ମୁଖ ନିଃସୃତ ବାଣୀ ବୋଲି ଦୃଢ଼ ଭାବରେ ବିଶ୍ୱାସ କରୁଥିଲେ; ଯେଉଁ ସ୍ୱଳ୍ପ ସଂଖ୍ୟକ ମୁସଲମାନ ଧର୍ମାବଲମ୍ବୀ ବିପ୍ଳବୀ ଆନ୍ଦୋଳନରେ ଯୋଗଦେଇ ପ୍ରାଣ ଦଣ୍ଡ ଭୋଗିଥିଲେ, ସେମାନେ ମଧ୍ୟ ନିଜ ନିଜ ଧର୍ମବିଶ୍ୱାସ ଅନୁସାରେ ଅନୁପ୍ରେରିତ ହୋଇ ବିଶ୍ୱାସ କରୁଥିଲେ ଯେ ସେମାନେ ମୃତ୍ୟୁ ପରେ 'ଆଲ୍ଲା'ଙ୍କ ଦ୍ୱାରା ପୁରସ୍କୃତ ହେବେ ।

ସେହି ଈଶ୍ୱରବିଶ୍ୱାସୀ ଦେଶପ୍ରେମୀମାନଙ୍କ ମଧ୍ୟରୁ କାହାରି କାହାରି ମନରେ ପରଜନ୍ମରେ ପୁରସ୍କାର ପ୍ରାପ୍ତିର ଆଶା ମଧ୍ୟ ପ୍ରଚ୍ଛନ୍ନ ଭାବରେ ରହୁଥିବା ବିଷୟ ସେମାନେ ନିଜେ ସ୍ୱୀକାର କରିଅଛନ୍ତି ।

କିନ୍ତୁ ସେମାନଙ୍କ ପରି ଆଉ କେତେକ ସର୍ବତ୍ୟାଗୀ ଦେଶସେବୀ ମଧ୍ୟ ଫାଶୀ ଖୁଣ୍ଟରେ ପ୍ରାଣ ଦେଇଛନ୍ତି । ସେମାନେ ବିଶ୍ୱାସ କରନ୍ତି ଯେ ଫାଶୀରଜ୍ଜୁରେ ସେମାନଙ୍କର ଜୀବନ ଲୀଳା ଶେଷ ହେବା ସଙ୍ଗେ ସଙ୍ଗେ ସେମାନଙ୍କର ସବୁକିଛି ଶେଷ ହୋଇଯାଏ । ସେମାନେ ଆତ୍ମା, ଇହକାଳ, ପରକାଳ - ଏପରିକି ଅଦୃଶ୍ୟ କୌଣସି ଅଶରୀରୀ ଶକ୍ତିରେ ମଧ୍ୟ ବିଶ୍ୱାସ କରନ୍ତି ନାହିଁ । ତେଣୁ ସେମାନଙ୍କ ମନରେ ମୃତ୍ୟୁ ପରେ ତଥାକଥିତ ପୁରସ୍କାର ବା ସ୍ୱର୍ଗଲାଭର ଆଶା ନଥାଏ । ଶହୀଦ ଶୀରୋମଣି ସର୍ଦ୍ଦାର ଭଗତ ସିଂଙ୍କ ତାହା ହିଁ ଥିଲା ଅଭିମତ । ସେ ଥିଲେ ନାସ୍ତିକ । ତାଙ୍କର ଫାଶୀ ଦଣ୍ଡ ସମ୍ପର୍କରେ ସେ ଯାହା କହିଥିଲେ, ତାଙ୍କ ଆଦର୍ଶରେ ଅନୁପ୍ରାଣିତ ଶହଶହ ଶହୀଦ ମଧ୍ୟ ଥିଲେ ନାସ୍ତିକ । ସ୍ୱୟଂ ଭଗତ ସିଂ ସେ ସମ୍ପର୍କରେ କହିଥିଲେ-

''ବହୁ ଭାବନା ପରେ ମୋ'ର ନିଷ୍ପତ୍ତି ହେଲା ଏହା ଯେ ଈଶ୍ୱରଙ୍କଠାରେ ବିଶ୍ୱାସ ରଖିବା ଓ ତାଙ୍କୁ ପ୍ରାର୍ଥନା କରିବା ଦିଗରେ ମୁଁ ନିଜକୁ ପରିଚାଳିତ କରିପାରିବି ନାହିଁ । ନା, ଆଦୌ ନୁହେଁ । ତାହା ହିଁ ଥିଲା ଅସଳ ପରୀକ୍ଷା ଓ ତହିଁରେ ମୁଁ ସଫଳ ହେଲି । ମୁହୂର୍ତ୍ତକ ପାଇଁ ସୁଦ୍ଧା ଅନ୍ୟ କୌଣସି ବସ୍ତୁର ପ୍ରତିବଦଳରେ ମୋ' ବେକର ସୁରକ୍ଷା ମୁଁ ଚାହିଁ ନଥିଲି । ତେଣୁ ଈଶ୍ୱର ଅବିଶ୍ୱାସରେ ମୁଁ ଅତ୍ୟନ୍ତ ଦୃଢ଼ ଥିଲି, ଆଜି ମଧ୍ୟ ଅଛି । ସେ ପରୀକ୍ଷାର ସାମନା କରିବା ସହଜ କଥା ନଥିଲା । ''ଈଶ୍ୱର ବିଶ୍ୱାସ ଦୁଃଖ ଲାଘବ କରେ, ଏପରିକି ତାକୁ ସୁଖରେ ପରିଣତ କରିପାରେ । ଈଶ୍ୱରଙ୍କଠାରୁ ମଣିଷ ବଳିଷ୍ଠ ସାନ୍ତ୍ୱନା ଓ ସହନଶକ୍ତି ପାଇ ପାରନ୍ତି । ଝଡ଼ ତୋଫାନ ବେଳେ ନିଜ ଗୋଡ଼ରେ ଛିଡ଼ା ହୋଇ ରହିବା ପିଲା ଖେଳ ନୁହେଁ । ଏହି ଭଳିଆ ଅଗ୍ନି ପରୀକ୍ଷା ବେଳେ ଅହଙ୍କାର - ଯଦି ବି କିଛି ଥାଏ ଉଭେଇ ଯାଏ ଏବଂ ସଚାରଚର ପ୍ରଚଳିତ ବିଶ୍ୱାସ ଗୁଡ଼ିକର ଅବଜ୍ଞା କରିବାକୁ ମଣିଷ ସାହସ କରେନାହିଁ । ଯଦି ସେ କରେ ତେବେ ବୁଝିବାକୁ ହେବ ଯେ ତୁଚ୍ଛା ଅହଙ୍କାର ଛଡ଼ା ତାହା ପାଖରେ ଅନ୍ୟ କୌଣସି ଶକ୍ତି ରହିଅଛି । ବର୍ତ୍ତମାନର ଅବସ୍ଥା ଠିକ୍ ସେୟା ।''

ମକଦ୍ଦମାର ରାୟ କ'ଣ ହେବ ତାହା ଏବେଠୁ ଆମ୍ଭମାନଙ୍କୁ ଭଲ ଭାବେ ଜଣା । ସପ୍ତାହେ ମଧ୍ୟରେ ତାହା ଶୁଣାଇ ଦିଆଯିବ । ଗୋଟିଏ ଉଦ୍ଦେଶ୍ୟ ପାଇଁ ମୁଁ ମୋ ଜୀବନ ଅର୍ପଣ କରୁଛି । ଏହି ଧାରଣା ଛଡ଼ା ଆଉ ସାନ୍ତ୍ୱନା କ'ଣ ? ଜଣେ ଈଶ୍ୱରବିଶ୍ୱାସୀ ହିନ୍ଦୁ ରାଜା ପୁଣି ଜନ୍ମ ହେବାର ଆଶ୍ୱାସ ବାନ୍ଧି ପାରେ । ଜଣେ ମୁସଲମାନ ବା ଖ୍ରୀଷ୍ଟିଆନ୍ ସ୍ୱର୍ଗରେ ଦୁର୍ଲ୍ଲଭ ସୁଖ ପ୍ରାପ୍ତି ତଥା ନିଜର ଦୁଃଖ ଯନ୍ତ୍ରଣା ବା ବଳିଦାନର ପ୍ରତିବଦଳରେ ପୁରସ୍କାରର ସ୍ୱପ୍ନ ଦେଖିପାରେ କିନ୍ତୁ ମୁଁ କ'ଣ ଆଶା କରିପାରିବି ? ମୁଁ ଜାଣେ ଯେଉଁ ମୁହୂର୍ତ୍ତରେ ମୋ' ବେକରେ ଦଉଡ଼ିଟି ବନ୍ଧା ଯିବ, ମୋ ପାଦ ତଳୁ ପଟା ଖଣ୍ଡିକ କାଢ଼ି

ନିଆଯିବ, ସେହି ମୁହୂର୍ତ୍ତଟି ମୋ'ର ଶେଷ ମୁହୂର୍ତ୍ତ- ମୋ'ର ଅନ୍ତିମ ମୁହୂର୍ତ୍ତ । ମୁଁ ଅବା ଆହୁରି ନିର୍ଦ୍ଦିଷ୍ଟ ଭାବରେ ଆଧିଭୌତିକ ଭାଷାର ପଦ ବ୍ୟବହାର କରି କହିଲେ, ମୋର ଆତ୍ମା ସେହି ମୁହୂର୍ତ୍ତରେ ସମ୍ପୂର୍ଣ୍ଣ ଭାବେ ଲୋପ ପାଇଯିବ । ଆଉ କିଛି ନଥିବ । ମୋର ଯଦି ସେହି ଦୃଷ୍ଟିରେ ଦେଖିବାର ସାହସ ଅଛି, ତେବେ ଗୋଟିଏ ଛୋଟିଆ ସଂଗ୍ରାମମୟ ଜୀବନ- ଯାହାର ଅନ୍ତ ମଧ୍ୟ କୌଣସି ପ୍ରକାରେ ବୈଭବଶାଳୀ ଅନ୍ତ ନୁହେଁ, ତାହାହିଁ ହେବ ମୋର ପୁରସ୍କାର । ତାହା ହିଁ ସବୁ କିଛି । କୌଣସି ସ୍ୱାର୍ଥପର ଉଦ୍ଦେଶ୍ୟ ନ ଥାଇ ଅବା ଇହଲୋକରେ ବା ପରଲୋକରେ ବିଚାର ପୁରସ୍କାରର କାମନା ନଥାଉ ସମ୍ପୂର୍ଣ୍ଣ ନିଃସ୍ୱାର୍ଥୀ ଭାବେ ସ୍ୱାଧୀନତା ନିମନ୍ତେ ମୁଁ ମୋ' ଜୀବନକୁ ସମର୍ପଣ କରିଦେଇଛି । କାରଣ ଅନ୍ୟକୌଣସି କଥା କରିବା ମୋ' ପକ୍ଷରେ ସମ୍ଭବପର ନଥିଲା । ଯେଉଁଦିନ ଆମ୍ଭେମାନେ ଦେଖିବା ଏହି ମାନସିକତାରେ ଉଦ୍‌ବୁଦ୍ଧ ହୋଇଥିବା ବହୁ ନରନାରୀଙ୍କୁ ଯେଉଁମାନେ ମାନବ ଜାତିର ସେବା ତଥା ଦୁଃଖୀ ମଣିଷର ମୁକ୍ତି ଉଦ୍ଦେଶ୍ୟରେ ନିଜ ନିଜକୁ ଉତ୍ସର୍ଗ କରିବା ଛଡ଼ା ଅନ୍ୟ କିଛି କରିପାରିବେନି, ସେହି ଦିନ ହିଁ ସ୍ୱାଧୀନତାର ଏକ ନୂଆ ଯୁଗ ଉଦ୍‌ଘାଟିତ ହେବ ।''  ×  ×  ×

ଏହି ବିପ୍ଳବ ଇତିହାସ ସଙ୍କଳନ କାର୍ଯ୍ୟରେ ଏହି ଲେଖକର ମୁଖ୍ୟ ପ୍ରେରଣା ଦାତା ଥିଲେ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ । ସେ କେତେଥର ମୋତେ ଲେଖିଛନ୍ତି- ତୋ'ର ବହି ଗୁଡ଼ିକ ଆମ ପିଲାମାନଙ୍କ ପାଇଁ ପାଠ୍ୟପୁସ୍ତକ ଭାବେ ଆଦୃତ ହୋଇଛି । ତୁ ଆହୁରି ଲେଖ । ଡକ୍ଟର ମହତାବ ବାରମ୍ବାର ଲେଖୁଥିଲେ ''ଅହିଂସ ସଂଗ୍ରାମ ଉପରେ ବହୁତ ବହି ଲେଖାଯାଇଛି । କିନ୍ତୁ ସଶସ୍ତ୍ର ବିପ୍ଳବ ସଂପର୍କରେ ବହି କିଛି ନଥିଲା । ତୁମେ ସେହି ଅଭାବଟି ପୂରଣ କରିଛି ।'' ସେହିପରି ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ସ୍ୱେଚ୍ଛାରେ କଳିଙ୍ଗ ଫାଉଣ୍ଡେସନ୍‌ରୁ ଅନୁଦାନ ଦେଇ ନଥିଲେ, ''ଭାରତର ସଶସ୍ତ୍ର ମୁକ୍ତି ସଂଗ୍ରାମ'' ପୁସ୍ତକ ଏତେ ସହଜରେ ପ୍ରକାଶିତ ହୋଇପାରିନଥାନ୍ତା । ଗାଁରେ ଛାପାଖାନାଟି ବସି ନଥିଲେ ଏତେ ବଡ଼ ବହିକୁ ମୁଁ କୋଉଠି ମାସ ମାସ ଧରି ରହି ଛାପିଥା'ନ୍ତି, ଭାବି ପାରୁନି ଏବଂ ତାହା କେବଳ ଉତ୍କଳ ଆର୍ଟ ପ୍ରେସ୍‌ର ନରହରି ଦାଶଙ୍କ କୃତିତ୍ୱ । ଲୋକରତ୍ନ ଡକ୍ଟର କୁଞ୍ଜବିହାରୀ ଦାଶଙ୍କ ଠାରୁ ପ୍ରାପ୍ତ ଉତ୍ସାହ ଓ ପ୍ରେରଣା ଏହି ଗବେଷଣାର ମୂଳ ପାଣ୍ଠି । ଏତଦ୍ ବ୍ୟତୀତ ମା' କୃଷ୍ଣପ୍ରିୟା, ବଡ଼ଭାଇ ଡାକ୍ତର ନିର୍ମଳ ଚନ୍ଦ୍ର ଦାସ,ଭାତୃସମ ରମାକାନ୍ତ ଓ କୃଷ୍ଣଭାଇଙ୍କର ଅବଦାନ ଅବର୍ଣ୍ଣନୀୟ । ପ୍ରାୟ ଅଢ଼େଇ ହଜାର ପୃଷ୍ଠାରେ ସେହି ୯ ଖଣ୍ଡ ବିପ୍ଳବବାଦୀ ପୁସ୍ତକ ସମେତ ୧୨ ଖଣ୍ଡ ବହି ପାଇଁ ଗବେଷଣା, ସଙ୍କଳନ, ପ୍ରେସ୍ କପି ତିଆରି କାର୍ଯ୍ୟରେ ବିଧାନ ଓ ଲକ୍ଷ୍ମୀ ନାରାୟଣଙ୍କର ଅକ୍ଳାନ୍ତ ସହଯୋଗ ସାହାଯ୍ୟ ବିନା ଏହା କଦାପି ସମ୍ଭବ ହୋଇପାରି ନଥାନ୍ତା । ସମସ୍ତଙ୍କ ନିକଟରେ ମୁଁ କୃତଜ୍ଞ ।

ମୋର ଅନ୍ୟ ଏକ ସାନଭାଇ ଜେ.ଏନ୍. ୟୁର କୃତି ଛାତ୍ର ଗବେଷକ ଅଲ୍ଲୁ - ଅଶୋକ୍ ବେହୁରିଆ ବହୁ ମୂଲ୍ୟବାନ ପୁସ୍ତକ ଯୋଗାଇ ବହିଟିକୁ ଅଧିକ ପ୍ରାମାଣିକ କରିବାରେ ସାହାଯ୍ୟ କରିଥିବାରୁ ତାକୁ ଅଶେଷ ଶୁଭେଚ୍ଛା ଓ ଆଶୀର୍ବାଦ ଜଣାଉଛି ।

ଏହି ଲେଖକର ଅନ୍ୟ ଦୁଇଟି ବହି- 'ଭାରତର ବିଭାଜନ ସେହି ରକ୍ତାକ୍ତ ଅଗଷ୍ଟ ପନ୍ଦର' ଓ 'ଓଡ଼ିଶାର ବୀର ଓ ବୀରାଙ୍ଗନା' ପରେ ଲୋହିଆ ଏକାଡେମୀ ଆନୁକୂଲ୍ୟରେ ପ୍ରକାଶିତ ଏହା ମୋର ତୃତୀୟ ପୁସ୍ତକ । ଏହାର ପ୍ରେସ୍ କପି ମୁଖ୍ୟତଃ ବିଧାନର । କିନ୍ତୁ ନାତି ଭାଇ ବିଶ୍ୱମୋହନ ଲାଗି ନଥିଲେ ଡକ୍ଟର ନାରାୟଣଙ୍କଠାରୁ ଚମତ୍କାର ମୁଖବନ୍ଧଟିଏ ଆଦାୟ ମୋ ପକ୍ଷରେ କଳ୍ପନାତୀତ ହୋଇଥାନ୍ତା ।

ଡକ୍ଟର ସରସ୍ୱତୀ ସ୍ୱାଇଁ ତାଙ୍କର ପ୍ରତିଶ୍ରୁତି ଅନୁସାରେ ମୋ'ର ବହି ଗୁଡ଼ିକ ଗୋଟିକ ପରେ ଗୋଟିଏ ପ୍ରକାଶ କରିଚାଲିଛନ୍ତି । ଚତୁର୍ଥ ପୁସ୍ତକ - ଅଣ୍ଟିଚ- ଏକ ବିଡ଼ମ୍ବିତ ରାଜ୍ୟର ସତ୍ୟ କାହାଣୀ । (ହିଟଲର୍- ଇହୁଦୀ ଗଣ ସଂହାର ଶିବିର - ଜଣେ ବନ୍ଦିନୀର ଆତ୍ମକଥା) ୟୁନିଭର୍‌ସିଟି ଅଫ୍ ନର୍ଥ କାରୋଲିନା ଦ୍ୱାରା ପ୍ରକାଶିତ ଇଂରାଜୀ ବହିର ଓଡ଼ିଆ ଭାଷାନ୍ତର । ଏହା ୨୦୦୭ରେ ପ୍ରକାଶିତ ହେବ । ଏହି ପ୍ରକାଶନର ବିଶେଷତ୍ୱ ହେଉଛି ଏହା ଯେ ଏହାର ସ୍ୱତ୍ୱାଧିକାରୀ (Copyright holder) ତାଙ୍କର ପ୍ରାପ୍ୟ ବା ରୟାଲିଟି ସେମାନେ ସ୍ୱେଚ୍ଛାରେ ପରିତ୍ୟାଗ କରିଛନ୍ତି । ଏହା ସମ୍ଭବତଃ ଏକ ଅଭିନବ ଘଟଣା ।

ଆମେରିକାସ୍ଥ ଏହି ଅନୁଷ୍ଠାନର ମହାନୁଭବତା ଓ ଲୋହିଆ ଏକାଡେମୀର ଏହି ମହନୀୟ ପ୍ରଚେଷ୍ଟା ପାଇଁ ଲେଖକ ଉଭୟ ଅନୁଷ୍ଠାନ ନିକଟରେ କୃତଜ୍ଞ । ଶ୍ରଦ୍ଧେୟ ଅଧ୍ୟାପକ ସମୀର କୁମାର ରାଉତ ମହାଶୟ ପ୍ରକାଶକ ଲୋହିଆ ଏକାଡେମୀ ଓ ଏହି ଲେଖକଙ୍କ ଭିତରେ ନିୟମିତ ଯୋଗାଯୋଗ କରି ନଥିଲେ, ଏହାର ପ୍ରକାଶନ ସମ୍ଭବ ହୋଇପାରି ନଥାନ୍ତା, ତାଙ୍କୁ ଆନ୍ତରିକ ଶୁଭେଚ୍ଛା ଓ କୃତଜ୍ଞତା ଜଣାଉଛି ।

**ପ୍ରଫୁଲ୍ଲ ଦାସ**
ଅଗ୍ନିଯୁଗ ଆଶ୍ରମ
ଜରିସାହି, ରାଜକନିକା, କେନ୍ଦ୍ରାପଡ଼ା
୨୫, ଡିସେମ୍ବର ୨୦୦୬

# ପ୍ରକାଶକୀୟ

ପାଖାପାଖି ତିନି ଦଶନ୍ଧି ଧରି ସ୍ୱାଧୀନତା ସଂଗ୍ରାମ ଉପରେ ଏକନିଷ୍ଠ ସାଧନା ଓ ଗବେଷଣା ଚଳାଇ ଆସିଥିବା ଏବଂ ଏ ସମ୍ପର୍କରେ ଅଦ୍ୟାବଧି ପ୍ରାୟ ୧୪ ଖଣ୍ଡି ପୁସ୍ତକ ରଚନା କରିଥିବା ଲେଖକ ଶ୍ରୀଯୁକ୍ତ ପ୍ରଫୁଲ୍ଲ ଦାସ ଏକ ବ୍ୟକ୍ତି ନୁହନ୍ତି, ଏକ ଆଦର୍ଶ । ଐତିହାସିକ ନୁହଁନ୍ତି କିନ୍ତୁ ଇତିହାସର ପ୍ରଣେତା । ଇତିହାସର ସୁବୃହତ୍ କାନ୍‌ଭାସ୍ ଉପରେ ସେ ସାହିତ୍ୟର ଯେଉଁ କଳା-କୋଣାର୍କ ଅଙ୍କନ କରିଛନ୍ତି ତାହା ଯେତିକି କାରୁକାର୍ଯ୍ୟପୂର୍ଣ୍ଣ ସେତିକି ତଥ୍ୟପ୍ରଦ ମଧ । ପୁସ୍ତକଟି ପାଠ କଲାବେଳେ ପାଠକ ଜାଣିପାରେ ନାହିଁ ସେ ଇତିହାସ ପଢୁଛି ନା ସାହିତ୍ୟ ? ବାସ୍ତବିକ ଇତିହାସର ବହୁ ତଥ୍ୟ ବହୁଳ ଅନାଲୋଚିତ ଘଟଣାବଳୀ ଗୁଡ଼ିକୁ ସେ ଏତେ ଜୀବନ୍ତ ଭାବରେ ବର୍ଣ୍ଣନା କରିଛନ୍ତି ଏବଂ ଅଧାୟ ଗୁଡ଼ିକରେ ଏତେ ନାଟକୀୟତା ଭରି ଦେଇଛନ୍ତି ଯେ ପାଠକଟିଏ ବହିଟିକୁ ଏକ ନିଃଶ୍ୱାସରେ ନ ପଢ଼ି ରହିପାରିବ ନାହିଁ ।

ଲେଖକ ଶ୍ରୀଯୁକ୍ତ ଦାସଙ୍କ ଲେଖନୀରୁ ଆରମ୍ଭ ହୋଇଥିବା 'ଅଗ୍ନିଯୁଗର ଆହ୍ୱାନ' 'ସଶସ୍ତ୍ର ମୁକ୍ତି ସଂଗ୍ରାମ'ରେ 'ରକ୍ତସ୍ନାତା' ହୋଇ କେତେବେଳେ 'ଫାଶୀ ମଞ୍ଚରେ ବିପ୍ଳବୀ' ଭାବେ ଦଣ୍ଡାୟମାନ ହୋଇଛନ୍ତି ତ, ପୁଣି କେତେବେଳେ 'ରକ୍ତାକ୍ତ ଅଗଷ୍ଟ ପନ୍ଦର'ର ରକ୍ତ ବିଜଡ଼ିତ ସ୍ମୃତିରେ ଅଙ୍କନ କରିଛନ୍ତି 'ବୀର ଓ ବୀରାଙ୍ଗନା'ମାନଙ୍କ ଆତ୍ମୋତ୍ସର୍ଗର କାହାଣୀ । ପ୍ରତ୍ୟେକ ପୁସ୍ତକ ପୁଣି ନିଜ ଦୃଷ୍ଟିରୁ ଯେପରି ସ୍ୱୟଂ ସମ୍ପୂର୍ଣ୍ଣ ସେହିପରି ଅନନ୍ୟ ମଧ ।

'ଭାରତର ସ୍ୱାଧୀନତା ସଂଗ୍ରାମରେ ସାମରିକ ବିଦ୍ରୋହ' ଲେଖକଙ୍କ ସଂଗ୍ରାମୀ ସଙ୍କଳ୍ପର ଶେଷ ପର୍ଯ୍ୟାୟର ପୁସ୍ତକ । ସଂଗ୍ରାମକୁ ପୁଞ୍ଜି ଏବଂ ସଂଗ୍ରାମୀମାନଙ୍କୁ ଆଦର୍ଶଭାବେ ଗ୍ରହଣ କରି ଶ୍ରୀଯୁକ୍ତ ଦାସ ଯାହା କହିବାକୁ ଚାହିଁଥିଲେ ସେଥିରେ ସେ ସଫଳ ହୋଇଛନ୍ତି । ମୂଳତଃ, ଆମ ସ୍ୱାଧୀନତା ସଂଗ୍ରାମର ସର୍ବାଧିକ ଶ୍ରେୟ 'ଅହିଂସା'କୁ ପ୍ରଦାନ କରାଯାଇଛି । 'ସହିଂସ' ସଂଗ୍ରାମର ଅନେକ ଗୁରୁତ୍ୱପୂର୍ଣ୍ଣ କଥା ବା ପ୍ରତ୍ୟକ୍ଷ ସଂଗ୍ରାମରେ ସାମିଲ ହୋଇଥିବା ସେନାବାହିନୀର ଅନେକ ବୀରତ୍ୱ ଗାଥା ସମ୍ପର୍କରେ ବିଶେଷ ତଥ୍ୟ ଆମ ଇତିହାସରେ ପ୍ରାୟତଃ ଦୃଷ୍ଟିଗୋଚର ହୁଏ ନାହିଁ । ସମ୍ଭବତଃ, ସେନାବାହିନୀର ସେହି ପ୍ରତ୍ୟକ୍ଷ ସଂଗ୍ରାମ ଓ ସ୍ୱାଧୀନତା ଯୁଦ୍ଧରେ ସେମାନଙ୍କର ଗୁରୁତ୍ୱପୂର୍ଣ୍ଣ ଅବଦାନକୁ ଉପଲବ୍ଧି ପୂର୍ବକ ଅତି ନିଖୁଣ ଭାବରେ ବର୍ଣ୍ଣନା କରିଛନ୍ତି ଶ୍ରୀଯୁକ୍ତ ଦାସ । ଉଭୟ ତଥ୍ୟ ଓ ତତ୍ତ୍ୱ ଦୃଷ୍ଟିରୁ ପୁସ୍ତକଟି ଉଭୟ ପାଠକ ଓ ଗବେଷକ ମହଲରେ ବିଶେଷ ଆଦୃତି ଲାଭ କରିବ ବୋଲି ଆଶା ।

**ଲୋହିଆ ଏକାଡେମୀ ଟ୍ରଷ୍ଟ,**

ଭୁବନେଶ୍ୱର

# ସୂଚୀପତ୍ର

# ପରିଚୟ

-୧-

ପୋଲିସ୍ ଓ ସୈନ୍ୟବାହିନୀ ସବୁଦେଶରେ ଶାସକ ଶ୍ରେଣୀର ବା ରାଷ୍ଟ୍ରର ସର୍ବଶ୍ରେଷ୍ଠ ରକ୍ଷାକବଚ ରୂପେ ବିବେଚିତ ହୁଏ । ସୈନ୍ୟବାହିନୀର ବିନା ସାହାଯ୍ୟରେ କୌଣସି ଜନ ବିରୋଧୀ ଶାସକ ଗୋଟିଏ ମୁହୂର୍ତ୍ତ ସୁଦ୍ଧା ତିଷ୍ଠିପାରେ ନାହିଁ । ସେହିଭଳି ଜନବିପ୍ଳବର ଚରମ ପର୍ଯ୍ୟାୟରେ ମଧ୍ୟ ସେହି ଦେଶର ସୈନ୍ୟ ବାହିନୀ ଏକ ନିଷ୍ପତ୍ତି ମୂଳକ ବା ନିର୍ଣ୍ଣୟାତ୍ମକ ଭୂମିକା ନେଇଥାଏ । ସେଥିପାଇଁ ସବୁ ଦେଶରେ ଶାସକ ଶ୍ରେଣୀ ତାହାର ସୈନ୍ୟବାହିନୀକୁ ସର୍ବଦା ଯଥା ସମ୍ଭବ ସନ୍ତୁଷ୍ଟ ରଖିବାକୁ ଚେଷ୍ଟା କରେ ଏବଂ ଦେଶର ରାଜନୈତିକ ପରିବର୍ତ୍ତନ ବା ଉତ୍ଥାନ ପତନରୁ ସେମାନଙ୍କୁ ଦୂରେଇ ରଖିବାକୁ ଆପ୍ରାଣ ଉଦ୍ୟମ କରିଥାଏ । ସାମନ୍ତବାଦୀ ବା ପୁଞ୍ଜିବାଦୀ ଶାସକମାନେ ଏହାତ ଆଦୌ ଜାଣିପାରନ୍ତି ନାହିଁ ଯେ, ସେମାନେ ଚାହାଁନ୍ତୁ ବା ନ ଚାହାଁନ୍ତୁ, ସେନା ବାହିନୀ ସେ ଦେଶର ସାମାଜିକ ବା ରାଜନୀତିକ ଘାତ ପ୍ରତିଘାତରେ ପ୍ରଭାବିତ ହେବାକୁ ବାଧ୍ୟ । କାରଣ ସେମାନେ ମଧ୍ୟ ଦେଶର ସାମାଜିକ ପରିବର୍ତ୍ତନ ସହ ସମ୍ପୃକ୍ତ ଓ ସେମାନେ ସେହି ସମାଜରୁ ହିଁ ସୃଷ୍ଟ । ଦ୍ୱିତୀୟତଃ, ସବୁ ଦେଶରେ ନିମ୍ନତମ ଶ୍ରେଣୀ ଭୁକ୍ତ ବ୍ୟକ୍ତିମାନେ ହିଁ ଅଧିକ ସଂଖ୍ୟାରେ ସେନାବାହିନୀରେ ଯୋଗ ଦେଇଥାନ୍ତି । ଗ୍ରାସାଚ୍ଛାଦନ ସଂଗ୍ରହ କରିବାର ତାଗିଦ୍‌ରେ ସେମାନଙ୍କୁ ସେହି ବିପଦ୍‌ଜନକ କାର୍ଯ୍ୟରେ ଯୋଗଦେବାକୁ ପଡ଼ିଥାଏ । କେବଳ ଦୁଃସାହସିକତା, ବୀରତ୍ୱ ବା ଦେଶପ୍ରେମ ପ୍ରଦର୍ଶନ କରିବାକୁ ସୈନ୍ୟ ବାହିନୀରେ ଯୋଗଦେଉଥିବା ବ୍ୟକ୍ତି ମୁଷ୍ଟିମେୟ ବା ଏକାବେଳକେ ବିରଳ କହିଲେ ଚଳେ । ଗୋଟାଏ ଯୁଗ ଥିଲା ଯେତେବେଳେ ସୈନ୍ୟ ବାହିନୀରେ ଯୋଗ ଦେବାପାଇଁ କେବଳ ମାତ୍ର ବୟସ ଓ ଶାରୀରିକ ଯୋଗ୍ୟତାକୁ ଏକମାତ୍ର ମାନଦଣ୍ଡ ଭାବରେ ବିଚାର କରାଯାଉଥିଲା । ଯୁଦ୍ଧ କ୍ଷେତ୍ରରେ ଆଧୁନିକ ମାରଣାସ୍ତ୍ର ବ୍ୟବହାରର ଆବଶ୍ୟକତା ଅନୁଭୂତ ହେବାପରେ ବିଶେଷତଃ ବିଭିନ୍ନ ବୈଜ୍ଞାନିକ ଉଦ୍ଭାବନକୁ ଯୁଦ୍ଧ କ୍ଷେତ୍ରରେ ପ୍ରୟୋଗ କରିବା ପରେ ଶିକ୍ଷିତ ଶ୍ରେଣୀଙ୍କୁ ଅଧିକରୁ ଅଧିକ ସଂଖ୍ୟାରେ ସୈନ୍ୟ ବାହିନୀରେ ନେବାର ଆବଶ୍ୟକତା ଅନୁଭବ କରାଯାଉଅଛି । ଭାରତୀୟ ପରିପ୍ରେକ୍ଷୀରେ ଯେହେତୁ ସାଧାରଣତଃ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀ ଆଧୁନିକ ବୈଜ୍ଞାନିକ ଶିକ୍ଷା ଲାଭର ସୁଯୋଗ ଲାଭ କରୁଅଛନ୍ତି, ତେଣୁ ସେହି ଶ୍ରେଣୀ କିଛି ପରିମାଣରେ ସୈନ୍ୟ ବାହିନୀରେ ପ୍ରବେଶ କରିବାର ଅବକାଶ ସୃଷ୍ଟି ହୋଇଅଛି । ଆଜିକାଲି ତ ବାଛି ବାଛି

ମେଧାବୀ ଛାତ୍ରମାନଙ୍କୁ ହିଁ ସୈନ୍ୟ ବାହିନୀରେ ନିଆଯାଉଛି । ତା ସତ୍ତ୍ୱେ ଲଢୁଆ ସିପାହୀ ବା କମାଣ୍ଡାଣ୍ଡ ଫୋର୍ସ ମୁଖ୍ୟତଃ ଅର୍ଦ୍ଧଶିକ୍ଷିତ ବ୍ୟକ୍ତିମାନଙ୍କୁ ନେଇ ଗଠିତ ଏବଂ ସେହି ଶ୍ରେଣୀ ହିଁ ସେନା ବାହିନୀରେ ସଂଖ୍ୟା ଗରିଷ୍ଠ ଅଟନ୍ତି । ଉଚ୍ଚ ଶିକ୍ଷିତ ସାମରିକ କର୍ମଚାରୀଙ୍କ ସଂଖ୍ୟା ଆନୁପାତିକ ଦୃଷ୍ଟିରୁ ନଗଣ୍ୟ କହିଲେ ଅତ୍ୟୁକ୍ତି ହେବନାହିଁ । ରାଷ୍ଟ୍ରର ସାମାଜିକ, ରାଜନୀତିକ ଓ ଆର୍ଥିକ ବ୍ୟବସ୍ଥା ଉପରୋକ୍ତ ଦୁଇଟି ଶ୍ରେଣୀକୁ ଭିନ୍ନ ଭିନ୍ନ ଭାବେ ପ୍ରଭାବିତ କରେ । ଆର୍ଥିକ କ୍ଷେତ୍ରରେ ଅଧିକ ବିଷମତା ସୃଷ୍ଟି ହେଲେ ତାହା ସମାଜର ତଳସ୍ତରକୁ ଅଧିକ ପ୍ରଭାବିତ କରେ । ସାମାଜିକ ଓ ରାଜନୈତିକ ଉତ୍ଥାନ ପତନ ପ୍ରଭାବିତ କରେ ଉଚ୍ଚ ଶ୍ରେଣୀକୁ ଅଧିକ ପରିମାଣରେ । ଶାସକ ଶ୍ରେଣୀ ସେୟାକୁ ଦୃଷ୍ଟିରେ ରଖି ଉଚ୍ଚ ଶ୍ରେଣୀର ସାମରିକ ଅଫିସର ମାନଙ୍କୁ ଚାକିରୀ କ୍ଷେତ୍ରରେ ଅଧିକ ସୁବିଧା ସୁଯୋଗ ପ୍ରଦାନ କରିଥାନ୍ତି, ଯେପରିକି ସେମାନଙ୍କ ମଧ୍ୟରେ କୌଣସି ପ୍ରଫେସନାଲ୍ ବା ବୃତ୍ତିଗତ ଅସନ୍ତୋଷ ସୃଷ୍ଟି ନହୁଏ । ଶାସକ ଶ୍ରେଣୀ ବିରୁଦ୍ଧରେ କୌଣସି ସାମରିକ ବିଦ୍ରୋହ ହେଲେ ଯଦିଓ ନିମ୍ନସ୍ତରର ସୈନିକମାନଙ୍କୁ ସର୍ବାଧିକ ତ୍ୟାଗ ସ୍ୱୀକାର କରିବାକୁ ପଡ଼େ, ବିଦ୍ରୋହର ନେତୃତ୍ୱ ନିଅନ୍ତି ଉଚ୍ଚଶ୍ରେଣୀର ସାମରିକ କର୍ମଚାରୀ ବୃନ୍ଦ । ସୁତରାଂ ଏକ ସଙ୍ଗେ ଅଧସ୍ତନ ଓ ବରିଷ୍ଠ ଉଭୟ ଶ୍ରେଣୀ ବିଦ୍ରୋହ ଘୋଷଣା ନ କଲେ, ସେ ବିଦ୍ରୋହ ଆଦୌ ସଫଳ ହୋଇ ପାରେନା । କାରଣ ନେତୃତ୍ୱ ବିହୀନ ସାମରିକ ବିଦ୍ରୋହକୁ ମୁଷ୍ଟିମେୟ ବରିଷ୍ଠ କର୍ମଚାରୀଗଣଙ୍କ ସାହାଯ୍ୟରେ ଶାସକ ଶ୍ରେଣୀ ସହଜରେ ବ୍ୟର୍ଥ କରିଦିଏ । ସମାଜରୁ ସମସ୍ତ ଆର୍ଥିକ ବିଷମତାକୁ ସମ୍ପୂର୍ଣ୍ଣ ଲୋପ ନ କଲେ ସଂଖ୍ୟା ଗରିଷ୍ଠ ଶ୍ରେଣୀକୁ ସନ୍ତୁଷ୍ଟ ରଖିବା ସମ୍ଭବ ନୁହେଁ । ତେଣୁ ସେଭଳି ବିଷମତାପୂର୍ଣ୍ଣ ସମାଜରେ ସଂଖ୍ୟା ଗରିଷ୍ଠ ସୈନିକମାନଙ୍କର ଅସନ୍ତୋଷ ଦୂର କରିବା ମଧ୍ୟ ସମ୍ଭବ ହୁଏ ନାହିଁ । ଗଣତାନ୍ତ୍ରିକ ଦେଶମାନଙ୍କରେ ଆର୍ଥିକ ବିଷମତା ରହିଲେ, ତାହା ବିରୁଦ୍ଧରେ ଆନ୍ଦୋଳନ ବା ବିକ୍ଷୋଭ ରାଜନୈତିକ କାର୍ଯ୍ୟ କଳାପର ମୁଖ୍ୟ ବିଷୟବସ୍ତୁ ହୋଇଯାଏ । ପ୍ରଶାସକମାନଙ୍କର ଦୁର୍ନୀତି, ପ୍ରିୟାପ୍ରୀତି ତୋଷଣ, ଧର୍ମାନ୍ଧତା, ବିଚ୍ଛିନ୍ନତାବାଦ, ବିଳାସବ୍ୟସନ ପ୍ରଭୃତି ଦେଶପ୍ରେମ ବିରୋଧୀ ଶକ୍ତି ବୃଦ୍ଧି ପାଇଲେ ତାହା ରାଜନୀତିକୁ ପ୍ରଭାବିତ କରେ ଏବଂ ଶାସକ ଶ୍ରେଣୀ ବିରୁଦ୍ଧରେ ଜନ ଅସନ୍ତୋଷ ବୃଦ୍ଧିପ୍ରାପ୍ତ ହୁଏ । ସେହି ଅସନ୍ତୋଷରୁ ସୈନ୍ୟବାହିନୀକୁ ମୁକ୍ତ ରଖିବା ପାଇଁ ଶାସକ ଶ୍ରେଣୀ ଆପ୍ରାଣ ଉଦ୍ୟମ କରେ ।

ଏ ସମ୍ବନ୍ଧରେ ଆଉ ଏକ ଗୁରୁତ୍ୱପୂର୍ଣ୍ଣ ଓ ତାତ୍ପର୍ଯ୍ୟପୂର୍ଣ୍ଣ ବିଷୟ ମଧ୍ୟ ସମାନ ଭାବରେ ପ୍ରଣିଧାନ ଯୋଗ୍ୟ । ପ୍ରଶାସନ ବିରୁଦ୍ଧରେ ସଂଗଠିତ ଜନ ଅସନ୍ତୋଷକୁ ଦମନ କରିବା ପାଇଁ ରାଜନୈତିକ ପ୍ରଚେଷ୍ଟା ସଫଳ ନହେଲେ ପ୍ରଶାସନ ସାଧାରଣ ପୋଲିସ ବା ଅର୍ଦ୍ଧସାମରିକ ପୋଲିସ୍‌ର ସାହାଯ୍ୟ ନେଇଥାଏ । ସେମାନେ ସେଥିରେ ସଫଳ ନହେଲେ ପ୍ରଶାସନ ବାଧ୍ୟ ହୋଇ ସାମରିକ ବାହିନୀକୁ ପ୍ରୟୋଗ କରେ । ସାଧାରଣ ପୋଲିସ୍ ଅପେକ୍ଷା ନିୟମିତ ସୈନିକମାନେ ଉନ୍ନତତର ମାରଣାସ୍ତ୍ର ସହ ଯୁଦ୍ଧ କୌଶଳରେ ଅଧିକ ଦକ୍ଷ

ହୋଇଥିବାରୁ ସେମାନେ ପାଶବିକ ବଳ ପ୍ରୟୋଗ କରି ଜନଅସନ୍ତୋଷକୁ ଦମନ କରିଦିଅନ୍ତି । କିନ୍ତୁ ଏହା କ୍ରମେ ଯେତେବେଳେ ବାରମ୍ବାର ଘଟେ ଅର୍ଥାତ୍ ପ୍ରଶାସନ ଜନ ଅସନ୍ତୋଷରୁ ରକ୍ଷା ପାଇବା ପାଇଁ ବାରମ୍ବାର ସାମରିକ ବାହିନୀର ସାହାଯ୍ୟ ନିଏ, ସେତେବେଳେ ସମ୍ପୂର୍ଣ୍ଣ ଭାବରେ ଏକ ନୂତନ ପରିସ୍ଥିତି ସୃଷ୍ଟି ହୁଏ । ପ୍ରଶାସନ ଦିନକୁ ଦିନ ଯେତେବେଳେ ନିଜକୁ ଅଧିକରୁ ଅଧିକ ଅସହାୟ ଓ ଦୁର୍ବଳ ବୋଲି ମନେକରେ, ସାମରିକ ବାହିନୀ ମଧ୍ୟ ସ୍ୱାଭାବିକ ଭାବେ ନିଜକୁ ପ୍ରଶାସନ ଅପେକ୍ଷା ଅଧିକ ଶକ୍ତିଶାଳୀ ବୋଲି ମନେକରେ । ସେମାନେ ଯଦି ପ୍ରଶାସନ ଅପେକ୍ଷା ଅଧିକ ଚରିତ୍ରବାନ ବା ନୈତିକଗୁଣସମ୍ପନ୍ନ ହୋଇଥାନ୍ତି କିମ୍ବା ଅନ୍ତତଃ ଜନସାଧାରଣଙ୍କ ଦୃଷ୍ଟିରେ ସେଭଳି ଦିଶୁଥାଆନ୍ତି – ତେବେ ଜନସାଧାରଣଙ୍କ ସମର୍ଥନ ମିଳିଲେ ସେ ଦେଶରେ 'ସାମରିକ ବିଦ୍ରୋହ' ଅବଶ୍ୟମ୍ଭାବୀ ହୋଇପଡ଼େ ।

ବହୁଜାତି-ଧର୍ମ ଓ ଭାଷାଭାଷୀ ଭାରତ ଭଳି ବିଶାଳ ଦେଶରେ ସାମରିକ ବିଦ୍ରୋହ ସଫଳ ହେବା ସମ୍ଭବ କି ନୁହେଁ, ତାହା ଅବଶ୍ୟ ତର୍କସାପେକ୍ଷ । ସ୍ୱାଧୀନ ଭାରତର ସାମରିକ ବାହିନୀ ଯୁଦ୍ଧକ୍ଷେତ୍ରରେ ଅଶେଷ କୃତିତ୍ୱ ଅର୍ଜନ କରିଥିଲେ ମଧ୍ୟ ବହୁ ବରିଷ୍ଠ ସାମରିକ ଅଫିସରମାନଙ୍କ ବିରୁଦ୍ଧରେ କୋଟି କୋଟି ଟଙ୍କାର ଦୁର୍ନୀତିର ଅଭିଯୋଗ ହୁଏ । ୨୦୦୨ ଖ୍ରୀଷ୍ଟାବ୍ଦରେ 'ତେହେଲ୍‌କା' ଭିଡିଓ ଟେପ୍‌ରେ ବହୁ ଲୋମହର୍ଷଣକାରୀ ଦୁର୍ନୀତିର ଅଭିଯୋଗରୁ ରାଜନେତା ବା ସାମରିକ ଅଫିସର୍ ମାନେ ଆଇନ ଅଦାଲତରୁ ମୁକ୍ତ ହୋଇ ଯାଇପାରନ୍ତି । କିନ୍ତୁ, ଲୋକାପବାଦ କଳଙ୍କରୁ ମୁକ୍ତ ହେବା ସମ୍ଭବ ନୁହେଁ । ସେ ଦୃଷ୍ଟିରୁ ବହୁ ଭାରତୀୟ ସାମରିକ ଅଧିକାରୀ ଉଚ୍ଚ ନୈତିକ ଚରିତ୍ର ସମ୍ପନ୍ନ ହେବାର ସମ୍ଭାବନା ନାହିଁ, ସେଭଳି ସାମରିକ ଅଧିକାରୀମାନେ ଭାରତର ଏକ ସଫଳ ସାମରିକ ବିଦ୍ରୋହର ନେତୃତ୍ୱ ନେବା କଳ୍ପନାତୀତ । ତଥାପି ସ୍ୱାଧୀନ ଭାରତର ସର୍ବୋଚ୍ଚ ରାଜନେତାମାନଙ୍କୁ ବେଳେ ବେଳେ ସାମରିକ ବାହିନୀର ଅଶାନ୍ତି ଓ ଅସନ୍ତୋଷ କିପରି ବିବ୍ରତ ଓ ଉତ୍କଣ୍ଠିତ କରିଥିଲା ତାହାର ବହୁ ଦୃଷ୍ଟାନ୍ତ ଇତିହାସ ପୃଷ୍ଠାରେ ସ୍ଥାନିତ ହୋଇଅଛି । ସେ ସମ୍ପର୍କରେ ସମ୍ୟକ ଆଲୋଚନା କରିବା ଅପ୍ରାସଙ୍ଗିକ ହେବ ନାହିଁ ।

ନେତାଜୀ ସୁଭାଷଙ୍କ ସହ ନେହେରୁଙ୍କର ତୀବ୍ର ରାଜନୈତିକ ବିରୋଧ ଥିଲେ ମଧ୍ୟ ଯୁଦ୍ଧୋତ୍ତର ସମୟରେ ଭାରତବାସୀଙ୍କ ଦୃଷ୍ଟିରେ ନେତାଜୀ ସର୍ବାଧିକ ଲୋକପ୍ରିୟ ହୋଇଉଠିବାରୁ ତାହାର ସୁଯୋଗ ନେବା ଉଦ୍ଦେଶ୍ୟରେ ବନ୍ଦୀ ଆଜାଦ ହିନ୍ଦ ଫୌଜର ମୁକ୍ତି ସକାଶେ ସ୍ୱତଃସ୍ଫୂର୍ତ୍ତ ଗଣସଂଗ୍ରାମର ନେହେରୁ ନେତୃତ୍ୱ ନେଇଥିଲେ । ସେହି ଗଣ ଆନ୍ଦୋଳନ ଫଳରେ ବିଦାୟୀ ବ୍ରିଟିଶ ପ୍ରଶାସକମାନେ ବନ୍ଦୀ ସୈନ୍ୟମାନଙ୍କ ବିରୁଦ୍ଧରେ ଚଳାଇଥିବା ସାମରିକ ଅଦାଲତର ବିଚାରକୁ ବନ୍ଦ କରିବାକୁ ବାଧ୍ୟ ହୋଇଥିଲେ ସତ୍ୟ ତଥାପି ସେମାନଙ୍କୁ 'ଲାଲକିଲା' ରୁ ମୁକ୍ତ କରାଯାଇ ନଥିଲା । ଅଥଚ ଅଗଷ୍ଟ ପନ୍ଦର ପୂର୍ବରୁ ନେହେରୁ ମଧ୍ୟବର୍ତ୍ତୀ କାଳୀନ ପ୍ରଧାନମନ୍ତ୍ରୀ ଭାବରେ କେନ୍ଦ୍ର ଆସେମ୍ବ୍ଲିରେ ଏକ ସର୍ବ ସମ୍ମତ ପ୍ରସ୍ତାବ ଗ୍ରହଣ କରି

ସେମାନଙ୍କୁ ମୁକ୍ତ କରିବାକୁ ଯେତେବେଳେ ଉଦ୍ୟମ କଲେ ଭାଇସ୍‌ରାୟ ଲର୍ଡ ମାଉଣ୍ଟ ବ୍ୟାଟେନ୍ ତଥା ସର୍ବୋଚ୍ଚ ବ୍ରିଟିଶ୍ ସେନାପତି ସାର କ୍ଲଡ୍ ଅକିନଲେକ କିପରି ତାହାର ତୀବ୍ର ବିରୋଧ କରିଥିଲେତାହା ଇତିହାସରେଏକ ସ୍ୱଚ୍ଛାଲୋକିତ ଅଧ୍ୟାୟ ଅଟେ । ସେ ଦୁଇଜଣ ନେହେରୁଙ୍କୁ ବୁଝାଇ ଦେଲେ ଯେ ''ଆପଣ ସ୍ୱାଧୀନ ଭାରତର ପ୍ରଧାନ ମନ୍ତ୍ରୀ ହେବାକୁ ଯାଉଥିବାରୁ 'ଆଜାଦ୍ ହିନ୍ଦ ଫୌଜ' ପ୍ରତି ଅଧିକ କଠୋର ହେବା ପ୍ରୟୋଜନ'' । ସେ ଦୁହେଁ ଏହା ମଧ୍ୟ କହିଲେ ଯେ 'ଆଜାଦ୍ ହିନ୍ଦ୍ ଫୌଜ' ସିପାହୀମାନେ ଦିନେ ବ୍ରିଟିଶ ଶାସକମାନଙ୍କ ବିରୋଧରେ ବିଦ୍ରୋହ କରି ନେତାଜୀ ସୁଭାଷଙ୍କର ଅଧୀନରେ 'ମୁକ୍ତି ଫୌଜ' ଗଢ଼ିଥିଲେ । ଏଭଳି ବିଶୃଙ୍ଖଳିତ ସୈନ୍ୟମାନଙ୍କୁ କ୍ଷମା ପ୍ରଦାନ କଲେ ସେମାନେ ସ୍ୱାଧୀନ ଭାରତ ସରକାର ପ୍ରତି ମଧ୍ୟ ଦିନେ ନା ଦିନେ ବିପଦ ହୋଇ ଛିଡ଼ା ହେବେ । ଦୁଃଖର କଥା ବିଜ୍ଞ ବିଚକ୍ଷଣ ପ୍ରଧାନମନ୍ତ୍ରୀ ନେହେରୁ ମଧ୍ୟ ସେମାନଙ୍କ ବୋଲ ମାନି ସେହି ଆଶଙ୍କାରେ କେନ୍ଦ୍ର ଆସେମ୍ବ୍ଲିରେ 'ଫୌଜର' ମୁକ୍ତି ପାଇଁ ଚିଠା ହୋଇଥିବା ପ୍ରସ୍ତାବକୁ ସ୍ଥଗିତ ରଖିଦେଲେ । ଯେଉଁ ବୀର ସୈନିକମାନଙ୍କର ରକ୍ତଦାନ ଫଳରେ ଦେଶରୁ ବ୍ରିଟିଶ୍ ଶାସନର ଅବସାନ ହେଲା ସେହି 'ଆଜାଦ୍ ହିନ୍ଦ ଫୌଜ'କୁ ସମ୍ମାନିତ କରିବା ପରିବର୍ତ୍ତେ ସେମାନଙ୍କୁ ଲୋକ ଚକ୍ଷୁରେ ଅପମାନିତ କରିବା ଅଭିସନ୍ଧିରେ ବିଭିନ୍ନ କାରାଗାରରେ ଚୋରୀ, ଡକାୟତି ଓ ନରହତ୍ୟା ଆଦି ଜଘନ୍ୟ ଅପରାଧର ଅଭିଯୋଗରେ ଦଣ୍ଡ ଭୋଗୁଥିବା କଏଦୀମାନଙ୍କ ସହ ସେମାନଙ୍କୁ ପ୍ରଥମ 'ଅଗଷ୍ଟ ପନ୍ଦର'ରେ ''ସର୍ବକ୍ଷମା'' (amensty) ଦିଆଯାଇଥିଲା ।

ସେହିପରି ୧୯୪୪ ମସିହାରୁ ଆରମ୍ଭ ହୋଇଥିବା ବମ୍ବେ ନୌବିଦ୍ରୋହ, ୧୯୪୬ ବେଳକୁ ସାମରିକ ବାହିନୀର ଆକାଶ ଓ ପଦାତିକ ବାହିନୀକୁ ବ୍ୟାପିଯିବା ତଥା ସାରା ଭାରତର ପୋଲିସ ଧର୍ମଘଟ ତଥା ବିଦ୍ରୋହୀ ନୌସେନାଙ୍କ ଦ୍ୱାରା ବମ୍ବେରୁ ବ୍ରିଟିଶ ଶାସନ ଲୋପ ପାଇ ଯାଇଥିଲା । ତାହା ଭାରତର ଅନ୍ୟାନ୍ୟ ଅଞ୍ଚଳକୁ ବ୍ୟାପି ଯିବାର ଆଶଙ୍କା କରି ମୁସ୍ଲିମ୍‌ଲିଗ୍‌ର ନେତା ଜିନ୍ନାଙ୍କ ଠାରୁ ଆରମ୍ଭ କରି ଗାନ୍ଧିଜୀ, ନେହେରୁ ଓ ପଟେଲ ପ୍ରଭୃତି 'ସାମରିକ ବିଦ୍ରୋହ'କୁ ଦବେଇଦେବାକୁ କିପରି ବିଟିଶ୍ ଶାସକମାନଙ୍କୁ ସାହାଯ୍ୟ କରିଥିଲେ, ତାହା ମଧ୍ୟ ଇତିହାସରେ ଏକ କଳଙ୍କିତ ଅଧ୍ୟାୟ ।

ଏପରିକି ସ୍ୱାଧୀନ ଭାରତର ୧୯୫୫-୫୬ ରେ ଜେନେରାଲ ଥିମାୟା ପ୍ରଭୃତିଙ୍କର ପଦୋନ୍ନତିରେ ସରକାର ପାତର ଅନ୍ତର କରିବାରୁ ତାହା ବିରୁଦ୍ଧରେ କିପରି 'ସାମରିକ ଅଶାନ୍ତି' ସୃଷ୍ଟି ହୋଇଥିଲା ଏବଂ ଆସନ୍ନ ବିଦ୍ରୋହର ସମ୍ମୁଖୀନ ହେବାପାଇଁ ରାତି ପାହିବା ବେଳକୁ ଦିଲ୍ଲୀର ଗୁରୁତ୍ୱପୂର୍ଣ୍ଣ ସ୍ଥାନ ମାନଙ୍କରେ 'ବାହିନୀ'ର ସଶସ୍ତ୍ର ଅନୁଗତ ସୈନ୍ୟମାନଙ୍କର ମୁତୟନ କରାଯାଇ ଥିଲା, ତାହା ଉଲ୍ଲେଖ ଯୋଗ୍ୟ ।

୧୯୭୧ ମସିହାରେ ବାଂଲାଦେଶର ମୁକ୍ତି ପରେ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଭାରତରେ ଏକ 'ସାମରିକ ବିଦ୍ରୋହ' ଆଶଙ୍କା କରି ଜେନେରାଲ ମାନିକ୍‌ସାଙ୍କ

ନିକଟରେ କିପରି ହାସ୍ୟାସ୍ପଦ ହୋଇଥିଲେ ତାହାର ଗୋଟିଏ ଉଦାହାରଣ । "୧୯୭୧ରେ ବାଂଲାଦେଶୀ ମୁକ୍ତି ସଂଗ୍ରାମ ସରିଯାଇଥାଏ । ସମଗ୍ର ଦେଶରେ ସେନା ବାହିନୀର ଲୋକପ୍ରିୟତା ବୃଦ୍ଧି ପାଇଥାଏ । ତେବେ ଏହି ସମୟକୁ ଦେଶରେ ସାମରିକ ବିଦ୍ରୋହର ଆଶଙ୍କା ମଧ୍ୟ ସୃଷ୍ଟି ହୋଇଥାଏ । ବିଜୟ ପରେ ଦେଶର ବିଭିନ୍ନ ସ୍ଥାନରେ ମାନେକଶଙ୍କୁ ସମ୍ବର୍ଦ୍ଧନା ଦିଆଯାଉଥାଏ । କୌଣସି ଏକ ସ୍ଥାନରେ ମାନକେଶଙ୍କୁ କେହି ଜଣେ ପ୍ରଶ୍ନ କରିଥିଲେ ଯେ ସେ ଦେଶର ଶାସନ ଭାର କେବେ ଗ୍ରହଣ କରୁଛନ୍ତି ? ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧିଙ୍କ କାନରେ ଏହା ପଡ଼ିବା ମାତ୍ରେ ସେ ମାନକେଶଙ୍କୁ ଡାକି ସିଧା ପ୍ରଶ୍ନ କରିଥିଲେ, "ତୁମେ ସାମରିକ ବିଦ୍ରୋହ କରି ମତେ ଗାଦିଚ୍ୟୁତ କରିବ ଏବଂ ଶାସନ ଭାର ଗ୍ରହଣ କରିବାକୁ ଷଡ଼ଯନ୍ତ୍ର କରୁଛ କି ? ସଙ୍ଗେ ସଙ୍ଗେ ମାନେକଶ କହିଲେ, "ପ୍ରଧାନମନ୍ତ୍ରୀ ମହୋଦୟା, ଆପଣ କ'ଣ ଭାବୁଛନ୍ତି ଯେ ମୁଁ ଆପଣଙ୍କ ଠାରୁ ଭଲକାମ କରିପାରିବି ନାହିଁ ?" ଏହା ପରେ ମାନକେଶ ତାଙ୍କୁ କହିଥିଲେ ଯେ ସାମରିକ ଷଡ଼ଯନ୍ତ୍ରର ଭୟ ଆଦୌ ନାହିଁ । ଏ ସମ୍ପର୍କରେ ଯାହା କିଛି ଶୁଣାଯାଉଛି ତାହା ଗୁଜବ ବ୍ୟତୀତ ଆଉ କିଛି ନୁହେଁ । ସେହିପରି ୧୯୬୨ ମସିହାରେ ସଂଘଟିତ ଚୀନ-ଭାରତ ଯୁଦ୍ଧବେଳେ ଉତ୍ତରପୂର୍ବ ଫ୍ରଣ୍ଟିୟର ଏଜେନ୍ସି (ନେଫା) ଅଞ୍ଚଳରେ ଲଢୁଥିବା ଭାରତୀୟ ସୈନ୍ୟମାନେ ପୋଷାକପତ୍ର, ଖାଦ୍ୟପେୟ ଏପରିକି ଉପଯୁକ୍ତ ଅସ୍ତ୍ରଶସ୍ତ୍ରର ଅଭାବ ଯୋଗୁଁ ଯେଉଁ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୋଇଥିଲେ, ତାହା ସେମାନଙ୍କ ମଧ୍ୟରେ ଘୋର ଅଶାନ୍ତି ଓ ଅସନ୍ତୋଷ ସୃଷ୍ଟି କରିଥିଲା । କ୍ରମେ ସେନାବାହିନୀର ଅନ୍ୟାନ୍ୟ ବିଭାଗରେ ମଧ୍ୟ 'ପ୍ରଫେସନାଲ' ବା ଚାକିରୀ ସମ୍ବନ୍ଧୀୟ ନାନା ବାଧା ବିଘ୍ନ ଯୋଗୁଁ ବିଶେଷତଃ ଦେଶରକ୍ଷା ମନ୍ତ୍ରୀ କୃଷ୍ଣ ମେନନ୍‌ଙ୍କ ବ୍ୟବହାରରେ କ୍ଷୁବ୍ଧ ହୋଇ ବହୁ ସୈନ୍ୟ ସେନାପତି ମଧ୍ୟ ବିଦ୍ରୋହାଚରଣ କରିଥିଲେ । ଜେନେରାଲ କାଉଲଙ୍କର 'The Untold Story' ପୁସ୍ତକରେ ସେ ସମ୍ପର୍କରେ ଉଲ୍ଲେଖ ହୋଇଅଛି ।

ତେଣୁ ଅଯୋଗ୍ୟ ପ୍ରଶାସକମାନେ ସୈନ୍ୟବାହିନୀକୁ ରାଜନୀତିକ ସଂକ୍ରମଣରୁ ମୁକ୍ତ ରଖିବା ପାଇଁ ସର୍ବଦା ଆପ୍ରାଣ ଚେଷ୍ଟା କଲେ ମଧ୍ୟ ଜନ ଅସନ୍ତୋଷରୁ ବା ଜନ ବିଦ୍ରୋହରୁ ନିଜକୁ ରକ୍ଷା ବା ନିରାପଦ ରଖିବାକୁ ସେହି ସୈନ୍ୟବାହିନୀକୁ ସେମାନଙ୍କର ଶେଷ ରକ୍ଷାକର୍ତ୍ତା ଭାବରେ ବାରମ୍ବାର କରି ସେମାନଙ୍କର ସାମାଜିକ ସମ୍ପର୍କ ବୃଦ୍ଧି କରିବାରେ ପରୋକ୍ଷରେ ସାହାଯ୍ୟ କରନ୍ତି ଏବଂ ସେନାବାହିନୀ ରାଜନୀତିରେ ସଂକ୍ରମିତ ହେବାକୁ ବାଧ୍ୟ ହୁଏ । ଏତଦ୍ ବ୍ୟତୀତ ସୈନିକମାନେ ନିଜ ନିଜର ପରିବାର ଓ ସମାଜ ସହ ସମ୍ପର୍କ ରଖିଥିବା ଅବକାଶରେ ପରିବାର ଓ ବୃହତ୍ତର ସମାଜର ଆଶା ଆକାଂକ୍ଷା, ସୁଖ ଦୁଃଖ, କଳ୍ପନା ବା ସ୍ୱପ୍ନ- ଯାହାକି ସମଗ୍ର ରାଷ୍ଟ୍ରର ପ୍ରତିଛବି ସେମାନଙ୍କର ହୃଦୟ ଆକାଶରେ ପ୍ରତିଫଳିତ ହୁଏ । ସୈନ୍ୟ ବାହିନୀର କଠୋର ଶୃଙ୍ଖଳାର ଲୌହ ପରଦାକୁ ଭେଦ କରି ଦେଶର ରାଜନୀତିକ ଉତ୍‌ଥାନ ପତନରେ ତାହାର ହୃଦୟ ଆନ୍ଦୋଳିତ ହୁଏ । ଏକ ମୁକ୍ତ ସମାଜରେ ସେହି ଆଲୋଡ଼ନ

ଅଧିକ ତୀବ୍ର ହୋଇଥାଏ । ସର୍ବୋପରି ତାହାର ଶ୍ରେଣୀ ଚରିତ୍ର ମଧ୍ୟ ସ୍ୱାଭାବିକ ଭାବରେ ତା'ର ଦ୍ୱନ୍ଦ୍ୱକୁ ଅଧିକ ପ୍ରକଟିତ କରେ ଏବଂ ଅନୁକୂଳ ସମୟ ସୁଯୋଗ ମିଳିଲେ ତାହା ଆତ୍ମ ପ୍ରକାଶ କରେ ।

ଶାସକ ବର୍ଗ ଏଭଳି ହୀନମନ୍ୟତାରେ ପ୍ରପୀଡ଼ିତ ଯେ ସେମାନେ ସେନାବାହିନୀକୁ କେବଳ ଯେ ରାଜନୈତିକ ସଂକ୍ରମଣରୁ ମୁକ୍ତ ରଖିବାକୁ ବୃଥା ପ୍ରଚେଷ୍ଟା କରନ୍ତି ସେତିକି ନୁହେଁ, ସେମାନେ ଇତିହାସରେ ଘଟିଥିବା ସାମରିକ ବିଦ୍ରୋହର ବିବରଣୀକୁ ମଧ୍ୟ ସାମରିକ ବାହିନୀର ଦୃଷ୍ଟି ଉହାଡ଼ରେ ରଖିବାକୁ ଚେଷ୍ଟା କରନ୍ତି । ସାମରିକ ବାହିନୀ ନିଜର ପେଟପାଟଣା ବା ଜୀବନ ଜୀବିକା ସମସ୍ୟା ସମ୍ପର୍କରେ ମଧ୍ୟ ସମ୍ମିଳିତ ପ୍ରଚେଷ୍ଟା କରିବା ବିରୁଦ୍ଧରେ କଠୋର ବିଧି ନିଷେଧ ରହିଅଛି । ତଥାପି ସେଭଳି ସାମୁହିକ ପ୍ରଚେଷ୍ଟା ବା ଆନ୍ଦୋଳନ ଯେ ନହୁଏ ତାହା ନୁହେଁ । କିନ୍ତୁ ସାମରିକ ଅସନ୍ତୋଷ ସହ ଜନ ଅସନ୍ତୋଷ ମିଶିଗଲେ ତାହା ଅତି ଭୟାବହ ଅବସ୍ଥା ସୃଷ୍ଟି କରେ । କାରଣ ସୈନ୍ୟ ଶିବିରର ଚାରିକାନ୍ଥ ଭିତରେ ସୀମାବଦ୍ଧ ଅସନ୍ତୋଷକୁ ପ୍ରଶମିତ କରିବା ହୁଏତ ସହଜ ସାଧ୍ୟ ହୋଇପାରେ । କିନ୍ତୁ ତା'ସହ ଜନ ଅସନ୍ତୋଷ ବା ବିଦ୍ରୋହ ଏକାକାର ହୋଇଗଲେ ପ୍ରଶାସନ ଭୂଲୁଣ୍ଠିତ ହେବା ଅବଧାରିତ ହୋଇଯାଏ ।

ଭାରତରେ ୧୮୫୭ରେ ସଂଘଟିତ 'ପ୍ରଥମ ସ୍ୱାଧୀନତା ଯୁଦ୍ଧ' ବା ମହା ବିଦ୍ରୋହକୁ 'ସିପାହୀ ବିଦ୍ରୋହ' ବୋଲି ପ୍ରଚାର କରିବା ପଛରେ ଶାସକବର୍ଗଙ୍କର ସେହି ଭୟାତୁର ମାନସିକତା ହିଁ କାର୍ଯ୍ୟକରେ । ଯେପରିକି ପରବର୍ତ୍ତୀ ପ୍ରଜନ୍ମ ଜାଣି ନପାରୁ ଯେ ବିଦେଶୀ ଶାସନ ଫଳରେ ଭାରତୀୟ ଜନଜୀବନର ସକଳ କ୍ଷେତ୍ରରେ ଯେଉଁ ଚରମ ଅସନ୍ତୋଷ ସୃଷ୍ଟି ହୋଇଥିଲା, ସେଥିରେ ସିପାହୀମାନଙ୍କ ବିଦ୍ରୋହ ମିଶିଯିବା ଫଳରେ ଏକ ପ୍ରକୃତ 'ମହା ବିଦ୍ରୋହ' ସଂଘଟିତ ହୋଇଥିଲା । ଏକ ସର୍ବାତ୍ମକ ସଶସ୍ତ୍ର ଅଭ୍ୟୁତ୍ଥାନର ମାନସିକତା ଯେପରି ଭାରତୀୟ ଜନମାନସକୁ ସ୍ପର୍ଶ କରିନପାରେ ଏହାହିଁ ଥିଲା ଇତିହାସକୁ ବିକୃତ ଭାବରେ ବା ଅର୍ଦ୍ଧ ସତ୍ୟ ଭାବରେ ପ୍ରକାଶ କରିବାର ମୁଖ୍ୟ ଉଦ୍ଦେଶ୍ୟ । ମନୀଷି କାର୍ଲ ମାର୍କ୍ସ ଏହାକୁ ବିଶ୍ଳେଷଣ କରି ଲେଖିଛନ୍ତି ଯେ ଏହା ସିପାହୀ ବିଦ୍ରୋହ ନୁହେଁ ଏହା ପ୍ରକୃତରେ 'ପ୍ରଥମ ସ୍ୱାଧୀନତା ଯୁଦ୍ଧ' ।

ଠିକ୍ ସେହିଭଳି ଭାରତର ସ୍ୱାଧୀନତା ସଂଗ୍ରାମର ଅନ୍ତିମ ପର୍ଯ୍ୟାୟରେ ହୋଇଥିବା ଗୌରବୋଜ୍ଜ୍ୱଳ ସାମରିକ ଜନ ବିଦ୍ରୋହକୁ ଲୋକଲୋଚନର ଅନ୍ତରାଳରେ ରଖିବା ପାଇଁ ଭାରତର ତତ୍‌କାଳୀନ ଜାତୀୟ ନେତୃବୃନ୍ଦ ଉଭୟ କଂଗ୍ରେସ ଓ ମୁସ୍ଲିମ୍ ଲିଗର ନେତୃମଣ୍ଡଳୀ-ଆଜିଯାଏ ଉଦ୍ୟମ କରି ଆସିଛନ୍ତି ଏବଂ ନିହାତି ଲୁଚାଇ ରଖି ହେବନାହିଁ ବୋଲି ସେହି ସାମରିକ - ଜନବିଦ୍ରୋହକୁ 'ସାମାନ୍ୟ ନୌ ବିଦ୍ରୋହ' ବୋଲି ବହୁ ଅନିଚ୍ଛା ସତ୍ତ୍ୱେ ଇତିହାସ ପୁସ୍ତକ ମାନଙ୍କରେ ଲିପିବଦ୍ଧ କରିଅଛନ୍ତି ।

ଏହି ଭଳି ଭାବରେ ସାମରିକ ଜନବିଦ୍ରୋହ ଘଟଣାକୁ ସମ୍ପୂର୍ଣ୍ଣ ଗୋପନ ରଖିବା ବା ବିକୃତ କରି ପ୍ରଚାର କରିବାରେ ଉଭୟ ବିଦେଶୀ ଶାସକ ବୃନ୍ଦ ଓ ସ୍ୱଦେଶୀ ଦେଶ ସେବକମାନଙ୍କର ମନୋଭାବରେ କୌଣସି ପାର୍ଥକ୍ୟ ନାହିଁ ।

ସ୍ମରଣଯୋଗ୍ୟ ଯେ ଯେଉଁ ମୁହୂର୍ତ୍ତରେ ସେନାବାହିନୀ ଅନୁଭବ କରେ ଯେ ଶାସକ ଶ୍ରେଣୀର ଶୋଷଣ ବ୍ୟବସ୍ଥାରେ ସେମାନେ ସହାୟକ ହେବା ଅପେକ୍ଷା ତାହାର ଅବସାନ ଘଟାଇବା ଅଧିକ ଲାଭଜନକ ଏବଂ ତାହା ନିଜର ଶ୍ରେଣୀ ସ୍ୱାର୍ଥର ଅନୁକୂଳ, ସେତେବେଳେ ସେ ବିଦ୍ରୋହର ଖଡ଼୍‌ଗ ଉତ୍ତୋଳନ କରେ ଏବଂ ସେ କ୍ୟାଣ୍ଟନ୍‌ମେଣ୍ଟରୁ ବାହାରି ଆସି ପ୍ରକାଶ୍ୟ ରାଜପଥରେ ଶାସକ ଶ୍ରେଣୀ ଉପରେ ଲମ୍ଫ ପ୍ରଦାନ କରେ । ବିଶ୍ୱର ସବୁ ପୁଞ୍ଜିବାଦୀ-ସାମନ୍ତବାଦୀ ରାଷ୍ଟ୍ରରେ ସ୍ୱାଭାବିକ ଭାବରେ ଘଟୁଥିବା ନିର୍ମମ ସତ୍ୟର ଇତିହାସ ପୁନରାବୃତ୍ତିକୁ ଶାସକ ଶ୍ରେଣୀ ସର୍ବଦା ଭୟ କରେ ଏବଂ ସେ ଇତିହାସକୁ ''ଓଟପକ୍ଷୀ ଶିକାରୀ ଦୃଷ୍ଟିରୁ ରକ୍ଷା ପାଇବା ପାଇଁ ବାଲୁକା ସ୍ତୁପରେ ମୁଣ୍ଡ ଗୁଞ୍ଜି ବୃଥା ପ୍ରୟାସ କରିବା ଭଳି''- ଭୁଲିଯିବାକୁ ଚେଷ୍ଟା କରେ । ନଚେତ ବିକୃତ ଓ ଅସତ୍ୟ ଇତିହାସ ଲେଖିବା ପାଇଁ ଭାଡିଆ ଖିଆ ଇତିହାସକାରଙ୍କୁ ବରାଦ କରେ । ସେ ଇତିହାସରୁ କିଛି ଶିଖେ ନାହିଁ । ଜଣେ ଇତିହାସକାରଙ୍କ ଭାଷାରେ '' We learn from History that we do not learn from History. (ଆମେ ଇତିହାସରୁ ଏହା ଶିକ୍ଷା ଲାଭ କରୁ ଯେ ଆମେ ଇତିହାସରୁ କିଛି ଶିକ୍ଷା ଲାଭ କରୁ ନାହୁଁ ।)

ଭାରତର ନବ୍ୟଶାସକ ମାନଙ୍କ ଦ୍ୱାରା ବେତନ ବା ରାଜାନୁଗ୍ରହ ପ୍ରାପ୍ତ ସେହି ବରାଦୀ ଐତିହାସିକମାନଙ୍କୁ ଯଦି ପଚରାଯାଏ ଯେ ସ୍ୱାଧୀନତା ସଂଗ୍ରାମୀ ପ୍ରତି ଭାରତୀୟ ସୈନ୍ୟ ବାହିନୀର 'ଅବଦାନ' କ'ଣ ?'' ତେବେ ସେମାନଙ୍କ ପ୍ରଥମ ପ୍ରତିକ୍ରିୟା ହେବ- ପ୍ରଶ୍ନକର୍ତ୍ତାଙ୍କ ପ୍ରତି ଭ୍ରୂକୁଞ୍ଚନ ବା ନାଶିକା କୁଞ୍ଚନ । ଏହା ଏଭଳି ଏକ ସ୍ପର୍ଶକାତର ବିଷୟ ଯେ ଏହାର ପ୍ରକାଶ୍ୟ ଆଲୋଚନା କେବଳ ଦେଶ ବିରୋଧୀ ନୁହେଁ, ଏହା ଏକ ଗୁରୁତର ଅପରାଧ ମଧ । ଏହାହିଁ ହୁଏତ ସେମାନଙ୍କର ପାରମ୍ପରିକ ଉତ୍ତର । ବେଶୀ ଖୋଳିତାଡ଼ି ପଚାରିଲେ-ସେମାନେ 'ସିପାହୀ ବିଦ୍ରୋହ' ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିବେ ଯେପରିକି ଏହା ଏକ ସାଧାରଣ ବା ମାମୁଲି 'ସିପାହୀ ବିଦ୍ରୋହ' ଥିଲା ଏବଂ ଯେପରିକି 'ସିପାହୀ ବିଦ୍ରୋହ' ସହ ଜନ ସାଧାରଣଙ୍କର କୌଣସି ସମ୍ବନ୍ଧ ନିଥିଲା । ଭାରତ ଇତିହାସ ସମ୍ପର୍କରେ ଜ୍ଞାନ ଥିବା ବ୍ୟକ୍ତିମାନେ ମଧ ସେହି ସିପାହୀ ବିଦ୍ରୋହକୁ ହିଁ ଏକମାତ୍ର ''ସେନା-ବିଦ୍ରୋହ ବୋଲି ମନେ କରନ୍ତି । କିନ୍ତୁ ଜାଣି ରଖିବା ଉଚିତ୍ ଯେ ସିପାହୀ ବିଦ୍ରୋହ ପୂର୍ବରୁ ଓ ପରେ ବ୍ରିଟିଶ୍ ଶାସନ ବିରୁଦ୍ଧରେ ବହୁ ସଂଖ୍ୟକ ଖଣ୍ଡ ବିଦ୍ରୋହ ବିଭିନ୍ନ କାଳରେ ସଂଘଟିତ ହୋଇଛି ଏବଂ ସର୍ବଶେଷ ସାମରିକ ବିଦ୍ରୋହ ହୋଇଛି ସ୍ୱାଧୀନତା ପ୍ରାପ୍ତିର ପ୍ରାକ୍‌କାଳରେ ୧୯୪୪ରୁ ୧୯୪୬ ମସିହା ପର୍ଯ୍ୟନ୍ତ ଯାହାକି ସ୍ୱାଧୀନତା ପ୍ରାପ୍ତିରେ ଏକ ନିର୍ଣ୍ଣୟାତ୍ମକ ଭୂମିକା ଗ୍ରହଣ କରିଛି ।

ଆଲୋଚନାର ସୁବିଧା ପାଇଁ ବିଶେଷତଃ ବିଦ୍ରୋହର ପ୍ରକୃତି, ବ୍ୟାପ୍ତି, ଚରିତ୍ର ଓ ପରିଣତି ଦୃଷ୍ଟିରୁ ସେହି ସବୁ ସାମରିକ ବିଦ୍ରୋହ ଗୁଡ଼ିକୁ ନିମ୍ନଲିଖିତ ଭାବେ ବିଭକ୍ତ କରାଯାଇପାରେ ।

୧. ପ୍ରାକ୍ ମହାବିଦ୍ରୋହ ଯୁଗ- ୧୭୫୭ ରୁ ୧୮୫୭ ପର୍ଯ୍ୟନ୍ତ

୨. ମହାବିଦ୍ରୋହ ଯୁଗ- ୧୮୫୭

୩. ପ୍ରଥମ ବିଶ୍ୱଯୁଦ୍ଧ ବା ଉତ୍ତର ମହାବିଦ୍ରୋହ ଯୁଗ- ୧୯୪୪-୪୬

୪. ସଂପୂର୍ଣ୍ଣ ସାମରିକ ବିଦ୍ରୋହ ବା ସର୍ବାତ୍ମକ ବିପ୍ଳବ ଯୁଗ - ୧୯୪୪-୪୬

ଏହା ସ୍ୱୀକାର କରିବାରେ କୌଣସି ଅସୁବିଧା ନାହିଁ ଯେ ସୈନ୍ୟବାହିନୀର ବିଦ୍ରୋହାତ୍ମକ କାର୍ଯ୍ୟ ସମ୍ପର୍କରେ ଏକ ବିଶ୍ୱାସ ଯୋଗ୍ୟ ବିବରଣୀ ପ୍ରଦାନ କରିବା ବେଶ୍ ଏକ କଷ୍ଟକର କାର୍ଯ୍ୟ । ପୂର୍ବରୁ କୁହାଯାଇଛି ଯେ ଏଭଳି ଏକ ସ୍ପର୍ଶକାତର ବିଷୟରେ ପ୍ରକାଶ୍ୟ ଆଲୋଚନା କରିବା କିମ୍ବା ତାହାର ଉଲ୍ଲେଖ କରିବାକୁ ରାଜ୍ୟ ରକ୍ଷା ବିଭାଗରେ ସରକାରୀ ରେକର୍ଡ ରକ୍ଷକ ମାନଙ୍କୁ ବିଶେଷ ଉତ୍ସାହିତ କରାଯାଏନା । ଯାହା କିଛି ରେକର୍ଡ଼ ରଖାଯାଏ ତାହା ସବୁ ଚିହ୍ନିତ ହୁଏ 'କ୍ଲାସିଫାଏଡ୍ ବା ଟପ୍ ସିକ୍ରେଟ୍' ବା 'ଅତିଗୋପନୀୟ' ରେକର୍ଡ ଭାବରେ । ସୁତରାଂ ସାଧାରଣ ଇତିହାସ ଲେଖକମାନଙ୍କର ଗବେଷଣାତ୍ମକ ଗ୍ରନ୍ଥ ଗୁଡ଼ିକରେ ମଧ୍ୟ ସେହି ଟପ୍ ସିକ୍ରେଟ୍ ରେକର୍ଡ ମିଳିବା ଦୁରୂହ ବ୍ୟାପାର ଭାବରେ ବିବେଚିତ ହୁଏ । କେବଳ ମାତ୍ର ସରକାରୀ ସଙ୍କଳିତ ଇତିହାସ ପୁସ୍ତକ ଗୁଡ଼ିକରେ ସେହି ଦୁର୍ଲଭ ରେକର୍ଡ ପତ୍ରର ଉଲ୍ଲେଖ ମିଳେ । କିନ୍ତୁ ଯେହେତୁ ସରକାରୀ ଐତିହାସିକମାନେ ସ୍ୱାଧୀନତା ସଂଗ୍ରାମର ସେହି ଗୌରବମୟ ବିଭାଗ ସମ୍ପର୍କରେ ସମ୍ପୂର୍ଣ୍ଣ ଉଦାସୀନ ବା ଆଦର୍ଶବାଦ ଦୃଷ୍ଟିରୁ ସମ୍ପୂର୍ଣ୍ଣ ବିରୋଧୀ ଅଟନ୍ତି ତେଣୁ ସରକାରୀ କର୍ତ୍ତାମାନଙ୍କର ନିର୍ଦ୍ଦିଷ୍ଟ ନିର୍ଦ୍ଦେଶନାମା ଅଭାବରେ ତାହାର ଉଲ୍ଲେଖ ମଧ୍ୟ ସମ୍ଭବ ନୁହେଁ । ତଥାପି ଆଶାର କଥା ଏତିକି ଯେ ବ୍ରିଟିଶ୍ ଶାସନ ଆରମ୍ଭରୁ ମହାବିଦ୍ରୋହ ୧୮୫୭ ପର୍ଯ୍ୟନ୍ତ ସଂଘଟିତ ସାମରିକ ବିଦ୍ରୋହ ଗୁଡ଼ିକର ସରକାରୀ ବିବରଣୀ ସ୍ୱଳ୍ପ ପରିମାଣରେ ମିଳୁଥିଲେ ସୁଦ୍ଧା ତାହାର ପରବର୍ତ୍ତୀ ବିଦ୍ରୋହ ସମ୍ପର୍କରେ ସରକାରୀ ବିବରଣୀ ଗୁଡ଼ିକ ସମ୍ପୂର୍ଣ୍ଣ ନୀରବ କହିଲେ ଅତ୍ୟୁକ୍ତି ହେବ ନାହିଁ । ଅର୍ଥାତ୍ ବ୍ରିଟିଶ୍ ଶାସନ ଅଧୀନରେ ବିଶେଷତଃ ଭାରତରେ ଏକ ସୁସଂହତ ଜାତୀୟ ଆନ୍ଦୋଳନ୍ ଶକ୍ତିଶାଳୀ ହେବା ପୂର୍ବରୁ ହୋଇଥିବା ସେନା ବିଦ୍ରୋହର ସରକାରୀ ରେକର୍ଡ ପ୍ରକାଶ ପାଉଥିଲେ ହେଁ ପରବର୍ତ୍ତୀ ସମୟରେ ବିଶେଷତଃ ସ୍ୱାଧୀନତା ପ୍ରାପ୍ତିର ପ୍ରାକ୍ କାଳରେ ସେହି ବିଦ୍ରୋହ ସମ୍ପର୍କୀୟ ସମ୍ପୂର୍ଣ୍ଣ ବିବରଣୀ ପ୍ରକାଶ କରିବାକୁ ଶାସକ ଶ୍ରେଣୀ ପ୍ରବଳ କୁଣ୍ଠା ପ୍ରକାଶ କରିଆସିଛନ୍ତି ।

-୨-

ବିଡ଼ମ୍ବନାର କଥା ଏହା ଯେ ଯେଉଁ ସେନା ବାହିନୀ ଏ ଦେଶରୁ ବିଦେଶୀ ଶାସନର ମୂଳୋତ୍ପାଟନ କରିବାକୁ ବାରମ୍ବାର ଦୁଃସାହସିକ ଓ ବିପଦ୍‌ଜନକ ଅଭିଯାନ କରି ପ୍ରାଣଦାନ

କରିଛି, ସେହି ସୈନ୍ୟବାହିନୀର ପ୍ରତ୍ୟକ୍ଷ ସାହାଯ୍ୟ ଓ ପ୍ରାଣଦାନରେ ହିଁ ପ୍ରଥମେ ଏ ଦେଶରେ ବିଦେଶୀ ବ୍ରିଟିଶ୍ ଶାସନ ମଜବୁତ୍ ହୋଇଥିଲା । ଇଂରେଜ ମାନଙ୍କ ଦ୍ୱାରା ଭାରତ ଦଖଲ ହେବା ଏବଂ ଏଠାରେ ଏକ ଶକ୍ତିଶାଳୀ ସାମ୍ରାଜ୍ୟବାଦୀ ରାଷ୍ଟ୍ର ପ୍ରତିଷ୍ଠା ହେବା ପଛରେ ଯେଉଁ ଭାରତୀୟ ଗୋଷ୍ଠୀର ଗୁରୁତ୍ୱପୂର୍ଣ୍ଣ ଅଂଶଟି ଛିଡ଼ା ହୋଇଥିଲା ସେମାନଙ୍କ ମଧ୍ୟରୁ ଗୋଟିଏ ହେଉଛି ସାମନ୍ତବାଦୀ ରାଜା ରାଜୁଡ଼ା ଗୋଷ୍ଠୀ ଏବଂ ଦ୍ୱିତୀୟଟି ହେଉଛି ଇଷ୍ଟ ଇଣ୍ଡିଆ କମ୍ପାନୀ ଦ୍ୱାରା ନିଯୁକ୍ତ ଭାରତୀୟ ସୈନ୍ୟ ବାହିନୀ । ସେଥିପାଇଁ କାର୍ଲମାର୍କ୍ସ ଯଥାର୍ଥରେ କହିଥିଲେ ''ଇଂରେଜ ମାନଙ୍କ ଦ୍ୱାରା ଭାରତ ଅଧିକୃତ ହେବା ଏବଂ ଭାରତୀୟମାନଙ୍କ ଅର୍ଥ ବ୍ୟୟରେ ସେହି ଅଧିକାର ସୁରକ୍ଷିତ ହେବା, ପୁଣି ସେହି ଭାରତୀୟ ସୈନ୍ୟଙ୍କ ଦ୍ୱାରା ଶାସିତ ହେବା ଫଳରେ ଶତ ଶତ ବର୍ଷ ବିଜିତ ହେବା ଛଡ଼ା ଭାରତର ଅନ୍ୟ ଗତି କ'ଣ ଥିଲା ? ଭାରତର କୋଡ଼ିଏ କୋଟି ଲୋକଙ୍କୁ ଦବେଇ ରଖିବାକୁ (୧୮୫୭ ଜନଗଣନା ଅନୁସାରେ) ଦୁଇ ଲକ୍ଷ ଭାରତୀୟ ସୈନ୍ୟ ନିଯୁକ୍ତ ହୋଇଥିଲେ ଏବଂ ସେହି ଦୁଇ ଲକ୍ଷ ଭାରତୀୟ ସୈନ୍ୟଙ୍କୁ ଜଗିରହିଥିଲେ ମାତ୍ର ଚାଳିଶି ହଜାର ଗୋରା ସୈନ୍ୟ । ଏହିଭଳି ଭାବରେ ଭାରତୀୟ ସୈନ୍ୟଙ୍କ ଶକ୍ତି ନେଇ ମୁଷ୍ଟିମେୟ ଗୋରା ସୈନ୍ୟ ଏ ଦେଶକୁ ପରାଧୀନ କରି ରଖିଥିଲେ । ଉଦାହରଣ ସ୍ୱରୂପ ୧୭୪୪ରୁ ୧୭୫୪ ପର୍ଯ୍ୟନ୍ତ ଦକ୍ଷିଣ ଭାରତର ବିଭିନ୍ନ ରାଜ୍ୟ ଦଖଲ କରିବାକୁ ମାତ୍ର ତିନିଶହ ଗୋରା ସୈନ୍ୟଙ୍କୁ କାମରେ ଲଗାଯାଇଥିଲା । କିନ୍ତୁ ଭାଗ୍ୟର ବିଡ଼ମ୍ବନା ଯେ ସେହି ମୁଷ୍ଟିମେୟ ଗୋରା ସୈନ୍ୟଙ୍କୁ ସାହାଯ୍ୟ କରିଥିଲେ ଚାରି ହଜାର କଳାସୈନ୍ୟ । ପ୍ରସିଦ୍ଧ ପଲାସୀ ଯୁଦ୍ଧରେ ଆନୁପାତିକ ସୈନ୍ୟ ସଂଖ୍ୟା ଥିଲା ଆହୁରି ବେଦନା ଦାୟକ । ଲର୍ଡ କ୍ଲାଇବ ମାତ୍ର ନ'ଅ ଶହ ଗୋରା ସୈନିକଙ୍କୁ ଧରି ଯୁଦ୍ଧ କ୍ଷେତ୍ରରେ ପଦାର୍ପଣ କରିଥିଲେ । କିନ୍ତୁ ସେ ଗୋରା ସୈନ୍ୟଙ୍କର ସମ୍ମୁଖ ଧାଡ଼ିରେ ଲଢୁଥିଲେ ଦୁଇହଜାର ଏକଶହ କଳା ସୈନ୍ୟ । ପଲାସୀ ଯୁଦ୍ଧରେ ମାତ୍ର ସାତଜଣ ଗୋରା ସୈନ୍ୟ ନିହତ ହୋଇଥିଲେ । ଅଥଚ ନିହତ କଳାସୈନ୍ୟଙ୍କ ସଂଖ୍ୟା ଥିଲା ସହସ୍ରାଧିକ । ଅର୍ଥାତ୍ ମାତ୍ର ସାତ ଜଣ ଗୋରା ସୈନ୍ୟଙ୍କ ପ୍ରାଣ ବିନିମୟରେ ଇଂରେଜମାନେ ଭାରତର ସର୍ବାଧିକ ଉର୍ବରଶାଳୀ ଓ ସାଢ଼େ ପଚିଶ ନିୟୁତ ଟଙ୍କା ବାର୍ଷିକ ଆୟ ହେଉଥିବା ବଙ୍ଗ, ବିହାର, ଓଡ଼ିଶାର ଦେୱାନୀ ଲାଭ କରିଥିଲେ । ତା' ଅପେକ୍ଷା ଅଧିକ ଗୁରୁତ୍ୱ ପୂର୍ଣ୍ଣ ବିଷୟ ହେଉଛି ଏହା ଯେ ଇଂରେଜମାନେ ଏହିଠାରେ ଆସ୍ଥାନ ଜମେଇ ଓ କଲିକତାକୁ ରାଜଧାନୀ ଭାବରେ ବ୍ୟବହାର କରି କ୍ରମେ ସମଗ୍ର ଭାରତରେ ସାମ୍ରାଜ୍ୟ ବିସ୍ତାର କରିଥିଲେ । ଆମ ଓଡ଼ିଶା ଦଖଲ ବେଳେ କଣ ଘଟିଲା ? ଓଡ଼ିଶାକୁ ତିନିଆଡୁ ଆକ୍ରମଣ କରି ସୁଦ୍ଧା ଓଡ଼ିଶା ବିଜୟରେ ଇଂରେଜମାନଙ୍କର ମାତ୍ର ଦୁଇଜଣ ଗୋରା ସୈନ୍ୟ ମରିଥିଲେ । ଅନ୍ୟ ଯେଉଁମାନେ ମରିଥିଲେ ସେମାନେ କଳା ବା ଭାରତୀୟ ସୈନ୍ୟ । ଏତେ ଶସ୍ତାରେ ଏତେ ବଡ଼ ସାମ୍ରାଜ୍ୟ ପ୍ରତିଷ୍ଠା କରିବାର ପଟାନ୍ତର ବିଶ୍ୱ ଇତିହାସରେ ନାହିଁ ।

''ସେହି ସମୟର ଘଟଣାକୁ ଆଜି ଐତିହାସିକମାନେ ସିନା କଲମକାଳିରେ ଆଖିର ଲୁହ ମିଶାଇ ଲେଖିବେ । ସେତେବେଳେ ରାଜାମାନଙ୍କ ଅଧୀନରେ ଫରାସୀ, ଜର୍ମାନୀ ଜାତିର ଲୋକ ମଧ୍ୟ ବେତନଭୋଗୀ ହୋଇ ସୈନ୍ୟ ବିଭାଗରେ କାମ କରୁଥିଲେ । ବଡ଼ ଗଡ଼ଜାତ ତ ଦୂରର କଥା । ସମ୍ବଲପୁର ଭଳି ଛୋଟ ରାଜ୍ୟର ରାଜା ମଧ୍ୟ ଜର୍ମାନୀ ଓ ଫରାସୀ କର୍ମଚାରୀ ସୈନ୍ୟ ବିଭାଗରେ ରଖିଥିବା କଥା ମଟ୍‌ଙ୍କ ଭ୍ରମଣ ବୃତ୍ତାନ୍ତରୁ ଜଣାଯାଏ । ସିନ୍ଧିଆଙ୍କ ଅଧୀନରେ ଅନେକ ଇଂରେଜ ସୈନ୍ୟ ବିଭାଗରେ କାମ କରୁଥିଲେ । ମାତ୍ର ଯେତେବେଳେ ଇଂରେଜମାନଙ୍କ ସାଙ୍ଗରେ ଯୁଦ୍ଧ ଲାଗେ, ସେତେବେଳେ ତାଙ୍କର ଇଂରେଜି କର୍ମଚାରୀମାନେ କାମ ଛାଡ଼ି ଚାଲିଯାଆନ୍ତି । ଏପରିକି ଯେଉଁ ଆଙ୍ଗ୍ଲୋ ଇଣ୍ଡିୟାନ୍ ମାନେ କାମ କରୁଥିଲେ ସେମାନେ ମଧ୍ୟ ପାଣିଠାରୁ ରକ୍ତ ବେଶୀ ବହଳିଆ ବୋଲି ପ୍ରମାଣ କରି କାମ ଛାଡ଼ି ପଳାଇଗଲେ । ମାତ୍ର ଅନ୍ୟ ଦିଗରେ ଦୃଶ୍ୟ କ'ଣ ? ମରହଟ୍ଟାମାନଙ୍କ ଦ୍ୱାରା ନିଯୁକ୍ତ ହୋଇ ଯେଉଁ ଧର୍ମ, ଯେଉଁ ଦେଶ ଓ ଯେଉଁ ଜାତିର ଲୋକ ଯୁଦ୍ଧ କରୁଥିଲେ, ସେମାନଙ୍କ ବିରୁଦ୍ଧରେ ଇଂରେଜମାନଙ୍କ ଦ୍ୱାରା ନିଯୁକ୍ତ ହୋଇ ସେହି ଧର୍ମ, ସେହି ଜାତିର ଲୋକେ ମଧ୍ୟ ଯୁଦ୍ଧ କରୁଥିଲେ ।''

(ଓଡ଼ିଶା ଇତିହାସ- ଡକ୍ଟର ହରେକୃଷ୍ଣ ମହତାବ)

ଭାରତର ପୁଞ୍ଜିବାଦୀ- ସାମନ୍ତବାଦ ଆଦର୍ଶ ସମ୍ପନ୍ନ ଶୋଷକ ଗୋଷ୍ଠୀର ପ୍ରଚାର କରୁଥିବା ଐତିହାସିକ ତଥା ଜନନେତାମାନେ ପ୍ରଚାର କରନ୍ତି ଯେ କେବଳ ଗାନ୍ଧିଜୀଙ୍କର ଅହିଂସା ଅସ୍ତ୍ରରେ ଦେଶ ସ୍ୱାଧୀନ ହୋଇଅଛି । ଏଭଳି ପ୍ରଚାର ଅଜ୍ଞ, ଅଶିକ୍ଷିତ ଓ ଇତିହାସ ଜାଣି ନଥିବା ଲୋକଙ୍କ ଛଡ଼ା ଅନ୍ୟ କେହି ବିଶ୍ୱାସ କରନ୍ତି ନାହିଁ । କାରଣ ଭାରତ ଇତିହାସ ସମ୍ପର୍କରେ ସାଧାରଣ ଜ୍ଞାନ ଥିବା ଲୋକେ ଜାଣନ୍ତି ଯେ ଇଂରେଜମାନଙ୍କ ବିରୁଦ୍ଧରେ ପ୍ରାୟ ଦୁଇଶହ ବର୍ଷକାଳ ସ୍ୱାଧୀନତା ଯୁଦ୍ଧ ହୋଇଥିବା ବେଳେ, ମାତ୍ର କୋଡ଼ିଏଟି ବର୍ଷ ଗାନ୍ଧିଜୀଙ୍କ ନେତୃତ୍ୱରେ 'ଅହିଂସ' ଆନ୍ଦୋଳନ ହୋଇଅଛି । ଯେଉଁ ପ୍ରଧାନ ଦୁଇଟି ଆନ୍ଦୋଳନ ଯଥା ୧୯୨୦-୨୨ର ଅସହଯୋଗ ଓ ୧୯୩୦ର ଲବଣ ଆନ୍ଦୋଳନ ଗାନ୍ଧିଜୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନ ବା ପରିଚାଳନାରେ ହୋଇଛି ସେଥି ମଧ୍ୟରୁ କୌଣସି ଗୋଟିଏ ମଧ୍ୟ ସମ୍ପୂର୍ଣ୍ଣ ଅହିଂସ ଆନ୍ଦୋଳନ ନଥିଲା ବୋଲି ସ୍ୱୟଂ ଗାନ୍ଧିଜୀ ବାରମ୍ବାର କହି ଅଛନ୍ତି । ''କେବଳ ସମ୍ପୂର୍ଣ୍ଣ ଅହିଂସାରେ ବିଶ୍ୱାସ କରୁଥିବା ଲୋକଙ୍କୁ ଧରି ମୁଁ ଯଦି ସଂଗ୍ରାମ କରିଥାନ୍ତି, ତେବେ ତାହା ମୋ' ଠାରୁ ଆରମ୍ଭ ହୋଇ ମୋ'ଠାରେ ହିଁ ଶେଷ ହୋଇଥାଆନ୍ତା'' ବୋଲି ଗାନ୍ଧିଜୀଙ୍କର ମତ ଥିଲା । ବାସ୍ତବତା ହେଉଛି ଯେ ବିଶ୍ୱ ଇତିହାସରେ କେଉଁଠାରେ କେବେହେଲେ କେହି କେବଳ ଅହିଂସା ଅସ୍ତ୍ରରେ ସ୍ୱାଧୀନତା ଯୁଦ୍ଧ କରି ନାହିଁ, ସେଥିରେ ଜୟଯୁକ୍ତ ହେବା ଦୂରେ ଥାଉ । ପୁଞ୍ଜିବାଦୀ-ସାମନ୍ତବାଦୀ ଶୋଷଣ ବ୍ୟବସ୍ଥାକୁ ଚାଲୁ ରଖିବା ପାଇଁ ଶୋଷକ ଶ୍ରେଣୀ ହାତରେ ଅହିଂସା ଏକ ଅମୋଘ ଅସ୍ତ୍ର ଭାବରେ କାର୍ଯ୍ୟ କରିଥାଏ ।

ଗାନ୍ଧିଜୀଙ୍କ ରାଜନୈତିକ କାର୍ଯ୍ୟଧାରା ଓ ଆଦର୍ଶ ଭିତରେ ଏହା ବାରମ୍ବାର ପ୍ରକଟିତ ହୋଇଅଛି ।

ପରାକ୍ରମ ଓ ପୌରୁଷ ଦ୍ୱାରା ଶତ୍ରୁପକ୍ଷକୁ ଜବତ କରିବାକୁ ଯେଉଁମାନେ ସମର୍ଥ ନୁହଁନ୍ତି ସେମାନଙ୍କ ପାଇଁ ଅହିଂସା ଏକ ସର୍ବୋତ୍ତମ ମାର୍ଗ । ଏଥିରେ ଅଗଣନ ଭୟାଳୁ ଲୋକେ ଦେଶପ୍ରେମୀ ବୋଲାଇବାର ସୁଯୋଗ ମଧ୍ୟ ଲାଭ କରନ୍ତି । ଦେଶପାଇଁ ଶେଷ ସୁଦ୍ଧା ତାହା ଏକ ଦୁର୍ଯୋଗ ହୁଏ । ଯେଉଁ ଗୌରବ ବୀରର ପ୍ରାପ୍ୟ, ଦେଶପ୍ରେମ ଯେଉଁ ଚରମତ୍ୟାଗ ଆବଶ୍ୟକ କରେ ଏବଂ ତ୍ୟାଗ ହିଁ ଯେଉଁ ଦେଶପ୍ରେମର ଏକମାତ୍ର ପରିଚୟ ସେସବୁ କିଛି ନଥାଇ ଅହିଂସାର ସହଜ ଓ ସୁବିଧା ବାଦୀ ପ୍ରଦର୍ଶନକୁ ଦେଶପ୍ରେମ ବା ସ୍ୱଦେଶ ହିତୈଷିତା ଭାବେ ପ୍ରତିପାଦିତ କରିବାର ସୁଯୋଗ ଅହିଂସାବାଦୀ ମାନେ ଲାଭ କରିପାରନ୍ତି । ଏହା ଦେଶର ଘୋର କ୍ଷତି ସାଧନ କରିଥାଏ । ଭାରତ ବର୍ଷରେ ତାହାହିଁ ଘଟିଛି ।

ଅହିଂସ ସଂଗ୍ରାମରେ ଅଧିକାଂଶ ସମୟରେ ସଂଗ୍ରାମୀକୁ ଆଦୌ କୌଣସି ଦୈହିକ କ୍ଲେଶ ସ୍ୱୀକାର କରିବାକୁ ପଡୁ ନଥିବାରୁ ସବୁ ଶ୍ରେଣୀର ଲୋକେ ସେହି ସଂଗ୍ରାମରେ ଅକ୍ଲେଶରେ ଯୋଗ ଦେଉଥିଲେ । ଅହିଂସାବାଦୀଙ୍କ ପାଇଁ ମୁସ୍କିଲ କଥା ହେଉଛି ଯେ ଦଳିତ ଓ ଶୋଷିତ ଶ୍ରେଣୀର ଚରିତ୍ରର ବିଶେଷତ୍ୱ ଅନୁସାରେ ସେ ଥରେ ସମ୍ମୁଖ ସଂଗ୍ରାମରେ ଅବତୀର୍ଣ୍ଣ ହେଲେ ସେଥିରେ ତାହାର ସ୍ୱତଃସ୍ଫୂର୍ତ୍ତ ଅସ୍ତ୍ର ହିଁ ପ୍ରୟୋଗ କରେ ଏବଂ ତାହା ଅହିଂସାର ନିର୍ଦ୍ଧାରିତ ସୀମା ଭିତରେ ରହେ ନାହିଁ ବା ରହିପାରେ ନାହିଁ । ଯୁଗ ଯୁଗର ପୁଞ୍ଜିଭୂତ ଶୋଷଣ ବିରୁଦ୍ଧରେ ତା'ର ହୃଦୟ କନ୍ଦରରେ ଥିବା ରୁଦ୍ଧ କ୍ରୋଧ ଓ ପ୍ରତିଶୋଧ ପିପାସାକୁ ସେ ଭଦ୍ର, ବିନୀତ, ନମ୍ର ବା ଅହିଂସ ମାର୍ଗରେ ଚରିତାର୍ଥ କରିପାରେ ନାହିଁ । ଗାନ୍ଧିଜୀ ଓ ଅହିଂସ ଅସ୍ତ୍ର ପ୍ରୟୋଗ କରୁଥିବା ଜନନାୟକମାନେ ଜାଣିଥିଲେ ଯେ ଏ ଦେଶର କୋଟି କୋଟି ଲୋକଙ୍କୁ ଯୁଦ୍ଧକ୍ଷେତ୍ରକୁ ଟାଣି ନଆଣିଲେ କଂଗ୍ରେସର ମୁଷ୍ଟିମେୟ ଉଚ୍ଚ ଶିକ୍ଷିତ, ରାଜା ରାଜୁଡ଼ା, ଓକିଲ ବାରିଷ୍ଟର ପ୍ରଭୃତି ଉଚ୍ଚ ମଧ୍ୟ ବର୍ଗ ବ୍ୟକ୍ତିଙ୍କର କେବଳ ଚାରିକାନ୍ଥ ମଧ୍ୟରେ ସୀମାବଦ୍ଧ ପ୍ରସ୍ତାବ, ସ୍ମାରକ ପତ୍ର, ପ୍ରତିନିଧିଦଳ କିମ୍ବା ବାକ୍ୟାଡ଼ମ୍ବର ଅସ୍ତ୍ରରେ ମହା ପ୍ରତାପୀ ବିଦେଶୀ ସରକାରର କେଶ ମଧ୍ୟ ସ୍ପର୍ଶ କରିପାରିବ ନାହିଁ । ତେଣୁ ସରକାର ସହ ଦର କଷାକଷି କଲେ ସେମାନଙ୍କୁ ବଳ କଷାକଷି ଶକ୍ତି ମଧ୍ୟ ଦେଖାଇବାକୁ ପଡ଼ିବ । ତେଣୁ ଆପାମାର ଜନଗଣଙ୍କୁ ଆନ୍ଦୋଳନ ଭିତରକୁ ଟାଣିନେବାକୁ ହିଁ ପଡ଼ିବ । ଯେଉଁ ଉଚ୍ଚଶ୍ରେଣୀର ସ୍ୱାର୍ଥକୁ ନିଷ୍କଣ୍ଟକ ରଖିବା ପାଇଁ ଏବଂ ବ୍ରିଟିଶ୍ ପୁଞ୍ଜିର ଭବିଷ୍ୟତକୁ ନିରାପଦ ରଖିବା ପାଇଁ କଂଗ୍ରେସ ଗଢ଼ା ଯାଇଥିଲା ''ବିଦେଶୀ ମାନଙ୍କ ଦ୍ୱାରା, ବିଦେଶୀ ମାନଙ୍କ ପାଇଁ ଓ ବିଦେଶୀମାନଙ୍କର'' ସେହି ସଙ୍ଗଠନ ଗାନ୍ଧିଜୀଙ୍କ ନେତୃତ୍ୱରେ ଏକ ଜନ ସଙ୍ଗଠନରେ ପରିଣତ ହୋଇପାରିବ ବୋଲି ବିଶ୍ୱାସ କରି ତାଙ୍କର ବୟୋଃଜ୍ୟେଷ୍ଠ ମାନେ ମଧ୍ୟ ତାଙ୍କୁ କଂଗ୍ରେସ ଭିତରକୁ ସ୍ୱାଗତ କରି ଆଣିଥିଲେ । ସେହି ସାମନ୍ତବାଦୀ ଧର୍ମୀୟ ନେତାଗଣଙ୍କ

ହୃଦ୍‌ବୋଧ ହୋଇଥିଲା ଯେ ସେମାନଙ୍କର ଶ୍ରେଣୀ ସ୍ୱାର୍ଥରେ କୌଣସି ଆଞ୍ଚ ନ ଆଣି ବିଦେଶୀ ଶାସକମାନଙ୍କ ଠାରୁ ଅଧିକରୁ ଅଧିକ ସୁବିଧା ସୁଯୋଗ ଆଦାୟ କରିବାକୁ ଗାନ୍ଧିଜୀ ହିଁ ସର୍ବୋତ୍କୃଷ୍ଟ ବ୍ୟକ୍ତି ଏବଂ ତାଙ୍କ ଦ୍ୱାରା ପ୍ରଦର୍ଶିତ ଅହିଂସ ମାର୍ଗ ହିଁ ସର୍ବୋତ୍କୃଷ୍ଟ ।

ଦକ୍ଷିଣ ଆଫ୍ରିକାରେ ଅହିଂସ ସତ୍ୟାଗ୍ରହ ପ୍ରୟୋଗ କରି ଗୋରା ଶାସକମାନଙ୍କ ଠାରୁ ଯେଉଁ ସୀମିତ ଅଧିକାର ଗାନ୍ଧିଜୀ ଆଦାୟ କରିଥିଲେ, ତାହା ଭାରତର କଂଗ୍ରେସ ନେତୃମଣ୍ଡଳୀ ମଧରେ ଯୁଗପତ୍ ବିସ୍ମୟ ଓ କୌତୁହଳ ସୃଷ୍ଟି କରିଥିଲା ଏବଂ ଗାନ୍ଧିଜୀ ଦକ୍ଷିଣ ଆଫ୍ରିକାରୁ ତାଙ୍କ କର୍ମକ୍ଷେତ୍ର ଭାରତକୁ ସ୍ଥାନାନ୍ତରିତ କରିବା ସଙ୍ଗେ ସଙ୍ଗେ ଭାରତୀୟ ନେତୃତ୍ୱ ଆପଣା ଛାଏଁ ତାଙ୍କ ହାତକୁ ଚାଲି ଆସିଲା । ଗାନ୍ଧୀ ଆନ୍ଦୋଳନର ପ୍ରଥମ ଡାକରା ଥିଲା ଅହିଂସ ଅସହଯୋଗର । ରଓ୍ୱାଲାଟ ଆଇନ୍ ଓ ଜାଲିଆନାୱାଲାବାଗର ନରମେଧ ଯଜ୍ଞ ସମଗ୍ର ଦେଶରେ ବିଦେଶୀ ଶାସକମାନଙ୍କ ବିରୁଦ୍ଧରେ ଯେଉଁ ଘୃଣା ଓ ଅସନ୍ତୋଷ ସୃଷ୍ଟି କରିଥିଲା, ତାହାର ସୁଯୋଗ ନେଇ ସେ ଜନ ଆନ୍ଦୋଳନର ଡାକରା ଦେଲେ । ଫଳରେ ସେ ପର୍ଯ୍ୟନ୍ତ ଯେଉଁ କୋଟି କୋଟି ନିପୀଡ଼ିତ ଓ ଶୋଷିତ ଜନଗଣ ସରକାରୀ ବିରୋଧୀ ଆନ୍ଦୋଳନରେ କେବେଁ ହେଲେ ଭାଗ ନେଇ ନଥିଲେ ସେମାନେ ସଂଗ୍ରାମରେ ଲମ୍ଫ ପ୍ରଦାନ କଲେ । ଜାତି-ଧର୍ମ-ଧନୀ-ନିର୍ଦ୍ଧନ-ସ୍ତ୍ରୀ-ପୁରୁଷ ନିର୍ବିଶେଷରେ ଆବାଳ ବୃଦ୍ଧ ବନିତା ଏହି ଆନ୍ଦୋଳନରେ ଝାସ ଦେଲେ । କିନ୍ତୁ ଏ ଆନ୍ଦୋଳନର ନେତୃତ୍ୱ ଯେପରି ସେହି ସଂଖ୍ୟାଗରିଷ୍ଠ ଶୋଷିତ ଜନଗଣଙ୍କ ହାତକୁ ନଯାଏ ସେ ବିଷୟରେ ଗାନ୍ଧିଜୀ ଖୁବ୍ ସାବଧାନ ଥିଲେ । ସେଥିପାଇଁ ୧୯୨୧ରେ ନାଗପୁର କଂଗ୍ରେସରେ ଅହିଂସା ଅସହଯୋଗ ଆନ୍ଦୋଳନ ସମ୍ପର୍କରେ ହୋଇଥିବା ପ୍ରସ୍ତାବରେ ସ୍ପଷ୍ଟ ନିର୍ଦ୍ଦେଶ ଥିଲା ଯେ କଂଗ୍ରେସ ଦ୍ୱାରା ନିର୍ଦ୍ଦେଶିତ କାର୍ଯ୍ୟକ୍ରମ ବ୍ୟତୀତ ଆନ୍ଦୋଳନକାରୀମାନେ ଅନ୍ୟ କୌଣସି କାର୍ଯ୍ୟକ୍ରମ ଯଦି ଗ୍ରହଣ କରନ୍ତି ତେବେ ସେଥିପାଇଁ କଂଗ୍ରେସ କମିଟିର ଅନୁମତି ନେବାକୁ ପଡ଼ିବ । ଏଠାରେ ଏହା ଉଲ୍ଲେଖ କରାଯାଇପାରେ ଯେ କଂଗ୍ରେସର ଉପରୋକ୍ତ ପ୍ରସ୍ତାବ ଅନୁସାରେ ଶୋଷିତ ଅତ୍ୟାଚାରୀତ କୃଷକ ଯଦି ଖଜଣା ବନ୍ଦ ଭଳି କୌଣସି ନିରୀହ କାର୍ଯ୍ୟକ୍ରମ ହାତକୁ ନିଅନ୍ତି, ତଥାପି ସେଥିପାଇଁ ମଧ ପୂର୍ବାନୁମତି ନେବାକୁ ପଡ଼ିବ । ଏଭଳି ଏକ ଜନଆନ୍ଦୋଳନରେ ଏଭଳି କଠୋର ବିଧି ନିଷେଧ କଡ଼ା କଡ଼ି ଭାବରେ ପ୍ରୟୋଗ କରାଯିବାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଏହା ଯେ କଂଗ୍ରେସର ଯେଉଁ ସାମନ୍ତବାଦୀ ଶ୍ରେଣୀର ନେତୃମଣ୍ଡଳୀ ରହିଥିଲେ ସେମାନଙ୍କର ସ୍ୱାର୍ଥରେ ସାମାନ୍ୟ ଆଞ୍ଚ ଯେପରି ନଆସେ ସେଥିପ୍ରତି ଗାନ୍ଧିଜୀ ମୂଳରୁ ସତର୍କ ରହିଥିଲେ । କେବଳ ସେତିକି ନୁହେଁ, ଶୋଷିତ ଜନତା ଥରେ ଆନ୍ଦୋଳନ ଭିତରେ ଲମ୍ଫ ପ୍ରଦାନ କଲେ ତାହା କଦାପି ଗାନ୍ଧିଜୀ ନିର୍ଦ୍ଦେଶିତ ‘‘ସବିନୟ ଅହିଂସ ସତ୍ୟାଗ୍ରହ’’ ଭିତରେ ସୀମାବଦ୍ଧ ନ ହୋଇ ତାହା ପ୍ରତ୍ୟକ୍ଷ ସଂଗ୍ରାମ ରୂପ ନେବାର ଆଶଙ୍କା ରହିଥିଲା । କାରଣ ଶୋଷିତ ଜନତା ଶ୍ରେଣୀ ଶତ୍ରୁ ବିରୁଦ୍ଧରେ ସଂଗ୍ରାମ କରିବାବେଳେ ସେ ତାହାର ସ୍ୱାଭାବିକ ରୀତିରେ ହିଁ ପରିଚାଳିତ ହୁଏ । ସେଥିରେ ଶ୍ରେଣୀ ଶତ୍ରୁ ମାନଙ୍କର ନେତୃତ୍ୱର ପ୍ରଶ୍ନ ନଥାଏ କିମ୍ବା ସେ ତାହାର କୌଣସି ବିଧି

ନିଷେଧ ମାନେନା । ଏହିଠାରେ ହିଁ ଜନ ବିପ୍ଳବ ସହ ଗାନ୍ଧୀବାଦର ମତଭେଦ ବା ପାର୍ଥକ୍ୟ । କିନ୍ତୁ ଭାରତର ସ୍ୱାଧୀନତା ସଂଗ୍ରାମର ନିର୍ଣ୍ଣୟାତ୍ମକ ଶେଷ ପଚିଶିଟି ବର୍ଷ ଗାନ୍ଧିଜୀଙ୍କ ନେତୃତ୍ୱ ଅବିଚ୍ଛିନ୍ନ ରହିବା ଫଳରେ ସ୍ୱାଧୀନତା ସଂଗ୍ରାମ ଜନ ବିପ୍ଳବର ମାର୍ଗରେ ପରିଚାଳିତ ହେବାରେ ବାରମ୍ବାର ବାଧା ଓ ପ୍ରତିବନ୍ଧକ ସୃଷ୍ଟି ହେଲା । ସ୍ୱାଧୀନତା ପ୍ରାପ୍ତିର ଅର୍ଦ୍ଧଶତାବ୍ଦୀ ପରେ ଆଜି ଯେତେବେଳେ "ସ୍ୱାଧୀନତା ସଂଗ୍ରାମରେ ଭାରତୀୟ ସୈନ୍ୟବାହିନୀର ଅବଦାନ"ର ଏକ ମୂଲ୍ୟାୟନ କରିବାର ଉଦ୍ୟମ ହେଉଛି, ସେତେବେଳେ ସ୍ୱାଭାବିକ ଭାବରେ ଗାନ୍ଧୀବାଦର ସେହି ଜନ ସଂଗ୍ରାମ ବିରୋଧୀ ଦୃଷ୍ଟିକୋଣ ମଧ୍ୟ ଆଲୋଚନା ପରିସର ଭିତରକୁ ଚାଲି ଆସୁଛି । ୧୯୨୨ର ଅସହଯୋଗ ଆନ୍ଦୋଳନ ଯୁଗରେ ଚୌରୀଚୌରା ଠାରେ ଜନତାର ଶାନ୍ତିପୂର୍ଣ୍ଣ ଶୋଭାଯାତ୍ରାରେ ପୋଲିସ୍‌ର ଅଯଥା ବଳ ପ୍ରୟୋଗର ପ୍ରତିକ୍ରିୟାରେ ସେମାନଙ୍କର ପାଲଟା ହିଂସା ଆଚରଣ ଅଭିଯୋଗରେ ଗାନ୍ଧିଜୀ ଏତେ ବଡ଼ ଗଣ ଆନ୍ଦୋଳନକୁ ଅବିଚାରିତ ଭାବରେ ପ୍ରତ୍ୟାହାର କରିନେବାଠାରୁ ଆରମ୍ଭ କରି ୧୯୩୦ ଲବଣ ସତ୍ୟାଗ୍ରହର ଉତ୍ତାଳ ତରଙ୍ଗକୁ ତା'ର ସ୍ୱାଭାବିକ ମାର୍ଗରେ ଚାଲିବାକୁ ନଦେଇ ଗାନ୍ଧୀ ଇରଉଇନ୍ ଚୁକ୍ତିରେ ତାହାକୁ କଳଙ୍କିତ କରିବା ଏବଂ ୧୯୪୨ର 'ଭାରତଛାଡ଼' ଆନ୍ଦୋଳନର ଚରମ ସଂଗ୍ରାମର ଡାକରାକୁ ମିଳାମିଶା ବା କମ୍ପ୍ରମାଇଜ୍‌ରେ ଦେଶ ବିଭାଜନରେ ପରିଣତ କରିବା ଗାନ୍ଧିନୀତିର ଗୋଟିଏ ଗୋଟିଏ ଦୁର୍ବୋଧ ବେଦନା ଦାୟକ ଅଧ୍ୟାୟ । ଜନ ବିପ୍ଳବ ବିରୋଧୀ ଗାନ୍ଧୀ ଆଦର୍ଶର ଚରମ ପରିଣତି ହେଲା ୧୯୪୬ରେ ନୌବିଦ୍ରୋହର ଶୁଭାରମ୍ଭ କରିଥିବା ସାମରିକ ଓ ଜନ ବିଦ୍ରୋହକୁ ତାଙ୍କର ଖୋଲାଖୋଲି ବିରୋଧ । ଯାହା ଫଳରେ ସେହି କ୍ରମବର୍ଦ୍ଧମାନ ସର୍ବାତ୍ମକ ଗଣ ବିପ୍ଳବ ବିରୁଦ୍ଧରେ ଜାତୀୟ ନେତୃବୃନ୍ଦଙ୍କର ସମର୍ଥନ ପୁଷ୍ଟ ହୋଇ ଛିଡ଼ା ହେଲା ଏକ ପ୍ରତିବିପ୍ଳବର ପରିବେଶ । ଯେଉଁ ଶହିଦ୍ ସୈନିକ ଗଣ ସ୍ୱାଧୀନ ଭାରତରେ ସର୍ବୋଚ୍ଚ ଜାତୀୟ ସମ୍ମାନର ଅଧିକାରୀ ହୋଇଥାନ୍ତେ, ସେମାନେ ହେଲେ ନିନ୍ଦିତ ଓ ବିସ୍ମୃତ ।

ସେହି ଶତ ଶତ ଶହିଦ୍ ସୈନିକଙ୍କ ପ୍ରତି ଯଥୋପଯୁକ୍ତ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବା ସଙ୍ଗେ ସଙ୍ଗେ ସେମାନଙ୍କର ମହାନ ବିପ୍ଳବରୁ ଆଗାମୀ ବଂଶଧର ମାନେ ଉପଯୁକ୍ତ ଶିକ୍ଷା ଗ୍ରହଣ କରି ଏକ ଶ୍ରେଣୀ ହୀନ ଶୋଷଣ ମୁକ୍ତ ସମାଜ ଗଢ଼ିବାକୁ ଠିକ୍ ମାର୍ଗ ସ୍ଥିର କରିବା ପାଇଁ ଏହି ପୁସ୍ତକରେ ଉଦ୍ୟମ କରାଯାଇଅଛି ।

- ୩ -

ବ୍ରିଟିଶ୍ ଶାସନର ଶହେବର୍ଷ ଭିତରେ ସୈନ୍ୟବାହିନୀ ଭିତରେ ବ୍ୟାପକ ଭାବରେ ବିଦ୍ରୋହ ସଂଘଟିତ ହୋଇ ନଥିଲେ ମଧ୍ୟ ପଲାସୀ ଯୁଦ୍ଧ ପରେ ପରେ ଆରମ୍ଭ ହୋଇ ଶହେ ବର୍ଷ ପର୍ଯ୍ୟନ୍ତ ବିକ୍ଷିପ୍ତ ଭାବରେ ଯେ ବିଦ୍ରୋହ ହୋଇନଥିଲା ତା' ନୁହେଁ । ୧୮୫୭ର ମହାବିଦ୍ରୋହ ପର୍ଯ୍ୟନ୍ତ ମଝିରେ ମଝିରେ ବାରମ୍ବାର ବିଦେଶୀ ଶାସନ ବିରୁଦ୍ଧରେ ସାମରିକ ଅସନ୍ତୋଷ ପଦାକୁ ବାହାରି

ପଡୁଥିଲା । ବ୍ରିଟିଶ୍ ଶାସନର ଶୋଷଣ ଫଳରେ ଦେଶର ଦାରିଦ୍ର୍ୟ ଯେଉଁ ପରିମାଣରେ ବଢୁଥିଲା, ସେହି ଅନୁପାତରେ ପେଟ ପାଟଣାର ତାଗିଦ୍‌ରେ ଅଧିକରୁ ଅଧିକ ଭାରତୀୟଲୋକେ ସୈନ୍ୟବାହିନୀରେ ମଧ ପ୍ରବେଶ କରୁଥିଲେ । ସୈନ୍ୟବାହିନୀର ସ୍ୱଳ୍ପବେତନ, ଦେଶର ସକଳ କ୍ଷେତ୍ରରେ ସାମ୍ରାଜ୍ୟ ବାଦୀ ଶୋଷଣର ପଦଧ୍ୱନି, ସଂଖ୍ୟା ଗରିଷ୍ଠ ଜନସଂଖ୍ୟାର କ୍ରମବର୍ଦ୍ଧମାନ ଦାରିଦ୍ର୍ୟ, ପ୍ରଶାସନର ଅହମିକା ଓ ଦମ୍ଭ ଭାରତୀୟ ସ୍ୱାଭିମାନକୁ ଯେଉଁ ପରିମାଣରେ ଆହତ କରୁଥିଲା, ସେହି ଅନୁପାତରେ ତାହାର ପ୍ରତିକ୍ରିୟା ମଧ ପ୍ରକାଶିତ ହେଉଥିଲା ଯେତେ ଅଧିକ ସଂଖ୍ୟାରେ ଭାରତୀୟମାନେ ସୈନ୍ୟବାହିନୀରେ ଯୋଗ ଦେଉଥିଲେ । ସେହି ଅନୁପାତରେ ବିଦେଶୀ ଶାସନର ଲୌହ ଶୃଙ୍ଖଳ ସେହି ସୈନ୍ୟବାହିନୀ ସାହାଯ୍ୟରେ ଏ ଦେଶରେ ଅଧିକ ଦୃଢ଼ ହେଉଥିଲା ଏବଂ ସେହି ପରିମାଣରେ ବିଦେଶୀ ଶାସନ ବିରୁଦ୍ଧରେ ଅସନ୍ତୋଷ ମଧ ବୃଦ୍ଧିପ୍ରାପ୍ତ ହେଉଥିଲା । ଏହିଭଳି ଏକ ଦୁଷ୍ଟଚକ୍ର ବା viscious circle ରେ ପିଷ୍ଟ ହୋଇ ସମଗ୍ର ଦେଶରେ ଏକ ବିସ୍ଫୋରକ ପରିସ୍ଥିତି ସୃଷ୍ଟି କରିଥିଲା । ପୁନଶ୍ଚ ହିନ୍ଦୁ ଓ ଇସ୍‌ଲାମ୍ ଧର୍ମାବଲମ୍ବୀମାନେ ଶହ ଶହ ବର୍ଷ ଧରି ଯେଉଁ ଅପୂର୍ବ ଭ୍ରାତୃଭାବ ଭିତରେ କାଳାତିପାତ କରୁଥିଲେ ସେଥି ମଧରେ ଖ୍ରୀଷ୍ଟିୟାନ୍ ଧର୍ମର ଅନୁପ୍ରବେଶ ମଧ ସମନ୍ୱିତ ଭାରତୀୟ ସଂସ୍କୃତି ଉପରେ ଏକ ବିଜାତୀୟ ବିଦ୍ରୁପ ଭଳି ପ୍ରତୀୟମାନ ହୋଇଥିଲା । ପ୍ରଥମେ ନିରୀହ ନମ୍ର ଧର୍ମ ପ୍ରଚାରକ ରୂପେ ପ୍ରବେଶ କରୁ କରୁ କ୍ରମେ ଭାରତରେ ସାମ୍ରାଜ୍ୟବାଦ ଦୃଢ଼ ହେବା ସଙ୍ଗେ ସଙ୍ଗେ ତାହା ଏକ 'ରାଜଧର୍ମ' ର ରୂପ ପରିଗ୍ରହ କରୁଥିଲା ଓ ନିର୍ଯ୍ୟାତନା ମୂଳକ ବାଧ ବାଧକତା ତଥା ଧର୍ମାନ୍ତରିକରଣରେ ରୂପାନ୍ତରିତ ହେଉଥିଲା । ଅବଶ୍ୟ ଭାରତକୁ ଇଂରେଜ ଶାସକମାନଙ୍କ ଆଗମନର ବହୁ ପୂର୍ବରୁ କେରଳ ଓ ପଶ୍ଚିମ ଉପକୂଳରେ ଖ୍ରୀଷ୍ଟିୟାନ୍ ଧର୍ମ ପ୍ରବେଶ କରିସାରି ଥିଲା । କିନ୍ତୁ ତାହା ସେତେବେଳେ ପ୍ରଶାସନ ଦମ୍ଭରେ ଦୃଢ଼ୀଭୂତ ହୋଇ ନଥିଲା । ହିନ୍ଦୁ ଇସ୍‌ଲାମ୍ ବା ଖ୍ରୀଷ୍ଟିୟାନ୍ ଧର୍ମର ଅନ୍ତର୍ନିହିତ ବାର୍ତ୍ତା ବା ଆବେଦନରେ କୌଣସି ମୌଳିକ ପାର୍ଥକ୍ୟ ନଥିଲେ ମଧ ସ୍ୱ ସ୍ୱ ଧର୍ମର ଅଭିମାନ ଓ ଗର୍ବବୋଧ ଏଭଳି ତୀବ୍ର ଓ ନିବିଡ଼ ଥିଲା ଯେ ନିଜ ଧର୍ମ ଉପରେ ଅନ୍ୟ ଧର୍ମର ସାମାନ୍ୟ ଆଘାତ ମଧ ରକ୍ଷଣଶୀଳ ଧର୍ମୀୟ ମଣିଷଟି ସହ୍ୟ କରିବା ସମ୍ଭବ ହେଉ ନଥିଲା । ଏହା ଆହୁରି ଏକ ବିସ୍ମୟ ଜନକ କଥା ଯେ ଭାରତ ବର୍ଷରେ ହିନ୍ଦୁଧର୍ମ ହଜାର ହଜାର ବର୍ଷ ଧରି ଧରି ପ୍ରତିଷ୍ଠିତ ହୋଇଥିଲେ ମଧ ଇସ୍‌ଲାମ୍‌ର ଆଗମନ ବା ପ୍ରବେଶରେ ହିନ୍ଦୁଧର୍ମ ବିଶ୍ୱାସ ଉପରେ ତାହାର ପ୍ରତିକ୍ରିୟା ବିଶେଷ ତୀବ୍ର ହୋଇନଥିବା ସ୍ଥଳେ ଖ୍ରୀଷ୍ଟିୟାନ୍ ଧର୍ମ ପ୍ରତି ଉଭୟ ହିନ୍ଦୁ ଓ ମୁସଲମାନ ଧର୍ମାବଲମ୍ବୀଙ୍କର ବିରୋଧ ହୋଇଥିଲା ଅଧିକ ବ୍ୟାପକ । ଏହି ପ୍ରତିକ୍ରିୟା ସାଧାରଣ ଜନତା ଅପେକ୍ଷା ସୈନ୍ୟବାହିନୀ ମଧରେ ହିଁ ଅଧିକ ସ୍ପଷ୍ଟ ରୂପେ ପ୍ରକଟିତ ହୋଇଥିଲା । କିନ୍ତୁ ସେହି ସବୁ ବିଦ୍ରୋହ ବିକ୍ଷିପ୍ତ, ଅସଂଘଟିତ ଓ ସ୍ୱତଃସ୍ଫୂର୍ତ୍ତ ହୋଇଥିବାରୁ ଅଧିକ ସୈନ୍ୟବଳ ସାହାଯ୍ୟରେ ସେହି ବିଦ୍ରୋହ ଗୁଡ଼ିକୁ ବ୍ରିଟିଶ ଶାସକମାନେ ଦବେଇ ଦେଇ ପାରୁଥିଲେ ।



# ପ୍ରାକ୍ ମହା ବିଦ୍ରୋହ ଯୁଗ

ସ୍ୱାଧୀନତା ସଂଗ୍ରାମରେ ସେନା ବିଦ୍ରୋହର ଶୁଭଶଙ୍ଖ ବାଜିଥିଲା ପଲାସୀ ଯୁଦ୍ଧ ପରେ । ମାତ୍ର ସାତଜଣ ଗୋରା ସୈନ୍ୟଙ୍କ ପ୍ରାଣ ବିନିମୟରେ କେବେଁ ଇଂରେଜମାନେ ପଲାସୀ ଯୁଦ୍ଧରେ ଜୟଯୁକ୍ତ ହୋଇପାରି ନଥାନ୍ତେ, ଯଦି ଶହ ଶହ କଳା ସୈନ୍ୟ ବିଦେଶୀ ଶାସକମାନଙ୍କ ପାଇଁ ପ୍ରାଣ ଦେଇ ନଥାନ୍ତେ । କିନ୍ତୁ ପଲାସୀ ଯୁଦ୍ଧର ମାତ୍ର ସାତଟି ବର୍ଷ ପରେ ସ୍ୱାଧୀନ ଚେତା ନବାବ ମୀରକାଶିମ୍, ଅଯୋଧ୍ୟା ନବାବା ସୁଜାଉଦୌଲା ଏବଂ ଦିଲ୍ଲୀ ସମ୍ରାଟ ସାହା ଆଲାମ୍‌ଙ୍କ ମିଳିତ ସୈନ୍ୟଙ୍କ ସହ ଇଂରେଜ ମାନଙ୍କର ହୋଇଥିବା ବକ୍ସାର ଯୁଦ୍ଧ (୧୭୬୪) ରେ ଭାରତୀୟ ସୈନ୍ୟଙ୍କ ଭିତରେ ବିଦ୍ରୋହ ସୃଷ୍ଟି ହୋଇଥିଲା । ଇଂରେଜ ସେନାପତି କର୍ଣ୍ଣେଲ ମନ୍‌ରୋଙ୍କୁ ବିବ୍ରତ ବିସ୍ମିତ କରି ତାଙ୍କ ଅଧୀନରେ ଥିବା ସୈନ୍ୟବାହିନୀ ହଠାତ୍ ବିଦ୍ରୋହ ଘୋଷଣା କଲେ ଏବଂ ମୀରକାଶିମ୍‌ଙ୍କ ସୈନ୍ୟବାହିନୀରେ ଯୋଗ ଦେଇଦେଲେ । ଏହା ଫଳରେ ଯୁଦ୍ଧର ଗତି ସମ୍ପୂର୍ଣ୍ଣ ବଦଳି ଯାଇଥିଲା ଏବଂ ଇଂରେଜମାନେ ପଛଘୁଞ୍ଚା ଦେବାକୁ ଆରମ୍ଭ କରିଥିଲେ । ଦୁର୍ଭାଗ୍ୟର କଥା କଲିକତାରେ ଥିବା ଇଂରେଜ ସେନା ଛାଉଣୀରୁ ଅଧିକ ସୈନ୍ୟ ଯୋଗ ଦେବାରୁ ଯୁଦ୍ଧ ପୁଣି ଇଂରେଜମାନଙ୍କ ସପକ୍ଷରେ ଗଡିକଲା ଏବଂ ଶେଷ ସୁଦ୍ଧା ମିଳିତ ଭାରତୀୟ ଶକ୍ତି ପରାଜିତ ହେଲା । ବିଜୟର ଅହଂକାରରେ ସ୍ଫୀତ କର୍ଣ୍ଣେଲ୍ ମନରୋ ସାମରିକ ଅଦାଲତରେ ୨୪ ଜଣ ବିଦ୍ରୋହୀ ସୈନ୍ୟଙ୍କୁ ଗୁଳିରେ ଉଡ଼ାଇ ଦେଇଥିଲେ । ସୈନ୍ୟ ବାହିନୀର ବିଦ୍ରୋହ ଇତିହାସରେ ସେହି ଚବିଶ ଜଣ ହେଉଛନ୍ତି ସୈନ୍ୟ ବିଦ୍ରୋହର ପ୍ରଥମ ସହିଦବୃନ୍ଦ ।

ସୈନ୍ୟବାହିନୀର ସେହି ପ୍ରଥମ ବିଦ୍ରୋହରେ ଆତଙ୍କିତ ହୋଇ ସରକାରୀ କର୍ତ୍ତାମାନେ ଏଭଳି ସତର୍କତା ଅବଲମ୍ବନ କଲେ ଓ ସାମାନ୍ୟ ବିଦ୍ରୋହର ସୂଚନା ପାଇବା ସଙ୍ଗେ ସଙ୍ଗେ ତାହା ବିରୁଦ୍ଧରେ ଏଭଳି କଠୋର ପଦକ୍ଷେପ ଗ୍ରହଣ କଲେ ଯେ ପ୍ରାୟ ଚାଳିଶି ବର୍ଷ ପର୍ଯ୍ୟନ୍ତ ସୈନ୍ୟବାହିନୀ ବିରୁଦ୍ଧରେ କୌଣସି ପ୍ରକାଶ୍ୟ ବିଦ୍ରୋହ ଆଉ ସମ୍ଭବ ହେଲାନାହିଁ । ଦକ୍ଷିଣ ଭାରତରେ ବ୍ରିଟିଶ୍ ଶାସନ ପ୍ରତିଷ୍ଠାର ଉଦ୍ୟମବେଳେ ମହୀଶୁରରେ ଇସ୍‌ଲାମ୍ ଧର୍ମାବଲମ୍ବୀ ଶାସକମାନଙ୍କର ବ୍ରିଟିଶ୍ ବିରୁଦ୍ଧରେ ଅବିଶ୍ରାନ୍ତ ସଂଗ୍ରାମ ଭାରତ ଇତିହାସରେ ଯେପରି ଏକ ସ୍ମରଣୀୟ ଘଟଣା, ସେହି ମୁସଲମାନ ନବାବମାନଙ୍କର ଅନ୍ୟ ଧର୍ମପ୍ରତି ଉଦାର ଭାତୃଭାବ ଓ ବନ୍ଧୁତ୍ୱ ତତୋଧିକ ଉଲ୍ଲେଖଯୋଗ୍ୟ । ତା' ଅପେକ୍ଷା ଆହୁରି ଏକ ପ୍ରଣିଧାନ ଯୋଗ୍ୟ ଘଟଣା ହେଉଛି ଏହା ଯେ ଜଣେ ଦେଶପ୍ରେମୀ ଭାରତୀୟ ମୁସ୍ଲିମ୍‌କୁ ପରାଜିତ କରି ବିଜିତ ରାଜ୍ୟକୁ ଏକ ବିଦେଶୀ ଶାସକ ମାନଙ୍କ ହାତକୁ ଟେକି ଦେବା ଭଳି ଦେଶ ଦ୍ରୋହୀ କାର୍ଯ୍ୟଟି ଯେଉଁମାନେ

କଲେ ସେମାନେ କେଉଁ ଧର୍ମର ଥିଲେ ? ମରହଟ୍ଟା, ନିଜାମ ଓ ଇଂରେଜ ଅର୍ଥାତ୍ ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟିୟାନ୍ । ତଥାପି ସେହିମାନଙ୍କ ମିଳିତ ଆକ୍ରମଣକୁ ପରାଭୂତ କରି ହାଇଦର ଅଲ୍ଲୀ ପ୍ରଥମ ମହୀଶୁର ଯୁଦ୍ଧରେ ବିଜୟଶ୍ରୀ ମଣ୍ଡିତ ହେଲେ ମଧ୍ୟ ପୁଣି ୨ୟ ମହୀଶୁର ଯୁଦ୍ଧରେ ମୃତ୍ୟୁ ବରଣ କଲେ । ସେହିଭଳି ହାଇଦରଙ୍କ ପୁତ୍ର ଟିପୁ ସୁଲତାନ ମଧ୍ୟ ସେହି ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟିୟାନ୍ ଶାସକଦ୍ୱନ୍ଦ୍ୱ ଯଥା:- ମରହଟ୍ଟା, ନିଜାମ ଓ ଇଂରେଜମାନଙ୍କ ମିଳିତ ସୈନ୍ୟଦଳଙ୍କ ଦ୍ୱାରା ୩ୟ ମହୀଶୁର ଯୁଦ୍ଧରେ ପରାସ୍ତ ହେଲେ । ମରହଟ୍ଟା ହିନ୍ଦୁରାଜାମାନଙ୍କ ସାହାଯ୍ୟରେ ଇଂରେଜମାନଙ୍କ ଦ୍ୱାରା ସେ ବାରମ୍ବାର ପରାଜୟ ବରଣ କରିଥିଲେ ସୁଦ୍ଧା ଟିପୁଙ୍କ ମନରେ ସାମାନ୍ୟତମ ହିନ୍ଦୁ ବିଦ୍ୱେଷ ଭାବ ଯେ ସୃଷ୍ଟି ହୋଇ ନଥିଲା ତାହାହିଁ ଭାରତର ସମନ୍ୱିତ ସଂସ୍କୃତିର କୃତିତ୍ୱ ଭାବେ ପରିଗଣିତ ହୁଏ । ତାଙ୍କ ଶାସନର ଦୁଇଜଣ ମୁଖ୍ୟ ସ୍ତମ୍ଭ ଯଥା- ପ୍ରଧାନମନ୍ତ୍ରୀ ଓ ପ୍ରଧାନ ସେନାପତି ଭଳି ଦୁଇଟି ଯାକ ଗୁରୁତ୍ୱପୂର୍ଣ୍ଣ ପଦବୀରେ ନିଯୁକ୍ତ ହୋଇଥିଲେ– ଯଥାକ୍ରମେ ପୂର୍ଣ୍ଣିଆ ଓ କୃଷ୍ଣରାଓ ନାମକ ଦୁଇଜଣ ନୈଷ୍ଠିକ ବ୍ରାହ୍ମଣ । ମହୀଶୁରରେ ଛଅଷଠିଟି ହିନ୍ଦୁ ମନ୍ଦିରକୁ ଟିପୁ ସୁଲତାନ ଯେ କେବଳ ବାର୍ଷିକ ଆର୍ଥିକ ସାହାଯ୍ୟ ଦେଉଥିଲେ ସେତିକି ନୁହେଁ, ଏ ସମ୍ପର୍କରେ ଶୃଙ୍ଗେରୀ ମଠର ଶଙ୍କରାଚାର୍ଯ୍ୟଙ୍କ ସହ ତାଙ୍କର ନିୟମିତ ପତ୍ରାଳାପ ହେଉଥିଲା (ଏଭଳି ତିରିଶି ଗୋଟି ଚିଠି ମହୀଶୁର ଗେଜେଟିୟରରେ ଏକଦା ପ୍ରକାଶିତ ହୋଇଥିଲା) ଏବଂ ଶ୍ରୀରଙ୍ଗପଟମ୍ ଦୁର୍ଗ ମଧ୍ୟରେ ପ୍ରତିଷ୍ଠିତ ରଙ୍ଗନାଥ ମହାପ୍ରଭୁଙ୍କୁ ସେ ଦୈନିକ ପ୍ରାତଃ ଭୋଜନ ପୂର୍ବରୁ ପ୍ରଣାମ ଜଣାଇବାକୁ ଯାଉଥିଲେ । ଏହି ଐତିହାସିକ ଘଟଣାବଳୀ ସଂଘଟିତ ହେବାର ଦୁଇଶହ ବର୍ଷ ପରେ ମରହଟ୍ଟା ହିନ୍ଦୁମାନଙ୍କର ପ୍ରକୃତ ଉତ୍ତରାଧିକାରୀ ବୋଲି ଦାବୀ କରୁଥିବା ମହାରାଷ୍ଟ୍ରର ଏକ ସ୍ଥାନୀୟ ଦଳ ସାମ୍ପ୍ରଦାୟିକ ବିଦ୍ୱେଷ ସୃଷ୍ଟି ଉଦ୍ଦେଶ୍ୟରେ ଯେତେବେଳେ ପ୍ରଚାର କଲା ଯେ "ଟିପୁ ସୁଲତାନ ଏତେ ହିନ୍ଦୁ ବିଦ୍ୱେଷୀ ଥିଲେ ଯେ ତାଙ୍କର ଅତ୍ୟାଚାରରେ ଅତିଷ୍ଠ ହୋଇ ତିନି ହଜାର ବାହ୍ମଣ ଧର୍ମାନ୍ତର ଭୟରେ ଆତ୍ମହତ୍ୟା କଲେ । ଏହାକୁ କିଏ କାହିଁକି ବିଶ୍ୱାସ କରିଥାନ୍ତା ?

ପ୍ରଶାସନ କ୍ଷେତ୍ରରେ ଧର୍ମୀୟ ଉଦାର ଭାବ ଥିଲା ଟିପୁ ସୁଲତାନଙ୍କ ଚରିତ୍ରର ଏକ ଉଲ୍ଲେଖ୍ୟ ଯୋଗ୍ୟ ବିଶେଷତ୍ୱ । ସୁତରାଂ ତାଙ୍କର ସୈନ୍ୟ ବାହିନୀରେ ଥିବା ବିଭିନ୍ନ ଧର୍ମାବଲମ୍ବୀ ସୈନିକଗଣ ସ୍ୱ ସ୍ୱ ଧର୍ମପାଳନ କରିବାର ମୁକ୍ତ ସ୍ୱାଧୀନତା ଉପଭୋଗ କରିବା ଥିଲା ଅତିଶୟ ସ୍ୱାଭାବିକ । କିନ୍ତୁ ଟିପୁଙ୍କର ପରାଜୟ ଓ ମୃତ୍ୟୁ ପରେ ଦକ୍ଷିଣ ଭାରତର ମହୀଶୁର ବ୍ରିଟିଶ ଶାସନାଧୀନ ହେବା ସଙ୍ଗେ ସଙ୍ଗେ ସେମାନେ ଶୃଙ୍ଖଳା ପ୍ରୟୋଗ ନାମରେ ସୈନିକ ମାନଙ୍କର ଧର୍ମାଚରଣରେ ହସ୍ତକ୍ଷେପ କରିବା ଫଳରେ ସେମାନଙ୍କ ମଧ୍ୟରେ ପ୍ରବଳ ପ୍ରତିକ୍ରିୟା ଓ ଅସନ୍ତୋଷ ସୃଷ୍ଟି ହୋଇଥିଲା । ମୁସଲମାନ ସୈନ୍ୟ ଦାଢ଼ି ରଖି ପାରିବେ ନାହିଁ, ହିନ୍ଦୁ ସୈନ୍ୟ ଚିତାକାଟି ପାରିବେ ନାହିଁ କିମ୍ବା ସିନ୍ଦୁର ଟୋପା ଲଗାଇ ପାରିବେ ନାହିଁ । ପଗଡ଼ି ବା ଟୋପି ବଦଳରେ ସମସ୍ତଙ୍କୁ ଚମଡ଼ା ତିଆରି ହେଲମେଟ୍ ଲଗାଇବାକୁ ହେବ ପ୍ରଭୃତି ନିୟମ ଲାଗୁ ହେବାରୁ ଏହା ବିରୁଦ୍ଧରେ ପ୍ରବଳ ପ୍ରତିକ୍ରିୟା ସୃଷ୍ଟି ହେଲା । ସର୍ବୋପରି

ହେଲ୍‌ମେଟ୍ ବା ଟୋପି ଗୋରୁ ବା ଘୁଷୁରୀ ଚମଡ଼ାରେ ତିଆରି ହେଉଥିଲା । ତେଣୁ ଏହା ହିନ୍ଦୁ ଓ ମୁସଲମାନମାନଙ୍କର ଧର୍ମ ନଷ୍ଟ କରିବାକୁ ଉଦ୍ଦିଷ୍ଟ ବୋଲି ହିନ୍ଦୁ-ମୁସଲମାନ ସୈନ୍ୟଙ୍କ ମଧ୍ୟରେ ସନ୍ଦେହ ସୃଷ୍ଟି କରିବା ସ୍ୱାଭାବିକ ଥିଲା । ସେହି ଅସନ୍ତୋଷ ସାଙ୍ଗକୁ ଭାରତୀୟ ସାମରିକ ଅଁଫିସରମାନଙ୍କ ପ୍ରତି ଗୋରା ଅଫିସରମାନଙ୍କ ଭିତରେ ତୀବ୍ର ଅସନ୍ତୋଷ ସୃଷ୍ଟି କରିଥିଲା । ବିଦ୍ରୋହ ପାଇଁ ଏକ ଅନୁକୂଳ ପରିବେଶ କ୍ରମେ ଦାନା ବାନ୍ଧି ଆସୁଥିଲା ।

ସେତେବେଳକୁ ମହାନ୍ ଦେଶଭକ୍ତ ଟିପୁ ସୁଲତାନଙ୍କ ବିୟୋଗ ପରେ ତାଙ୍କର ପୁତ୍ରଗଣ ବ୍ରିଟିଶ୍ ଶାସକମାନଙ୍କର କଟାକ୍ଷର ପାତ୍ର ହୋଇଥାନ୍ତି ଏବଂ ଭେଲୋର ଦୁର୍ଗରେ ନଜର ବନ୍ଦୀ ଭାବରେ ରହିଥାନ୍ତି । ଜାତି ଧର୍ମ ନିର୍ବିଶେଷରେ ଭାରତୀୟ ସୈନ୍ୟମାନଙ୍କର ଟିପୁ ସୁଲତାନଙ୍କ ପ୍ରତି ଯେଉଁ ପ୍ରଗାଢ଼ ବିଶ୍ୱାସ ବା ଶ୍ରଦ୍ଧା ରହିଥିଲା, ତାଙ୍କ ପୁତ୍ରମାନଙ୍କ ପ୍ରତି ମଧ୍ୟ ତାହା ହ୍ରାସ ପ୍ରାପ୍ତ ହୋଇନଥିଲା । ବରଂ ଟିପୁ-ସନ୍ତାନମାନଙ୍କର ପରାଧୀନତା ସୈନ୍ୟବାହିନୀ ଭିତରେ ଇଂରେଜ ବିରୋଧୀ ବିଦ୍ରୋହ ସୃଷ୍ଟିର ଏକ ତାତ୍‌କାଳୀକ କାରଣ ଭାବରେ ପରିଗଣିତ ହୁଏ । ୧୮୦୬ ମସିହା ମଇମାସରେ ଏକ ବାଟାଲିଆନ୍ ସୈନ୍ୟ ବିଦ୍ରୋହ କରିଥିଲେ । କିନ୍ତୁ ଇଂରେଜମାନେ ଅତି ନିଷ୍ଠୁର ଭାବରେ ତାହା ଦମନ କରିଦେବାକୁ ସମର୍ଥ ହୋଇଥିଲେ । କିଛିଦିନ ପାଇଁ ବିଦ୍ରୋହୀମାନେ ନୀରବେ ରହିଲେ ସୁଦ୍ଧା ସେହି ବର୍ଷ ଜୁଲାଇ ମାସ ୧୦ ତାରିଖରେ ଅର୍ଦ୍ଧରାତ୍ରୀରେ ହଠାତ୍ ବିଦ୍ରୋହ ଘୋଷଣା କରି ସେମାନଙ୍କର ଗୋରା ଅଫିସର ଓ ସୈନ୍ୟମାନଙ୍କୁ ଆଖିବୁଜା ହତ୍ୟା କରିବାକୁ ଆରମ୍ଭ କରିଦେଲେ । ''ଦୀନ, ଦୀନ, (Din Din) ବୋଲି ଧ୍ୱନି ଦେଇ ସେମାନେ ଦୁର୍ଗ ପ୍ରାଚୀରରେ ୟୁନିୟନ୍ ଜାକ୍ ପତାକାକୁ (ଇଂରେଜମାନଙ୍କ ପତାକା) ଓହ୍ଲାଇ ଦେଇ ମହୀଶୁର ରାଜ ଦରବାରର ଲକ୍ଷ୍ମୀମାନସିଂହ ଚିତ୍ର ଥିବା ପତାକାକୁ ଉଡ଼ାଇଲେ । ନିର୍ବିଚାର ହତ୍ୟାକାଣ୍ଡରେ ବହୁ ସଂଖ୍ୟକ ଇଂରେଜ ଅଫିସର ଓ ତାଙ୍କର ସୈନ୍ୟମାନେ ନିହତ ହେବାରୁ ବିଦ୍ରୋହୀ ସୈନ୍ୟମାନେ ବିଜୟ ଉଲ୍ଲାସରେ ଉନ୍ମତ୍ତ ହୋଇ ବିଶୃଙ୍ଖଳିତ ହୋଇଗଲେ । ଭେଲୋର ବିଦ୍ରୋହ ସଂବାଦ ଆର୍କଟରେ ପହଞ୍ଚିବା କ୍ଷଣି ଗିଲେସ୍‌ପି ନାମକ କମାଣ୍ଡର ଅଧିନରେ ବହୁ ସଂଖ୍ୟକ ଗୋରା ଓ କଳା ସୈନ୍ୟ ସେଠାକୁ ପଠାଗଲେ । ସେମାନେ ଭେଲୋର ଦୁର୍ଗ ଦ୍ୱାର ଭାଙ୍ଗି ବା ପ୍ରାଚୀରକୁ ଅତିକ୍ରମ କରି ବିଶୃଙ୍ଖଳିତ ବିଦ୍ରୋହୀ ସୈନ୍ୟମାନଙ୍କୁ ନିର୍ବିଚାରରେ ହତ୍ୟା କରି ସେହି ବିଦ୍ରୋହକୁ ଦମନ କରିବାକୁ ସମର୍ଥ ହେଲେ ।

ଭେଲୋର ବିଦ୍ରୋହର ଅଳ୍ପ ଦିନ ଭିତରେ ୧୮୨୪ ଖ୍ରୀଷ୍ଟାବ୍ଦରେ ସେନା ବିଦ୍ରୋହର ଆଉ ଏକ ବିଗୁଲ ବାଜିଲା ବଙ୍ଗଳାରେ ଅବସ୍ଥାପିତ ୪୭ ନମ୍ବର ରେଜିମେଣ୍ଟରେ । ଏକେତ ଭାରତୀୟ ସେନାପତିମାନଙ୍କ ଅପେକ୍ଷା ଇଂରେଜ ସେନାଧକ୍ଷ ମାନଙ୍କ ନିକଟରେ ଅଧିକରୁ ଅଧିକ କ୍ଷମତା ଓ ଅଧିକାର କେନ୍ଦ୍ରିଭୂତ ହେଉଥିବାରୁ ସେନାପତି ଓ ସୈନ୍ୟଙ୍କ ଭିତରେ ଦୂରତା ବୃଦ୍ଧି ପାଉଥିଲା । ସେଥିରେ ପୁଣି ବ୍ରହ୍ମଦେଶକୁ ଅଧିକାର କରିବା ପାଇଁ ଭାରତୀୟ ସୈନ୍ୟମାନଙ୍କୁ ଆଦେଶ ଦିଆଯିବାରୁ ଅବସ୍ଥା ଅଧିକ ଜଟିଳ ହୋଇପଡ଼ିଲା । ଏକେତ ବ୍ରହ୍ମଦେଶକୁ ଯିବାପାଇଁ

କୌଣସି ଜାହାଜର ବନ୍ଦୋବସ୍ତ କରାଯାଇନଥିଲା । ନିଜ ନିଜର ଓଜନଦାର ଜିନିଷ ପତ୍ର ଧରି ସ୍ଥଳ ପଥରେ ଦୁର୍ଗମ ବଣ ଜଙ୍ଗଲ ଅତିକ୍ରମ କରି ବହୁବାଟ ଯିବା ପରେ ଯାଇ ସମୁଦ୍ର ଅତିକ୍ରମ କରିବାର ବ୍ୟବସ୍ଥା କରାଯାଇଥିଲା । ଭାରତୀୟ ସୈନ୍ୟ ମାନଙ୍କର ଦାବୀ ଥିଲା ଯେ ସେମାନେ ସମସ୍ତ ପ୍ରକାର କ୍ଲେଶ ବରଣ କରିବାକୁ ପ୍ରସ୍ତୁତ ହେବେ ଗୋଟିଏ ମାତ୍ର ସର୍ତ୍ତରେ । ସେ ସର୍ତ୍ତଟି ହେଉଛି ସେମାନଙ୍କର ବେତନକୁ ଅନ୍ୟୁନ ଦୁଇଗୁଣ କରିବାକୁ ପଡ଼ିବ । ନଚେତ୍ ଏକ ଦରିଆ ପାରି ଦେଶକୁ ବ୍ରିଟିଶ ଶାସନାଧୀନକୁ ଆଣିବାରେ ସେମାନଙ୍କର ଲାଭ କଣ ? ଅତି ଶସ୍ତାରେ ରାଜ୍ୟ ପରେ ରାଜ୍ୟ ଅଧିକାର କରୁଥିବା ଇଂରେଜମାନେ ଭାରତୀୟ ସୈନ୍ୟମାନଙ୍କର ସେହି ଅତିଶୟ ନ୍ୟାଯ୍ୟ ଦାବୀକୁ ମଧ ମାନିନେବାକୁ ପ୍ରସ୍ତୁତ ନଥିଲେ । ବ୍ରହ୍ମଦେଶର ଏକ ପ୍ରତିକୂଳ ଜଳବାୟୁ, ଅଜ୍ଞାତ ଭାଷା, ସମ୍ପ୍ରଦାୟ ଓ ଜାତି ସହ ଚଳିବାକୁ ସୈନ୍ୟମାନେ ଅଶ୍ୱସ୍ତିକର ମନେ କରୁଥିଲେ । ତେଣୁ ସୈନ୍ୟବାହିନୀ ମଧରେ ବ୍ରହ୍ମଦେଶ ଯୁଦ୍ଧ ବିରୁଦ୍ଧରେ ତୀବ୍ର ଅଶାନ୍ତି ଓ ଅସନ୍ତୋଷ ସୃଷ୍ଟି ହୋଇଥିଲା । କିନ୍ତୁ ଅହଙ୍କାରୀ ବିଦେଶୀ ଶାସକମାନେ ଚରମ ନୃଶଂସତା ସହକାରେ ସେହି ବିଦ୍ରୋହକୁ ପ୍ରଶମିତ କରିବାକୁ ଶ୍ରେୟସ୍କର ମନେ କଲେ । ବାରାକ୍ ପୁରରେ ଅବସ୍ଥାପିତ ୪୭ ନମ୍ବର ନେଟିଭ୍ ଇନ୍ ଫ୍ରାଣ୍ଟି ମୁଖ୍ୟ କମାଣ୍ଡର ଏକ ୟୁରୋପୀୟ ସୈନ୍ୟଦଳ ସହ ପ୍ୟାରେଡ୍ ପଡ଼ିଆରେ ପହଞ୍ଚି ବିଦ୍ରୋହୀ ସେନ୍ୟଙ୍କୁ ମାର୍ଚ୍ଚିଂ କରିବାକୁ ନଚେତ୍ ଅସ୍ତ୍ର ଶସ୍ତ୍ର ସମର୍ପଣ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ବିଦ୍ରୋହୀ ସୈନ୍ୟମାନେ ସେହି ନିର୍ଦ୍ଦେଶକୁ ଅବମାନନା କଲେ । ଫଳରେ ସେମାନଙ୍କ ଉପରକୁ ଆଖିବୁଜା ଗୁଳିଚାଳନା କରାଗଲା । ବହୁ ସଂଖ୍ୟାରେ ବିଦ୍ରୋହୀ ସୈନ୍ୟ ପ୍ରାଣତ୍ୟାଗ କଲେ । ଯେଉଁମାନେ କମାଣ ମୁହଁରୁ ବର୍ତ୍ତିଗଲେ ସେମାନଙ୍କୁ କୋର୍ଟ ମାର୍ଶାଲ୍‌ରେ ଚରମ ନିର୍ଯ୍ୟାତନା ଦିଆ ଗଲା ନଚେତ୍ ଫାଶୀ ଖୁଣ୍ଟରେ ଝୁଲାଇ ଦିଆଗଲା ।

ଦେଶପ୍ରେମୀ ସେହି ବିଦ୍ରୋହୀ ସୈନ୍ୟଙ୍କ ପ୍ରତି ହୋଇଥିବା ନିର୍ମମ ଅତ୍ୟାଚାରର ପ୍ରଭାବ ଅନ୍ୟାନ୍ୟ ବେଙ୍ଗଲ ଆର୍ମି ଉପରେ ପଡ଼ିଲା । ପ୍ରଥମ ଆଫଗାନ ଯୁଦ୍ଧରେ ଇଂରେଜମାନଙ୍କର ବିପର୍ଯ୍ୟୟ ସୈନ୍ୟବାହିନୀ ଉପରେ ଖରାପ ପ୍ରଭାବ ପକାଇଥିଲା ଏବଂ ବିଦେଶୀ ଶାସନର ମାନସମ୍ମାନ ହୋଇଥିଲା ବିପର୍ଯ୍ୟସ୍ତ । ଠିକ୍ ସେହି ସମୟରେ ସିନ୍ଧୁ ପ୍ରଦେଶର ଅମୀରଙ୍କ ବିରୁଦ୍ଧରେ ହୋଇଥିବା ଯୁଦ୍ଧର ମଧ ପରିସମାପ୍ତି ଘଟିଥିଲା । କିନ୍ତୁ ବିଦେଶୀ ଶୋଷକମାନଙ୍କର ଏକ ଚରମ ସୁବିଧାବାଦୀ ନୀତି ସିନ୍ଧୁ ବିଜୟର ଆନନ୍ଦ ଉଲ୍ଲାସ ଉପରେ ସୃଷ୍ଟି କରିଥିଲା ବ୍ୟାପକ ବିରକ୍ତି ଓ ବିକ୍ଷୋଭ । ଇଂରେଜମାନେ ଯେଉଁ ସ୍ୱାଧୀନ ରାଷ୍ଟ୍ର ବା ରାଜ୍ୟ ଗୁଡ଼ିକ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରୁଥିଲେ , ସେଗୁଡ଼ିକ ବିଦେଶୀ ରାଷ୍ଟ୍ର ହୋଇଥିବାରୁ ସେଠାକୁ ଲଢ଼ିବାକୁ ଯାଉଥିବା ଭାରତୀୟ ସୈନ୍ୟମାନଙ୍କୁ ଯୁଦ୍ଧ ଅଭିଯାନରେ ଉତ୍ସାହିତ କରିବା ପାଇଁ ସେମାନଙ୍କୁ ସ୍ୱତନ୍ତ୍ର ବିଦେଶୀ ଭତ୍ତା ଦିଆଯାଉଥିଲା । କିନ୍ତୁ ଉପରୋକ୍ତ ରାଷ୍ଟ୍ରଟି ଯୁଦ୍ଧରେ ପରାଜିତ ହୋଇ ବ୍ରିଟିଶ୍ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହେବା ସଙ୍ଗେ ସଙ୍ଗେ ତାହାର 'ବିଦେଶୀ ରାଷ୍ଟ୍ର' ସଂଜ୍ଞାଟି ଆପଣା ଛାଏଁ ଲୋପ ପାଇଯାଉଥିଲା । ଫଳରେ ବିଦେଶୀ ଭତ୍ତା

ମଧ ବନ୍ଦ ହୋଇ ଯାଉଥିଲା । ଭାରତର ସୁଦୂର ଗାଁ ଗହଳକୁ ଯାଇ ହଜାର ହଜାର ମାଇଲ ଦୂରରେ ପ୍ରତିକୂଳ ପରିସ୍ଥିତିରେ ଲଢୁଥିବା ଭାରତୀୟ ସୈନ୍ୟମାନଙ୍କ ପକ୍ଷରେ ବିଦେଶୀ ଭତ୍ତା କାଟ୍ ଖୁବ୍ ବାଧୁଥିଲା । ସିନ୍ଧୁ ପ୍ରଦେଶ ଜୟ ପରେ ତାହା ବ୍ରିଟିଶ୍ ସାମ୍ରାଜ୍ୟରେ ଅନ୍ତର୍ଭୁକ୍ତ ହେବାରୁ ତାହା ଆଉ ବିଦେଶ ବୋଲି ଗଣ୍ୟ ହେଲା ନାହିଁ । ତେଣୁ ସେଠାରେ ଅବସ୍ଥାପିତ ଭାରତୀୟ ସୈନ୍ୟମାନଙ୍କୁ ଆଉ ବିଦେଶୀ ଭତ୍ତା ଦିଆଗଲା ନାହିଁ । ସାମ୍ରାଜ୍ୟ ବାଦୀ ଶୋଷଣ ଓ ପ୍ରତାରଣାର ଏହା ଜ୍ୱଳନ୍ତ ଦୃଷ୍ଟାନ୍ତ ଭାବରେ ପ୍ରତିଭାତ ହେଲା ।

୧୮୪୪ ଖ୍ରୀଷ୍ଟାବ୍ଦରେ ଫିରୋଜପୁର ଠାରେ ଅବସ୍ଥାପିତ ୩୪ ନମ୍ବର ରେଜିମେଣ୍ଟ, ୭ମ ବେଙ୍ଗଲ କାଉଲାରୀ ଓ ୬୪ ନମ୍ବର ରେଜିମେଣ୍ଟ ସିନ୍ଧୁପ୍ରଦେଶ ଅଭିମୁଖେ ମାର୍ଚ୍ଚିଂ କରିବାକୁ ଅସ୍ୱୀକାର କରି ଦେଇ ବିଦ୍ରୋହ ଘୋଷଣା କଲେ । କିନ୍ତୁ ଇଂରେଜମାନେ ସେହି ବିଦ୍ରୋହକୁ ଗୋରା ସୈନ୍ୟମାନଙ୍କ ସାହାଯ୍ୟରେ କଠୋର ଭାବରେ ଦମନ କରିଦେଲେ । ୬୪ ନମ୍ବର ରେଜିମେଣ୍ଟକୁ ପୂରା ଭାଙ୍ଗି ଦିଆଗଲା ଏବଂ ସେଠାରେ ସିନ୍ଧୁ ବିଦ୍ରୋହ ଦମନ ହେବାର ଅଳ୍ପ ଦିନ ମଧରେ ପାଟନା ଠାରେ ବିଦ୍ରୋହର ନିଆଁ କୁହୁଳିବା ଆରମ୍ଭ କଲା । ସେଠାରେ ମୁସଲମାନ ଧର୍ମପ୍ରଚାରକ ମୌଲବୀ ଗଣ ମୁସଲମାନ ସୈନ୍ୟଙ୍କ ମଧରେ ବିଧର୍ମୀ ଇଂରେଜମାନଙ୍କ ବିରୁଦ୍ଧରେ ଧର୍ମଯୁଦ୍ଧ ବା ଜେହାଦ୍ କରିବାକୁ ପ୍ରବର୍ତ୍ତାଉଥିଲେ । ମୁସଲମାନ ସୈନ୍ୟମାନେ ଇଂରେଜ ସୈନ୍ୟବାହିନୀ ପରିତ୍ୟାଗ କରି ଚାଲି ଆସିଲେ ସେମାନଙ୍କୁ ଦିଲ୍ଲୀ ନବାବଙ୍କ ଅଧୀନରେ ନିଯୁକ୍ତି ଦିଆଯିବ ବୋଲି ମଧ ଗୋପନ ପ୍ରତିଶ୍ରୁତି ଦିଆଯାଇଥିଲା । ସେହି ସମୟରେ ଇଂରେଜମାନଙ୍କର ଆସନ୍ନ ପଞ୍ଜାବ ଯୁଦ୍ଧର ପ୍ରସ୍ତୁତି ପାଇଁ ପୂର୍ବାଞ୍ଚଳରୁ ସମସ୍ତ ସୈନ୍ୟମାନଙ୍କୁ ପ୍ରତ୍ୟାହାର କରିନେଇ ଉତ୍ତରାଞ୍ଚଳରେ ଏକତ୍ରିତ କରାଯାଇଥିଲା । କିନ୍ତୁ ଏହି ଗୁପ୍ତ ମନ୍ତ୍ରଣା ସମ୍ବାଦ ବ୍ରିଟିଶ୍ ସେନାଧକ୍ଷମାନଙ୍କ କାନକୁ ଆସିବା ସଙ୍ଗେ ସଙ୍ଗେ ସନ୍ଦିଗ୍ଧ ବିଦ୍ରୋହୀ ସୈନ୍ୟଙ୍କୁ କଠୋର ଭାବରେ ଦଣ୍ଡିତ କରାଗଲା । ବଙ୍ଗଳାର ଗଭର୍ଣ୍ଣର ଏକ ଘୋଷଣା ନାମାରେ ଦୃଢ଼ ଭାବରେ ଘୋଷଣା କଲେ ଯେ ସରକାର ପକ୍ଷରୁ କାହାରି ଧର୍ମ ଉପରେ କୌଣସି ପ୍ରକାର ହସ୍ତକ୍ଷେପ କରାଯିବ ନାହିଁ; ଯାହାହେଉ ଶେଷ ସୁଦ୍ଧା ପଞ୍ଜାବ ଇଂରେଜ ଶାସନାଧୀନକୁ ଆସିବା ଫଳରେ ସରକାରର ଇଜ୍ଜତ ବଞ୍ଚିଗଲା ବୋଲି ସୈନ୍ୟମାନଙ୍କ ଧାରଣା ହେଲା ।

କିନ୍ତୁ ବିଦେଶୀ ଶାସକମାନେ ଭୁଲିଯାଉଥିଲେ ଯେ ଭାରତୀୟ ସୈନ୍ୟମାନଙ୍କର ସେହି ସବୁ ବିକ୍ଷିପ୍ତ ସାମରିକ ବିଦ୍ରୋହକୁ ଶକ୍ତିଶାଳୀ ଆଧୁନିକ ଅସ୍ତ୍ରଶସ୍ତ୍ର ବଳରେ ସାମୟିକ ଭାବରେ ସିନା ଦବେଇ ଦିଆଯାଇ ପାରିବ କିନ୍ତୁ ବ୍ୟାପକ ସୈନ୍ୟ ବିଦ୍ରୋହକୁ ସ୍ତବ୍ଧ କରିବା ସହଜ ସାଧ ହେବନାହିଁ । କାରଣ ଯାହା ବିକ୍ଷିପ୍ତ ବିଦ୍ରୋହର ସାମାନ୍ୟ ଅଗ୍ନିକଣା ହୋଇ ଆତ୍ମପ୍ରକାଶ କରିବ, ତାହାହେବ ଆଗ୍ନେୟଗିରିରୁ ଉଦକ୍ଷିପ୍ତ ଉତ୍ତପ୍ତ ଲାଭାସ୍ରୋତରେ ପ୍ରଥମ ସ୍ଫୁଲିଙ୍ଗ ।

୧୮୫୭ର ସିପାହୀ ବିଦ୍ରୋହ ବା ମହାବିଦ୍ରୋହ ସେହି ଉତ୍ତପ୍ତ ଲାଭା ।



# ମହାବିଦ୍ରୋହ

ଭାରତର ସ୍ୱାଧୀନତା ଯୁଦ୍ଧ ୧୮୫୭ର ମହାବିଦ୍ରୋହ ବା ସିପାହୀ ବିଦ୍ରୋହରେ ହିଁ ପ୍ରକଟିତ ହୋଇଥିଲା । ଏହା ତତ୍‌କାଳୀନ ବ୍ରିଟିଶ୍ ପ୍ରଶାସକ, ଐତିହାସିକ ବ୍ରିଟିଶ୍ ପାର୍ଲିଆମେଣ୍ଟ ସଭ୍ୟ ଏପରିକି ଖ୍ରୀଷ୍ଟିୟାନ୍ ମିସନାରୀ ସଂସ୍ଥାର ମୁଖ୍ୟମାନେ ମଧ୍ୟ ମୁକ୍ତ କଣ୍ଠରେ ସ୍ୱୀକାର କରିଯାଇ ଅଛନ୍ତି । ଇଂଲାଣ୍ଡର ସାଂସଦ ଡିସ୍ରାଇଲଙ୍କ ଭାଷାରେ ''ଏହା କେବଳ ସିପାହୀମାନଙ୍କ ବିଦ୍ରୋହ ନଥିଲା, ଏହା ଯଥାର୍ଥରେ ଥିଲା ଏକ ଜାତୀୟ ବିଦ୍ରୋହ । ଜଷ୍ଟିନ ମ୍ୟାକଆର୍ଥିଙ୍କ ଭାଷାରେ ''ଇଂରେଜ ଶାସନ ବିରୋଧରେ ସିପାହୀମାନଙ୍କର ଅସନ୍ତୋଷ ଶାସନ ବିରୁଦ୍ଧରେ ଭାରତୀୟ ମାନଙ୍କର ଜାତୀୟ ଘୃଣା ଓ ଧର୍ମାନ୍ଧତାର ମିଶ୍ରଣ ଫଳରେ ଏହା ଘଟିଥିଲା ।''

ମିସନାରୀ ଆଲେକ୍‌ଜାଣ୍ଡାର ଡଫ୍ ଜନୈକ ଧର୍ମପ୍ରଚାରକ ଭାବେ ମହାବିଦ୍ରୋହରେ ହିନ୍ଦୁ ଓ ମୁସଲମାନ ମାନଙ୍କ ମଧ୍ୟରେ ସୃଷ୍ଟି ହୋଇଥିବା ଭାତୃତ୍ୱ ଦେଖି ବାସ୍ତବରେ ଆତଙ୍କିତ ହୋଇଯାଇଥିଲେ । ତାଙ୍କ ଭାଷାରେ ''Every fresh revealation prove more and more to confirm a rebellion which has been able to array the Hindus and Mohammadans in an unnatural Confederacy.''

(A. Duff The Indian Rebilion Page 247)

ଆରମ୍ଭରୁ ଏକ ସୀମିତ ସାମରିକ ବିଦ୍ରୋହ ଭଳି ମନେ ହେଉଥିଲେ ସୁଦ୍ଧା ଖୁବ୍ ଶୀଘ୍ର ତାହ ଏକ 'ଜାତୀୟ ବିଦ୍ରୋହ' (National Insurrection ) ରେ ପରିଣତ ହୋଇଥିଲା । ଐତିହାସିକ କେ ମାଲେସନ୍‌ଙ୍କ ଭାଷାରେ ''ସାହାବାଦ ଜଲାରେ ସଂଘଟିତ ସିପାହୀ ବିଦ୍ରୋହରେ ''ଜାତୀୟ ବିଦ୍ରୋହର ସମସ୍ତ ଲକ୍ଷଣ ପ୍ରକଟିତ ହୋଇଥିଲା'' (All the dignity of a national revolt.) ତତ୍ କାଳୀନ ଭାରତର ସର୍ବୋଚ୍ଚ ଶାସକ ଗଭର୍ଣ୍ଣର ଲର୍ଡ କ୍ୟାନିଂ ଅନୁଭବ କରିଥିଲେ ଯେ ମଣିଷ ହାତ ଆକାରର ଖଣ୍ଡେ ଛୋଟ ବାଦଲ ଭଳି ପ୍ରଥମରୁ ଦିଶୁଥିଲେ ମଧ୍ୟ କ୍ରମେ ଏହା ସାରା ଭାରତ ଆକାଶକୁ ଆଚ୍ଛାଦିତ କରିଦେଇ ସାରିଲାଣି ଏବଂ ଶେଷରେ ଏହା ଯେ ବ୍ରିଟିଶ୍ ଶାସନକୁ ଧ୍ୱଂସ ନ କରିବ, ଏହା କିଏ କହି ପାରିବ ? (...."may at last threation to burst and over-whelm us with ruin.") ।

ଭାରତର ନବ୍ୟ ଶାସକମାନଙ୍କ ଦ୍ୱାରା ମନୋନୀତ ଇତିହାସକାର ଡକ୍ଟର ତାରାଚାନ୍ଦଙ୍କ ଭାଷାରେ ''୧୮୫୭ ମଇମାସରେ ମୀରଟ ବିଦ୍ରୋହ ଆରମ୍ଭ ହୋଇ ସାରା ପ୍ରଦେଶକୁ

'ବିଦ୍ରୋହ' ଘୋଷଣା କରିବାକୁ ଆହ୍ୱାନ ଦେଲା । ଯେଉଁଠାରେ ସୈନ୍ୟମାନେ 'ବିଦ୍ରୋହ' ରେ ଯୋଗଦେଲେ, ଜନ ସଧାରଣ ସେମାନଙ୍କ ପଛରେ ଛିଡ଼ା ହେଲେ ଏବଂ ଯେଉଁଠାରେ ସୈନ୍ୟ ଛାଉଣୀ ନଥିଲା ସେଠାରେ ଲୋକେ ହିଁ ଆଗକୁ ବାହାରି ପଡ଼ିଲେ ।''

ଏହାହିଁ ତ ସର୍ବାତ୍ମକ ଗଣବିଦ୍ରୋହର ଲକ୍ଷଣ ।

ଅବଶ୍ୟ ବର୍ତ୍ତମାନର 'ସ୍ୱାଧୀନତା' ଶବ୍ଦର ପରିଭାଷାରେ ସିପାହୀ ବିଦ୍ରୋହ ବା ମହାବିଦ୍ରୋହକୁ କାଗଜିଆ ପଣ୍ଡିତମାନେ ସ୍ୱାଧୀନତା ସଂଗ୍ରାମ ଆଖ୍ୟା ଦେବେ କି ନା, ତାହା ଭିନ୍ନ କଥା ।

ବ୍ରିଟିଶ୍ ଶାସନର ମୂଳୋତ୍ପାଟନ ଜାତି, ଧର୍ମ ଓ ରାଜାପ୍ରଜା ନିର୍ବିଶେଷରେ ସମସ୍ତଙ୍କର ଏକମାତ୍ର ଲକ୍ଷ୍ୟ ଥିଲା, ଏଥିରେ କାହାର ଦ୍ୱିରୁକ୍ତି ନାହିଁ । ଯେଉଁ ଯୁଗରେ 'ଜାତୀୟତା' ଶବ୍ଦର ଚଳନି ହୋଇନଥିଲା,. ଭାରତ ଅସଂଖ୍ୟ 'ସ୍ୱାଧୀନ' ରାଜ୍ୟରେ ବିଭକ୍ତ ହୋଇଥିଲା ଏବଂ ସମଗ୍ର ଦେଶ ଗୋଟିଏ ରାଜନୈତିକ ଏକକ ରେ ପରିଣତ ହୋଇନଥିଲା, ସେତେବେଳେ 'ସ୍ୱାଧୀନତା'ର ଅର୍ଥ ଥିଲା 'ବ୍ରିଟିଶ୍ ଶାସନର ଅପସାରଣ' । ବ୍ରିଟିଶ୍ ଶାସନର ବିକଳ୍ପ ଯେ ଯେମିତି ବୁଝୁଥିଲା, ସେଥିରେ କାହାର କିଛି କହିବାର ନଥିଲା । ଅସ୍ତଗାମୀ ମୋଗଲଶାସନର ପୁନରାଗମନକୁ ବରଂ ଅଧିକ ଶ୍ଲାଘ୍ୟ ମନେ କରାଯାଉଥିଲା । କିନ୍ତୁ କେହି ବ୍ରିଟିଶ୍ ଶାସନକୁ ଆଉ ଅଧିକ ମୁହୂର୍ତ୍ତେ ସହ୍ୟ କରିବାକୁ ପ୍ରସ୍ତୁତ ନଥିଲେ ।

ଭାରତରେ ବ୍ରିଟିଶ ଶାସନର ଶହେବର୍ଷ ଭିତରେ ତାହା ବିରୁଦ୍ଧରେ ରାଜା, ଜମିଦାର ବା ଆଦିବାସୀ ପ୍ରଭୃତିଙ୍କର ଯେତେ ଖଣ୍ଡ ବିଦ୍ରୋହ ସଂଘଟିତ ହୋଇଥିଲା, ସେଥିପ୍ରତି ଭାରତର ସିପାହୀମାନେ କେବେ ହେଲେ ଯୋଗ ଦେଇ ନଥିଲେ । ବରଂ ସେମାନେ 'ପ୍ରଭୁ' ଇଂରେଜ ସେନାପତିଙ୍କ ନିର୍ଦ୍ଦେଶରେ ସେହି ବିଦ୍ରୋହକୁ ଦବେଇଦେବାରେ ସାହାଯ୍ୟ କରୁଥିଲେ । ସେହିପରି ବିକ୍ଷିପ୍ତ ସାମରିକ ବିଦ୍ରୋହ ପ୍ରତି ଜନ ସାଧାରଣ ସମ୍ପୂର୍ଣ୍ଣ ଉଦାସୀନ ରହୁଥିଲେ । କିନ୍ତୁ ସିପାହୀ ବିଦ୍ରୋହରେ ସିପାହୀମାନଙ୍କ ସହ ରାଜା, ଜମିଦାର ବା ନବାବ-ବେଗମ୍ ଓ ଜନସାଧାରଣ ମିଶିଯିବା ଫଳରେ ତଥାକଥିତ ''ସିପାହୀ ବିଦ୍ରୋହ ମହା ବିଦ୍ରୋହରେ ପରିଣତ ହୋଇଥିଲା ।

ତାହାର କାରଣ ଥିଲା ଅସଂଖ୍ୟ । ତାହାକୁ ମୁଖ୍ୟତଃ ଦୁଇଭାଗରେ ବିଭକ୍ତ କରାଯାଇପାରେ । ବିଦେଶୀ ଶାସକମାନଙ୍କର ଅମାନୁଷିକ ଶୋଷଣ ଶହେ ବର୍ଷ ଭିତରେ କୋଟି କୋଟି ଭାରତବାସୀଙ୍କର ଅର୍ଥନୀତିକ ଜୀବନକୁ ଯେମିତି ଉଚ୍ଛନ୍ନ କରିଦେଇଥିଲା, ଭାରତୀୟ ମାନଙ୍କର ପାରମ୍ପାରିକ ଧର୍ମୀୟ ଓ ସାମାଜିକ ଶୃଙ୍ଖଳାକୁ ମଧ କରିଦେଇଥିଲା ସମ୍ପୂର୍ଣ୍ଣ ବିପର୍ଯ୍ୟସ୍ତ । ଦେଶର ସେହି ସାମଗ୍ରିକ ପରିସ୍ଥିତିର ପ୍ରଭାବ ସ୍ୱାଭାବିକ ଭାବେ ସିପାହୀ ମାନଙ୍କୁ ମଧ ଆନ୍ଦୋଳିତ କରୁଥିଲା । ଏତଦ୍‌ବ୍ୟତୀତ ସିପାହୀ ମାନଙ୍କର ସ୍ୱତନ୍ତ୍ର ପେଶାଗତ ସମସ୍ୟା ଯଥା:- ଦରମା, ପଦୋନ୍ନତି, ଗୋରାସିପାହୀମାନଙ୍କ ତୁଚ୍ଛ ତାଚ୍ଛଲ୍ୟ ବ୍ୟବହାର ପ୍ରଭୃତି ରହିଥିଲା ।

ବିଦେଶୀ ଶାସନର ପ୍ରଥମ ପ୍ରହାର ପଡ଼ିଥିଲା ଜମି ଜମା ବ୍ୟବସ୍ଥା ଉପରେ । ପୂର୍ବରୁ ଜମିର ମାଲିକାନା ଅପେକ୍ଷା ଚାଷ କରିବା ଥିଲା, ମୁଖ୍ୟ ବିଚାର୍ଯ୍ୟ । ଚାଷୀ ତାହାର ଉତ୍ପନ୍ନ ଫସଲର ଅଂଶ ରଜାର କର୍ମଚାରୀକୁ ପଇଠ କରିଦେଲେ, ତାହାର ଆଉ ବିଶେଷ କିଛି ଝିଂଝଟ୍ ରହୁନଥିଲା । ମରହଟ୍ଟା ଓ ମୋଗଲ ଶାସନ ବେଳେ ଜମି ଜମା ବ୍ୟବସ୍ଥାର କୌଣସି ମୌଳିକ ପରିବର୍ତ୍ତନ ହୋଇନଥିଲା । ଯାହା ବା ହୋଇଥିଲା, ତାହା ସାଧାରଣ ଚାଷୀକୁ ବେଶୀ ବାଧୁନଥିଲା । କିନ୍ତୁ ବ୍ରିଟିଶ୍ ଶାସନ ସେହି ବ୍ୟବସ୍ଥାକୁ ପୁରା ଓଲଟ ପାଲଟ କରିଦେଲା । ହେଷ୍ଟିଙ୍ଗସ୍ ବିଶେଷତଃ କର୍ଣ୍ଣୱାଲିସ୍ ପ୍ରବର୍ତ୍ତିତ ଚିରସ୍ଥାୟୀ ବନ୍ଦୋବସ୍ତ ଓ ମଧ୍ୟସ୍ୱତ୍ୱାଧିକାର ବ୍ୟବସ୍ଥା ଓ କମ୍ପାନୀର କ୍ରମ ବର୍ଦ୍ଧମାନ ରାଜସ୍ୱ ଚାଷୀଙ୍କୁ ଚରମ ଦୁର୍ଦ୍ଦଶାରେ ନିକ୍ଷେପ କରିଦେଲା । ଜମି ସହ ସମ୍ବନ୍ଧିତ ପକ୍ଷ ଯଥା ଜମି ମାଲିକ ଓ ଚାଷୀ ଭିତରେ ରହିଥିବା ସମ୍ପର୍କ ବଦଳିଗଲା (The revolution in property relation is a fact of great consequences to the country- The History of Freedom Movement in India- Vol-II- Tarachand - page 40) ଧନୀ ଜମିଦାରମାନେ ଜମିକୁ ନିଜର ବ୍ୟକ୍ତିଗତ ସମ୍ପତ୍ତି ଭାବରେ ବିଚାର କରିବାରୁ ଜମିରୁ ସର୍ବୋଚ୍ଚ ଲାଭ ଉଠାଇବାକୁ ଲାଗିଲେ । ଜମି ହରାଉଥିବା ଚାଷୀ ନିକଟରେ ନିଜର ଶ୍ରମ ବ୍ୟତୀତ ଅନ୍ୟ କୌଣସି ସମ୍ପତ୍ତି ରହିଲା ନାହିଁ । ସେ ସମ୍ପର୍କରେ ସଦର ଦେୱାନୀ ଅଦାଲତରେ ଦାଖଲ ହୋଇଥିବା କ୍ୟାପ୍ଟେନ୍ ଉଇନ୍‌ଗେଟ୍‌ଙ୍କ ରିପୋର୍ଟରେ କୁହାଯାଇଥିଲା'' ଆମେ ପ୍ରବର୍ତ୍ତନ କରିଥିବା ରାଜସ୍ୱ ଆଇନ ଯୋଗୁଁ ପ୍ରବଳ ଜନ ଅସନ୍ତୋଷ ସୃଷ୍ଟି ହୋଇଛି । ଜମିଚ୍ୟୁତ ଚାଷୀ ଓ ଗ୍ରାମ୍ୟ ଶିଳ୍ପୀମାନେ ମଧ୍ୟ ଦାରିଦ୍ର୍ୟରେ ଜର୍ଜରିତ ହୋଇଗଲେ । କାର୍ଲମାର୍କ୍ସ ''The British Rule in India'' ରେ କହିଲେ ''In India it was the change in property relation which cansel the social revolution'' ବା ଭୂସମ୍ପତ୍ତିକୁ କେନ୍ଦ୍ର କରି ସୃଷ୍ଟି ହୋଇଥିବା ବିଭିନ୍ନ ଶ୍ରେଣୀର ପାରସ୍ପରିକ ସମ୍ବନ୍ଧର ପରିବର୍ତ୍ତନ ସାମାଜିକ ବିପ୍ଳବର କାରଣ ହେଲା ।

ବିଦେଶୀ ଶାସନ ଫଳରେ ଗ୍ରାମ୍ୟଶିଳ୍ପ କ୍ରମେ ସମ୍ପୂର୍ଣ୍ଣ ଲୋପ ପାଇଗଲା । ଅଷ୍ଟାଦଶ ଶତାବ୍ଦୀ ବା ଇଷ୍ଟ ଇଣ୍ଡିଆ କମ୍ପାନୀ ଶାସନର ପ୍ରଥମ ଅବସ୍ଥାରେ ଭାରତର ସୂକ୍ଷ୍ମ ବସ୍ତ୍ରଶିଳ୍ପ ଇଂଲାଣ୍ଡକୁ ରପ୍ତାନୀ ହେଉଥିଲା ଏପରିକି ତାହା ଅଭିଜାତ ବ୍ରିଟିଶ୍ ପରିବାରକୁ ପୁରା ଦଖଲ କରିଗଲା । ୧୮୧୮ରେ ସାର୍ ମନରୋ ହେଷ୍ଟିଙ୍ଗସ୍‌କୁ ଲେଖିଥିଲେ ଯେ ଭାରତୀୟ ବସ୍ତ୍ର ଇଂଲାଣ୍ଡ ବାସୀଙ୍କ ପାଇଁ ଅପରିହାର୍ଯ୍ୟ ହୋଇପଡ଼ିଲାଣି ।'' ଭାରତୀୟ ଶିଳ୍ପର ସେହି ଲୋକପ୍ରିୟତାରେ ଆତଙ୍କିତ ହୋଇ ଊନବିଂଶ ଶତାବ୍ଦୀରେ କମ୍ପାନୀ ସେହି ନୀତିକୁ ଓଲଟାଇ ଦେଲା । ଭାରତୀୟ ଚାଷୀକୁ ଅଧିକ କଞ୍ଚାମାଲ ଉତ୍ପନ୍ନ କରିବାକୁ ବାଧ କରାଗଲା ଏବଂ ଦେଶୀ ବସ୍ତ୍ର ପରିବର୍ତ୍ତେ ଫିନ୍ ଫିନ୍ ପତଳା ବିଲାତି ବସ୍ତ୍ର ଭାରତୀୟ ବଜାରକୁ ଦଖଲ କଲା । ନୀଳ ଚାଷୀମାନଙ୍କର ଦୁର୍ଦ୍ଦଶା ଏ ସମ୍ପର୍କରେ ଚିରସ୍ମରଣୀୟ । ସବୁଆଡୁ ଚାଷୀ ହିଁ ସର୍ବାଧିକ ଶୋଷିତ ହେଲା ।

ଭାରତୀୟମାନଙ୍କର ଧର୍ମୀୟ ବିଶ୍ୱାସ ଉପରେ ଖ୍ରୀଷ୍ଟିୟାନ୍ ମିସନାରୀମାନଙ୍କର ଔଦ୍ଧତ୍ୟ ଉଭୟ ହିନ୍ଦୁ ଓ ମୁସଲମାନ ସମ୍ପ୍ରଦାୟ ଭିତରେ ଚରମ ଅସନ୍ତୋଷ ସୃଷ୍ଟି କଲା । ନିମ୍ନଶ୍ରେଣୀର ଲୋକମାନଙ୍କର ଦାରିଦ୍ର୍ୟର ସୁଯୋଗ ନେଇ ସେମାନଙ୍କୁ କେବଳ ଧର୍ମାନ୍ତରୀତ କରାଯାଉନଥିଲା ସେଥିପାଇଁ ସେଠାରେ କମ୍ପାନୀର କର୍ମଚାରୀ ଓ ପୋଲିସ୍ ମଧ୍ୟ ଉପସ୍ଥିତ ରହୁଥିଲେ । ସାର୍ ସୟଦ୍ ଅହମ୍ମଦଙ୍କ ଭାଷାରେ ''ଲୋକେ କ୍ରମେ ବିଶ୍ୱାସ କଲେ ଯେ ସେହି ମିସନାରୀ ମାନେ କମ୍ପାନୀ ସରକାର ଦ୍ୱାରା ନିଯୁକ୍ତ ଓ ବେତନପ୍ରାପ୍ତ ।'' ତେଣୁ ମିସନାରୀମାନଙ୍କ ଉପରେ ସୃଷ୍ଟି ହେଉଥିବା କ୍ରୋଧ ସରକାର ଉପରେ ପଡୁଥିଲା । (The causes of Indian Mutiny- By Sir S. Ahamed) ଖ୍ରୀଷ୍ଟିୟାନ୍ ଧର୍ମପ୍ରଚାରକମାନେ ପର୍ତ୍ତୁଗିଜ୍ ମାନଙ୍କ ସହ ପଞ୍ଚଦଶ ଶତାବ୍ଦୀରେ ଭାରତକୁ ଆସିଥିଲେ ମଧ୍ୟ ହିନ୍ଦୁମୁସଲମାନଙ୍କ ମଧ୍ୟରେ ସେମାନଙ୍କ ପ୍ରତି କୌଣସି ବୈରତା ସୃଷ୍ଟି ହୋଇନଥିଲା । କ୍ରମେ ବାଇବେଲ ପାଠ କେବଳ ଗିର୍ଜା ଭିତରେ ସୀମାବଦ୍ଧ ନରହି ସ୍କୁଲ, ହସ୍ପିଟାଲ ଓ ଜେଲ ଭିତରେ ମଧ୍ୟ ବାଧ୍ୟତାମୂଳକ ହୋଇଗଲା । ବିଦେଶୀ ଶୋଷଣର ଫଳ ସ୍ୱରୂପ ଦେଶରେ ବାରମ୍ବାର ଯେଉଁ ଦୁର୍ଭିକ୍ଷ ହେଉଥିଲା, ସେଥିପାଇଁ ଅନ୍ନଛତ୍ର ଖୋଲି, ସେହି ସୁଯୋଗରେ ଗରିବ ଲୋକମାନଙ୍କୁ ଧର୍ମାନ୍ତରୀତ କରାଯାଉଥିଲା । Religion in danger became a common cry in the country side and in the spoy line, (ଧର୍ମ ବିପନ୍ନ ବୋଲି ଗାଁ ଗହଳରେ ଓ ସୈନ୍ୟ ଶିବିରରେ ଚିତ୍କାର ଶୁଭିଲା ।)

ସିପାହୀ ଅସନ୍ତୋଷର କାରଣ:

ଦେଶ ଭିତରେ ସାମଗ୍ରିକ ଭାବରେ ଯେଉଁ ଅଶାନ୍ତି ଓ ଅସନ୍ତୋଷର ବାତାବରଣ ସୃଷ୍ଟି ହୋଇଥିଲା, ତାହାର ସର୍ବାଧିକ ପ୍ରଭାବ ପଡୁଥିଲା ସୈନ୍ୟବାହିନୀ ଉପରେ । କାରଣ ସେମାନେ ସମାଜର ସର୍ବାଧିକ ତଳସ୍ତରରୁ ଆସିଥିଲେ ପେଟପାଟଣାର ତାଗିଦ୍‌ରେ । ବ୍ରିଟିଶ ଶାସକମାନଙ୍କ ଅଧୀନରେ ସିପାହୀ ଚାକିରୀର ମିଥ୍ୟା ମୋହ ସେମାନଙ୍କୁ ଆଚ୍ଛନ୍ନ କରିଥିଲେ ମଧ୍ୟ କ୍ରମେ ବାସ୍ତବ ଜୀବନର କଠିନ କୃଚ୍ଛ୍ରସାଧନା ସେହି ମୋହ ଭଙ୍ଗ କରିବାକୁ ଅଧିକ ସମୟ ଲାଗିଲା ନାହିଁ ।

ଭାରତୀୟ ସିପାହୀମାନଙ୍କର ବେତନଥିଲା ସର୍ବନିମ୍ନ । ଗୋରାସୈନ୍ୟମାନଙ୍କ ପାଇଁ ବେତନ ବାବଦ ଖର୍ଚ୍ଚ ଭାରତୀୟ ସୈନ୍ୟ ଅପେକ୍ଷା ବହୁଗୁଣ ଅଧିକ ହେଉଥିଲା । ଉଦାହରଣ ସ୍ୱରୂପ ମାତ୍ର ୫୧ ହଜାର ଗୋରାସୈନ୍ୟ ପାଉଥିଲେ ୫୬ ଲକ୍ଷ ପାଉଣ୍ଡ ଷ୍ଟର୍ଲିଂ (ଇଂଲଣ୍ଡ ମୁଦ୍ରା) । ସୈନ୍ୟବାହିନୀରମୋଟ ବେତନ ପରିମାଣ ୯୮ ଲକ୍ଷ ଟଙ୍କାରୁ ମାତ୍ର ୩୨ ଲକ୍ଷ ପାଉଣ୍ଡ ଷ୍ଟର୍ଲିଂ ବଣ୍ଟା ଯାଉଥିଲା ତିନିଲକ୍ଷ ୮୫ ହଜାର ଭାରତୀୟ ସିପାହୀମାନଙ୍କ ଭିତରେ ସେମାନଙ୍କର ବେତନ ବାବଦ । ଜଣେ ସିପାହୀର ବେତନ ଥିଲା ମାସିକ ମାତ୍ର ସାତଟଙ୍କା ।

'ବିଦ୍ରୋହୀ ବାଙ୍ଗାଲୀ'ର ଲେଖକ ଦୁର୍ଗା ଦାସ ବନ୍ଦୋପାଧ୍ୟାୟ ଉକ୍ତ ପୁସ୍ତକରେ ଲେଖିଅଛନ୍ତି ଯେ ସେହି ଦରମାରୁ ତାର ଖାଦ୍ୟପେୟ ଓ ପୋଷାକ ଖର୍ଚ୍ଚ କଟାଯାଇ ତାକୁ ମାସ ଶେଷରେ ଦିଆଯାଉଥିଲା ଏକଟଙ୍କା ବା ଦେଢ଼ଟଙ୍କା । ବେଳେ ବେଳେ କେତୋଟି ପଇସା ମାତ୍ର । ଏତଦ୍ ବ୍ୟତୀତ ଅନ୍ୟ ଉପାୟରେ ମଧ ଭାରତୀୟ ସିପାହୀମାନଙ୍କୁ ଶୋଷଣ କରାଯାଉଥିଲା । ଉଦାହରଣ ସ୍ୱରୂପ, ସେତେବେଳକୁ ଭାରତର ଯେଉଁ ସବୁ ରାଜ୍ୟ ତଥାପି ବ୍ରିଟିଶ୍ ଶାସନ ଅଧୀନକୁ ଆସି ନଥିଲା, ସେଠାକୁ ସୈନ୍ୟ ଅଭିଯାନ କରିବାକୁ ଯିବା ପୂର୍ବରୁ ସିପାହୀ ମାନଙ୍କୁ ସ୍ୱତନ୍ତ୍ର ବିଦେଶୀ ଭତ୍ତା ଦିଆଯାଉଥିଲା । କିନ୍ତୁ ଉକ୍ତ ରାଜ୍ୟ ଦଖଲ ପରେ ତାହାର 'ବିଦେଶୀ' ଆଖ୍ୟା କଟି ଯାଉଥିଲା ଏବଂ ତା'ସହ ସିପାହୀମାନଙ୍କର ସେହି ତଥାକଥିତ ବିଦେଶୀ ଭତ୍ତା ମଧ କଟିଯାଉଥିଲା । ଏହା ସୈନ୍ୟବାହିନୀ ଅସନ୍ତୋଷର ଏକ କାରଣ ହୋଇଥିଲା (a cruel breach of faith) ଚରମ ବିଶ୍ୱାସଘାତକତା ।

ବେତନ ସାଙ୍ଗକୁ ପଦୋନ୍ନତି ଯେକୌଣସି ସିପାହୀ ପାଇଁ ଏକ ପ୍ରଧାନ ଆକର୍ଷଣ ଥିଲା । କିନ୍ତୁ ସେମାନେ ଯୁଦ୍ଧକ୍ଷେତ୍ରରେ ''ହାଇଦର'' ସୁଲଭ ବୀରତ୍ୱ ପ୍ରଦାର୍ଶନ କଲେ ମଧ ସେମାନଙ୍କର ବେତନ ସାଧାରଣ ଗୋରା ସିପାହୀର ବେତନ ସ୍ତର ପର୍ଯ୍ୟନ୍ତ ଯାଇପାରୁ ନଥିଲା ।'' (Though he might give the signs of a military genious of Hyder, he knew that he could never attain the pay of an English subaltarn- From Sepoyto Subedar - By Sitaram - page 290)

ବ୍ରିଟିଶ୍ ପ୍ରଶାସକମାନେ ଭାରତୀୟମାନଙ୍କର ଧର୍ମାଚରଣ ଉପରେ ଯେଉଁ ହସ୍ତକ୍ଷେପ କରିବା ଆରମ୍ଭ କରିଥିଲେ ତା'ର ସର୍ବାଧିକ ପ୍ରଭାବ ପଡ଼ିଥିଲା ଭାରତୀୟ ସୈନ୍ୟମାନଙ୍କ ଉପରେ । ନୂତନ ରାଜ୍ୟ ଜୟ ପାଇଁ ସେମାନଙ୍କୁ ବହୁ ଦୂରକୁ ଯିବାକୁ ପଡୁଥିଲା । ବ୍ରହ୍ମଦେଶ ପ୍ରଭୃତି ଦରିଆପାରି ଦେଶକୁ ଯିବା ଦ୍ୱାରା ହିନ୍ଦୁମାନଙ୍କର ଧର୍ମନଷ୍ଟ ହେଉଥିଲା ବୋଲି ସେମାନେ ବିଶ୍ୱାସ କରୁଥିଲେ । ସେହିପରି ଅନ୍ୟ ଧର୍ମାବଲମ୍ବୀ ସହକର୍ମୀ ସାଙ୍ଗରେ ଏକାଠି ରହିବା, ରାନ୍ଧିବା ଓ ଖାଇବା ରକ୍ଷଣଶୀଳ ହିନ୍ଦୁମାନଙ୍କ ପକ୍ଷରେ ସମ୍ପୂର୍ଣ୍ଣ ଧର୍ମ ବିରୋଧୀ କାର୍ଯ୍ୟ ଭାବରେ ବିବେଚିତ ହେଉଥିଲା । ଏପରିକି ଚାକିରୀରୁ ଅବସର ନେବାପରେ ସମାଜରେ ଚଳିପାରୁନଥିଲେ । ହିନ୍ଦୁ ସିପାହୀମାନେ ଚୁଟି ରଖିପାରୁନଥିଲେ କିମ୍ବା ପଇତା ପକାଇ ପାରୁନଥିଲେ । କିମ୍ବା ମୁସଲମାନ ସିପାହୀ ମାନେ ଦାଢ଼ି ରଖିପାରୁନଥିଲେ ଏହା ଅପେକ୍ଷା ଅଧିକ ଧର୍ମୀୟ ଅସନ୍ତୋଷ ଆଉ କଣ ହୋଇପାରେ ବୋଲି ଉଭୟ ଧର୍ମର ସିପାହୀ ମାନେ ଭାବିବାକୁ ଲାଗିଲେ ।

ଅଧିକାଂଶ ବ୍ରିଟିଶ୍ ମିଲିଟାରୀ ଅଧିକାରୀ ଭାରତୀୟ ସିପାହୀମାନଙ୍କୁ ''Bitch'' 'Pig' ବା କୁକୁର ଓ ଘୁଷୁଡ଼ି ବୋଲି ଘୃଣା ବ୍ୟଞ୍ଜକ ସମ୍ବୋଧନ କରୁଥିଲେ । ଏହା ହିନ୍ଦୁ ଓ ମୁସଲମାନଙ୍କୁ ଭାରି ବାଧୁଥିଲା । ମହାବିଦ୍ରୋହ ସମୟରେ ଗୋଟିଏ ପ୍ରଚାର ପତ୍ରରେ

ଲେଖାଥିଲା ଯେ ୟୁରୋପୀୟାନ୍ କମାଣ୍ଡରମାନେ ପ୍ୟାରେଡ୍ ବେଳେ ଭାରତୀୟ ସିପାହୀମାନଙ୍କ ପ୍ରତି ଅତି ନଗ୍ନ ଓ ଅସଭ୍ୟ ଭାଷା ବ୍ୟବହାର କରୁଥିଲେ । ("the vilest language used on parade ground.")

ଭାରତୀୟ ସୈନ୍ୟମାନଙ୍କର ଅସନ୍ତୋଷ ଓ ଜନଅସନ୍ତୋଷ ସାଙ୍ଗକୁ ଭାରତର ରାଜା ମହାରାଜା ଓ ନବାବ ବେଗମ୍‌ମାନଙ୍କ ଅସନ୍ତୋଷ ମିଶିଯିବାରୁ ସୀମିତ ସିପାହୀ ବିଦ୍ରୋହ ମହା ବିଦ୍ରୋହରେ ପରିଣତ ହୋଇଥିଲା ।

ପ୍ରଥମେ ମୋଗଲ ସମ୍ରାଟଙ୍କ ଉତ୍ତରାଧିକାରୀ ବାହାଦୂର ସାହା ଜାଫର୍, ଯାହାଙ୍କର ସନନ୍ଦ ବଳରେ ଇଂରେଜମାନେ ଭାରତରେ ବ୍ୟବସାୟ ଓ ସାମ୍ରାଜ୍ୟ ବିସ୍ତାର କରିଥିଲେ, ତାଙ୍କୁ ସେମାନେ କାଳକ୍ରମେ କ୍ଷମତାଚ୍ୟୁତ କଲେ । ତା'ପରେ ଅଯୋଧ୍ୟା ନବାବ, ପଞ୍ଜାବ ନାଗପୁର, ସିନ୍ଧୁପ୍ରଦେଶ, ସାତାର, ରାଇଚୁର, ଲାଲଦୁର୍ଗ, କର୍ଣ୍ଣାଟକ, ତାଞ୍ଜୋର, ଝାନ୍‌ସୀ, କାରୌଲ, ଏପରିକି ସମ୍ବଲପୁର ଭଳି କ୍ଷୁଦ୍ର ଜମିଦାରୀକୁ ମଧ୍ୟ ବସ୍ତୁତଃ ଦଖଲ କରିଗଲେ । କାହା ବିରୁଦ୍ଧରେ ଅରାଜକତା, କାହା ବିରୁଦ୍ଧରେ କୁଶାସନ ଓ ପ୍ରଜାପୀଡ଼ନ ବା କାହା ବିରୁଦ୍ଧରେ ନିଃସନ୍ତାନ ଇତ୍ୟାଦିର କପୋଳକଳ୍ପିତ ଓ ହାସ୍ୟାସ୍ପଦ 'ଅଭିଯୋଗ' ରେ ଦଖଲ କରି ସେଠାରେ 'ଶାନ୍ତିରକ୍ଷା' ନାମରେ ସୈନ୍ୟବାହିନୀ ମୁତାୟନ କରି ଦିଆଗଲା । ଜେନେରାଲ ସାର୍ ଚାଲ୍‌ସ ନାପିୟରଙ୍କ ଭାଷାରେ ''ଏଗୁଡ଼ିକ ଦଖଲ କରିବାକୁ ଆମ୍ଭମାନଙ୍କର କୌଣସି ଅଧିକାର ନାହିଁ । ତଥାପି ଆମେ ଦଖଲ କରିବୁଁ । (We have no right to seize, yet we shall do it.) ବ୍ରିଟିଶ୍ ପ୍ରଶାସକ ମାନଙ୍କର ସେହି ରାଜ୍ୟ ଦଖଲର ପରିଣାମ ସମ୍ପର୍କରେ ଐତିହାସିକ କେ (Kay) କହିଛନ୍ତି ଯେ ''ଏହି ପଦକ୍ଷେପ ଯେ ଭାରତୀୟ ମାନଙ୍କ ଉପରେ ଅତ୍ୟନ୍ତ ତୀବ୍ର ପ୍ରତିକ୍ରିୟା ସୃଷ୍ଟି କରିଥିଲେ ଏଥିରେ ସନ୍ଦେହର ଅବକାଶ ନାହିଁ ।(History of Indian Military Vol-I Page-110)

ଭାରତୀୟ ସମାଜର ବିଭିନ୍ନ ଶ୍ରେଣୀର ବ୍ରିଟିଶ ପ୍ରଶାସନ ବିରୁଦ୍ଧରେ ଥିବା ଭିନ୍ନ ଭିନ୍ନ ଅଭିଯୋଗ ସମ୍ବଳିତ ଚାର୍ଜ ସିଟ୍ ଅଭଯୋଗ ଫର୍ଦ୍ଦ ମହା ବିଦ୍ରୋହ ପ୍ରଧାନ ନେତା ମୋଗଲ ସମ୍ରାଟ ବାହାଦୂର ସାହା ଜାଫର ପ୍ରକାଶ କରିଥିଲେ । ଯଥା:-

୧. ରାଜା ଜମିଦାର- କ୍ରମବର୍ଦ୍ଧମାନ ଭୂରାଜସ୍ୱ, ରାଜ୍ୟ ଦଖଲ, ଜମିଦାରୀ ନିଲାମଜନିତ ଅପମାନ, ବ୍ରିଟିଶ୍ ବିଚାରଳୟରେ କ୍ରମବର୍ଦ୍ଧମାନ ବ୍ୟୟ (ଷ୍ଟାମ୍ପ ଓ କୋର୍ଟ ଫି)

୨. ବଣିକ ବା ବ୍ୟବସାୟୀ - ବ୍ରିଟିଶର ଏକଚାଟିଆ ବାଣିଜ୍ୟ ଅଧିକାର ଫଳରେ ନୀଳ ଓ କାର୍ପାସ୍ ଦ୍ରବ୍ୟ ଇତ୍ୟାଦି ଚାଲାଣ ଭାରତୀୟ ବ୍ୟବସାୟୀଙ୍କୁ ତଳିତଳାନ୍ତ କରି ଦେଇଛି ।

୩. ସରକାରୀ କାର୍ଯ୍ୟରେ ନିଯୁକ୍ତ ଭାରତୀୟ ଅଧିକାରୀ ମାନଙ୍କ ଅତ୍ୟଳ୍ପ ବେତନ,

ସାଧାରଣ ଓ ସାମରିକ ଭାରତୀୟ କର୍ମଚାରୀମାନଙ୍କର ସାମାନ୍ୟ କ୍ଷମତା ଓ ଅଧିକାର ଏବଂ ଇଂରେଜୀ କର୍ମଚାରୀ ଅଧିକ ବେତନ ଓ ଅନ୍ୟାନ୍ୟ ସୁବିଧା ।

୪. ଗ୍ରାମ୍ୟ ଶିଳ୍ପୀ- ବିଲାତି ବସ୍ତ୍ର ଓ ଅନ୍ୟାନ୍ୟ ବିଲାତି ଦ୍ରବ୍ୟର ବ୍ୟାପକ ପ୍ରଚଳନ ଫଳରେ ଦେଶୀ ଶିଳ୍ପର ଧ୍ୱଂସ ସାଧନ ।

୫. ବିଦ୍ୱାନ ପଣ୍ଡିତ ଓ ମୁଲ୍ଲା ମୌଲବୀ । ହିନ୍ଦୁ ଓ ମୁସଲମାନ ଧର୍ମର ଯାଜକ ଓ ପୁରୋହିତ ମାନଙ୍କ ଉପରେ ଖ୍ରୀଷ୍ଟିୟାନ୍ ପ୍ରଚାରକ ମାନଙ୍କର ନିର୍ଯ୍ୟାତନା । ଏହିଭଳି ଭାବରେ ଭାରତର ସମସ୍ତ ଶ୍ରେଣୀ ଓ ସମସ୍ତ ଧର୍ମ ସମ୍ପ୍ରଦାୟର ଲୋକମାନେ ମହାବିଦ୍ରୋହରେ ଯୋଗଦେବାକୁ ବାଧ ହୋଇଅଛନ୍ତି ।

ବିଦ୍ରୋହର ଅନ୍ୟତମ ମୁଖ୍ୟନେତା ପେଶ୍ୱା ନାନାସାହେବ ଫରାସୀ ସମ୍ରାଟଙ୍କ ନିକଟକୁ ବ୍ରିଟିଶ୍ ସରକାର ବିରୁଦ୍ଧରେ ଯେଉଁ ଅଭିଯୋଗ ପତ୍ର ୧୮୫୮ ମସିହା ଏପ୍ରିଲ ଓ ମଇ ମାସରେ ପଠାଇଥିଲେ ସେଥିରେ ମୋଗଲ ସମ୍ରାଟ ବାହାଦୁର ସାହା ଜାଫରଙ୍କ ଚାର୍ଜସିଟ୍‌ର ପ୍ରାୟ ସମସ୍ତ ଅଭିଯୋଗ ରହିଥିଲା । ସେଥିରେ କୁହାଯାଇଥିଲାଯେ କେବଳ ମିଥ୍ୟା ଓ ଜାଲିଆତି ସାହାଯ୍ୟରେ ମରହଟ୍ଟା ସାମ୍ରାଜ୍ୟକୁ ଦଖଲ, ୨ୟ ବାଜିରାଓଙ୍କ ପେନ୍‌ସନ୍‌କୁ ବନ୍ଦ କରିଦେବା ସେହି ଜାଲିଆତିରେ ଭାରତର ଅଧିକାଂଶ ସ୍ୱାଧୀନ ରାଜ୍ୟମାନଙ୍କୁ ଅଧିକାର, ବ୍ରିଟିଶ୍ ବିଚାରାଳୟରେ ଦିନକୁ ଦିନ ବଢୁଥିବା ମକଦ୍ଦମା ଖର୍ଚ୍ଚ, ଭାରତର ସମ୍ପତ୍ତିବାନ ଭାରତୀୟମାନଙ୍କୁ ଉଚ୍ଛନ୍ନ କରିଦେବା, ଭାରତୀୟ ସଂସ୍କୃତି ଓ ଧର୍ମବିଶ୍ୱାସର ସମ୍ପୂର୍ଣ୍ଣ ବିରୋଧୀ ଆଇନ କାନୁନ ତିଆରି କରିବା, ଦୁଇଶହ ରାଜ ମହାରାଜାଙ୍କୁ କ୍ଷମତାଚ୍ୟୁତ କରିବା, ସେମାନଙ୍କ ସହ ପୂର୍ବରୁ ହୋଇଥିବା ସନ୍ଧି ଓ ସନନ୍ଦକୁ ଲଙ୍ଘନ କରିବା, ଦିଲ୍ଲୀ ସମ୍ରାଟଙ୍କୁ ନିର୍ଯ୍ୟାତିତ ଓ ଅପମାନିତ କରିବା, ଭାରତୀୟ ନାରୀମନଙ୍କ ପ୍ରତି ଦୁର୍ବ୍ୟବହାର, ମନ୍ଦିର ଓ ମସଜିଦ୍‌ମାନଙ୍କୁ ଅପବିତ୍ର କରିବା ଓ ଧ୍ୱଂସ କରିବା, ଦେବୋତ୍ତର ଓ ପୀରୋତ୍ତର ସମ୍ପତ୍ତିକୁ ହାତକୁ ନେଇଯିବା ପ୍ରଭୃତି ଘଟଣାରେ ଭାରତର ଜନସାଧାରଣ ଓ ସିପାହୀମାନେ ବିଦେଶୀ ସରକାର ବିରୋଧରେ ଏକଜୁଟ ହୋଇଅଛନ୍ତି । ସେ ସମ୍ପର୍କରେ ସରକାରୀ ଗୁପ୍ତ ରିପୋର୍ଟରେ ଉଲ୍ଲେଖ ଅଛି ଯେ ''The acts of injustice and herjury of the English Government blaze on all sides like the rays of the sun.'' (ଇଂରେଜ ଶାସନର ଅନ୍ୟାୟ ପ୍ରତାରଣା ପୂର୍ଣ୍ଣ ଆଚରଣ ସୂର୍ଯ୍ୟ କିରଣ ଭଳି ଚତୁର୍ଦ୍ଦିଗକୁ ବିଚ୍ଛୁରିତ ହେଉଛି ।)

ଅଯୋଧାର ନାବାଳକ ନବାବ ବିର୍ଜିସ୍ କାଦରଙ୍କ ପକ୍ଷରୁ ମହାବିଦ୍ରୋହର ଅନ୍ୟତମ ନେତ୍ରୀ ବିଧବା ବେଗମ୍ ହଜରିତ ମଇ ମହାବିଦ୍ରୋହର କାରଣ ସମ୍ପର୍କରେ ବିବରଣୀରେ ପ୍ରକାଶ କରିଥିଲେ ଯେ:- ଭାରତର ହିନ୍ଦୁ ଓ ମୁସଲମାନ ମାନଙ୍କ ପକ୍ଷରେ ଚାରିଗୋଟି ବିଷୟ ଅତ୍ୟନ୍ତ ମୂଲ୍ୟବାନ ଥିଲା, (୧) ଧର୍ମବିଶ୍ୱାସ, (୨) ମାନ-ସମ୍ମାନ, (୩) ଜୀବନ

ଓ (୪) ସମ୍ପତ୍ତି । ଭାରତୀୟ ଶାସକମାନେ ଉପରୋକ୍ତ ଚାରିଗୋଟି ବିଷୟକୁ ନିରାପଦ ରଖୁଥିଲେ । କିନ୍ତୁ ଇଂରେଜମାନେ ଉଭୟ ଧର୍ମର ବିଶ୍ୱାସୀମାନଙ୍କୁ ବଳପୂର୍ବକ ଖ୍ରୀଷ୍ଟିୟାନ୍ କରୁଅଛନ୍ତି । ସମ୍ମାନୀୟ ବ୍ୟକ୍ତିମାନଙ୍କୁ ସର୍ବଦା ଲାଞ୍ଛିତ ଓ ଅପମାନିତ କରୁଅଛନ୍ତି, ସେମାନେ ସର୍ବତ୍ର ଗଣହତ୍ୟା କରୁଅଛନ୍ତି ଓ ନାରୀଜାତି ପ୍ରତି ଅତ୍ୟନ୍ତ ଅସହ୍ୟ ଆଚରଣ କରୁଅଛନ୍ତି ।''

ତେଣୁ କେବଳ ସିପାହୀମାନଙ୍କର ଅସନ୍ତୋଷରୁ ମହାବିଦ୍ରୋହ ସୃଷ୍ଟି ହୋଇନଥିଲା । ତାହା କୌଣସି ସାମ୍ପ୍ରଦାୟିକ ବିଦ୍ରୋହ ନଥିଲା । ତାହାଥିଲା ଏକ ରାଜନୀତିକ ବିଦ୍ରୋହ । ସମସ୍ତଙ୍କର ଏକମାତ୍ର ଉଦ୍ଦେଶ୍ୟ ଥିଲା ବିଦେଶୀ ଶାସନର ମୂଳୋତ୍ପାଟନ । "This monster rebellion has been mainly of a political and but very subordinately of a religious character." (Alexander Duff in The Indian Rebellion (London-1858) Page-132-33) (ଏହା ମୁଖ୍ୟତଃ ଥିଲା ଏକ ରାଜନୀତିକ ବିଦ୍ରୋହ ଓ ଧର୍ମ ଥିଲା ତାହାର ଗୌଣ କାରଣ ।)

## ମହାବିଦ୍ରୋହର ଚରିତ୍ର :

ମହାବିଦ୍ରୋହ ପୂର୍ବରୁ ପ୍ରାୟ ଦେଢ଼ଶହ ବର୍ଷଧରି ବ୍ରିଟିଶ୍ ଶାସନ ବିରୁଦ୍ଧରେ ହୋଇଥିବା ସ୍ଥାନୀୟ ସିପାହୀ ଅସନ୍ତୋଷ ଓ ବିଦ୍ରୋହ ଯେପରି ଅନ୍ୟ ଅଞ୍ଚଳରେ ଅବସ୍ଥାପିତ ସିପାହୀମାନେ ଯେପରି ନୀରବ ରହୁଥିଲେ ସେହିପରି ବିଦେଶୀ ଅନୁପ୍ରବେଶକାରୀ ମାନଙ୍କର ରାଜ୍ୟ ଜୟ ଅନ୍ୟତ୍ର ଅନୁଭୂତ ହେଉନଥିଲା । ନାଦୀର ସାହା ବା ଅହମ୍ମଦ ସାହା ଆବଦାଲୀ କିମ୍ବା ବ୍ରିଟିଶ ବଣିକମାନଙ୍କ ଦ୍ୱାରା ସୀରାଜୌଦ୍ଦୌଲାଙ୍କ ପରାଜୟ ଓ ବଙ୍ଗଳା ଦଖଲ ପ୍ରତିବାଦ ବଙ୍ଗଳାର ପ୍ରତିବେଶୀ ରାଜ୍ୟମାନଙ୍କରେ ମଧ୍ୟ ଶୁଣାଯାଇଥିଲା । ଦୋଆବର ଜାଠ ବିଦ୍ରୋହ କିମ୍ବା ଇଂରେଜମାନଙ୍କ ପଞ୍ଜାବ ଦଖଲ, ସେହି ପଞ୍ଜାବରେ ସର୍ବତ୍ର ମଧ୍ୟ ଅନୁଭୂତ ହୋଇନଥିଲା । ମୋଗଲ ନବାବ ଅଉରଙ୍ଗଜେବ ବିରୁଦ୍ଧରେ ମରହଟ୍ଟାମାନଙ୍କ ଯୁଦ୍ଧ ଏକ ସ୍ଥାନୀୟ ଘଟଣା ହୋଇ ରହିଗଲା । ଅବଶ୍ୟ ମହାବିଦ୍ରୋହ ବଙ୍ଗଳାର ନବ ଶିକ୍ଷିତ ଉଚ୍ଚ ମଧ୍ୟବିତ୍ତ ସମାଜକୁ ମଧ୍ୟ ଆକର୍ଷିତ କରିନଥିଲା । କିନ୍ତୁ ତାହାର କାରଣ ଥିଲା ସମ୍ପୂର୍ଣ୍ଣ ପୃଥକ । କେବଳ ବଙ୍ଗଳା ବା କଲିକତା ନୁହେଁ ବମ୍ବେ, ମାଡ୍ରାଜ ପ୍ରଭୃତି ମହାନଗରର ମଧ୍ୟବିତ୍ତ ସମାଜ ମହାବିଦ୍ରୋହରେ ଯୋଗ ଦେବା ଦୂରେ ଥାଉ, ସେମାନେ ଶେଷ ପର୍ଯ୍ୟନ୍ତ ବରଂ ତାହାର ବିରୋଧ କରି ବିଦେଶୀ ପ୍ରଶାସକମାନଙ୍କର ପୃଷ୍ଠପୋଷକତା କରୁଥିଲେ । ସେମାନେ ଇଂରେଜ ଶାସନରୁ ମିଳୁଥିବା ଯତ୍ ସାମାନ୍ୟ ସୁବିଧା ସୁଯୋଗର ସର୍ବୋତ୍ତମ ଫାଇଦା ଉଠାଇ ଏକ ପ୍ରତିକ୍ରିୟାଶୀଳ ଗୋଷ୍ଠୀର କଳେବର ବୃଦ୍ଧି କରୁଥିଲେ । ସେମାନଙ୍କର ଏକମାତ୍ର ଲକ୍ଷ୍ୟ ଥିଲା ବିଚାରାଳୟରେ ମାଜିଷ୍ଟ୍ରେଟ୍ ବା ଜୁରୀ (ବିଚାର ମଣ୍ଡଳୀ)ରେ ଜଣେ ବିଚାରକ ହେବା ଓ ବିଦେଶୀ ପ୍ରଶାସକର ପ୍ରୀତିଭାଜନ ହେବା । ସି: ଟ୍ରେଭେଲିୟନଙ୍କ ଭାଷାରେ

ଯେତେବେଳେ ସମଗ୍ର ଭାରତରେ ବ୍ରିଟିଶଶାସକମାନଙ୍କ ତଣ୍ଡିକାଟିବାରେ ଲାଗିଥିଲେ, ସେତେବେଳେ ଇଂରେଜ ଶିକ୍ଷିତ ଭାରତୀୟ 'ବାବୁ' ମାନେ ସେମାନଙ୍କ ପାଖରେ ଆସନ ପାଇବା ପାଇଁ ପରସ୍ପରର ପ୍ରତିଦ୍ୱନ୍ଦିତା କରୁଥିଲେ । "The only class that did not support the rebellion was the new middle class ." (The History of Freedom Movement in India- By Tarachand) କଲିକତା ସହରର ମାତ୍ର ୧୬ କିଲୋମିଟର ଦୂରରେ ଅବସ୍ଥିତ ବାରାକପୁର କାଣ୍ଟନମେଣ୍ଟରେ ୩୪ ନମ୍ବର ନେଟିଭ ଇନ୍‌ଫାଣ୍ଟ୍ରିର ସିପାହୀ ମଙ୍ଗଳ ପାଣ୍ଡେ ୧୮୫୭ ମାର୍ଚ୍ଚ ୨୯ ତାରିଖରେ ତାହାର ଗୋରା ସେନାପତି ଉପରକୁ ଗୁଳି ଚଳାଇ ମହାବିଦ୍ରୋହର ଶୁଭ ପାଞ୍ଚଜନ୍ୟ ନିନାଦିତ କରିବା ପରେ ସେ ଶବ୍ଦ କଲିକତାର ଶିକ୍ଷିତ ଗୋଷ୍ଠୀର କର୍ଣ୍ଣ ଗୁହରରେ ପ୍ରବେଶ କରି ଅନ୍ୟଦ୍ୱାରରେ ପ୍ରସ୍ଥାନ କଲା ଅଥଚ ଶହ ଶହ କି:ମି: ର ଦୂରରେ ମୀରଟ କ୍ୟାଣ୍ଟନ୍‌ମେଣ୍ଟରେ ନିଆଁ ଲାଗି ଗଲା । କିନ୍ତୁ ବଙ୍ଗବାସୀଙ୍କୁ ଜାଗ୍ରତ କରିବା ପାଇଁ ଦୀର୍ଘ ଅର୍ଦ୍ଧ ଶତାବ୍ଦୀ ପରେ ୧୯୦୬-୦୭ର ବଙ୍ଗ ଭଙ୍ଗ ବିରୋଧୀ ଆନ୍ଦୋଳନ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିଲା ।

ମଙ୍ଗଳ ପାଣ୍ଡେଙ୍କର ଗୁଳିରେ ଲେଫ୍‌ଟନାଣ୍ଟ ବାଗ ମୃତ୍ୟୁବରଣ କଲା । ସେହି ଅଭିଯୋଗରେ ମଙ୍ଗଳ ପାଣ୍ଡେ ଫାଶୀ ଖୁଣ୍ଟିରେ ପ୍ରାଣ ବିସର୍ଜନ କରି ମହାବିଦ୍ରୋହର ପ୍ରଥମ ଶହିଦ ହେବାର ଗୌରବ ଅର୍ଜନ କଲେ । ସେହି ବର୍ଷ ମଇ ୫ ତାରିଖରେ ମଙ୍ଗଳ ପାଣ୍ଡେ ଥିବା ୩୪ ନମ୍ବର ନେଟିଭ୍ ଇନ୍‌ଫ୍ୟାଣ୍ଟ୍ରି ରେଜିମେଣ୍ଟ ଭାଙ୍ଗି ଦିଆଗଲା ଏବଂ ସମସ୍ତ ସିପାହୀଙ୍କୁ ଚାକିରୀରୁ ବରଖାସ୍ତ କରିଦିଆଗଲା ।

ସେହି ସିପାହୀମାନେ ଚାକିରୀ ହରାଇବା ଫଳରେ ନିଃସ୍ୱ ହୋଇଗଲେ ମଧ୍ୟ ବିଦେଶୀ ଶାସକମାନଙ୍କ ବିରୁଦ୍ଧରେ ସେମାନେ ବିଦ୍ରୋହ ବାର୍ତ୍ତା ପ୍ରଚାର ନକରି ଛାଡ଼ିଲେ ନାହିଁ । ଏନ୍‌ଫିଲ୍ଡ୍ ଗୁଳିରେ ଘୁଷୁରି ଓ ଗୋରୁ ଚର୍ବି ବୋଳା ହୋଇଛି ବୋଲି ଜାଣିବା ପରେ ତାହାକୁ ଦାନ୍ତରେ ଛିଡ଼ାଇଲେ ଉଭୟ ହିନ୍ଦୁ ଓ ମୁସଲମାନମାନଙ୍କର ଧର୍ମନଷ୍ଟ ହେବ, ଏକଥା ସମସ୍ତେ ବୁଝି ସାରିଥିଲେ । ଭାରତୀୟମାନଙ୍କର ଧର୍ମନଷ୍ଟ କରି ସମସ୍ତଙ୍କୁ ଖ୍ରୀଷ୍ଟିୟାନ୍ କରିବାର ସେହି ବିଦେଶୀ ଷଡ଼ଯନ୍ତ୍ର ଯାହାବା ଲୁଚି ରହିଥାନ୍ତା. ମଙ୍ଗଳ ପାଣ୍ଡେ ଗୋରା ସେନାପତିକୁ ହତ୍ୟା କରିବା ଏବଂ ସେହି ଅପରାଧରେ ସେ ଫାଶୀପାଇବା ଘଟଣା ପରେ ତାହା ସମସ୍ତଙ୍କ ଆଗରେ ପ୍ରକାଶିତ ହୋଇଗଲା ।

## ମୀରଟ ବିଦ୍ରୋହ:

ଏନ୍‌ଫିଲଡ୍ ଗୁଳିରେ ବୋଳା ହୋଇଥିବା ଗୋରୁ-ଘୁଷୁରି ଚର୍ବି ବିରୁଦ୍ଧରେ ମଙ୍ଗଳ ପାଣ୍ଡେଙ୍କର ସକ୍ରିୟ ବିଦ୍ରୋହକୁ ଇଂରେଜ ସେନାପତିମାନେ ସମ୍ପୂର୍ଣ୍ଣ ଏକ ବ୍ୟକ୍ତିଗତ ବ୍ୟାପାର ବୋଲି ମନେକରି ତାହାକୁ ଅଧିକ ଗୁରୁତ୍ୱ ଦେଇନଥିଲେ । ସେଥିପାଇଁ ସେ ୩୪ ନମ୍ବର

ଏନ: ଆଇ.କୁ ଭାଙ୍ଗି ଦେଇ 'ବିଦ୍ରୋହ' ବନ୍ଦ ହୋଇଯିବ ବୋଲି ଭାବିଥିଲେ । କିନ୍ତୁ ସେନାପତି କାର୍ମିକେଲ ସ୍ମିଥର ଅହମିକା ଓ ଅପରିଣାମଦର୍ଶିତା ଯୋଗୁ ସହିଦ ମଙ୍ଗଳ ପାଣ୍ଡେ ଆରମ୍ଭ କରିଥିବା ତଥାକଥିତ ''ବ୍ୟକ୍ତିଗତ'' ବିଦ୍ରୋହ ଅତି ଅଳ୍ପ ସମୟ ମଧ୍ୟରେ ମହାବିଦ୍ରୋହରେ ରୂପାନ୍ତରିତ ହୋଇଗଲା ।

କାର୍ମିକେଲ ସ୍ମିଥ ଥିଲା ୩ ନମ୍ବର ଅଶ୍ୱାରୋହୀ ରେଜିମେଣ୍ଟର ଜଣେ ଅହଙ୍କାରୀ ସେନାପତି । ଏନ୍‌ଫିଲ୍ଡ ଗୁଳି ସମ୍ପର୍କରେ ଅଶ୍ୱାରୋହୀ ରେଜିମେଣ୍ଟର ପ୍ରତିକ୍ରିୟା ସେ ଯେ ଜାଣି ନଥିଲା ତାହା ନୁହେଁ । ତଥାପି ଗୋରା ଶାସକ ବର୍ଗଙ୍କର ଶକ୍ତିର ପରିଚୟ ଦେଖାଇବାକୁ ସେ ୨୩ ଏପ୍ରିଲ୍‌ରେ ଏନ୍‌ଫିଲ୍ଡ ଗୁଳି ସହ ପ୍ୟାରେଡ୍ କରିବାକୁ ଅର୍ଡର ଦେଲା । ସମସ୍ତଙ୍କୁ ନୁହେଁ ମାତ୍ର ୯୦ (ନବେଜଣ) ସିପାହୀଙ୍କୁ କିନ୍ତୁ ମାତ୍ର ପାଞ୍ଚଜଣଙ୍କ ବ୍ୟତୀତ ଅନ୍ୟ କୌଣସି ସିପାହୀ ଏନ୍‌ଫିଲ୍ଡ ରାଇଫେଲକୁ ଛୁଇଁଲେ ନାହିଁ । ସ୍ମିଥ ଅବାଧ ସିପାହୀମାନଙ୍କ ସହ ଅଧିକ କଥା ନକହି ପ୍ୟାରେଡ୍ ବନ୍ଦ ହେବାର ଘୋଷଣା କରିଦେଲା । କିନ୍ତୁ ସଙ୍ଗେ ସଙ୍ଗେ ସେହି 'ବିଦ୍ରୋହୀ' ସିପାହୀମାନଙ୍କ ବିଚାର ପାଇଁ ସାମରିକ ଅଦାଲତ ବସିଗଲା ବିଚାରରେ ସମସ୍ତ ବିଦ୍ରୋହୀ ସିପାହୀମାନଙ୍କୁ ଦଶବର୍ଷ ଲେଖାଁ ସଶ୍ରମ କାରାଦଣ୍ଡ ଆଦେଶ ଦିଆଗଲା ।

ମଇ ୯ ତାରିଖରେ ସକାଳେ ଦଣ୍ଡିତ ସିପାହୀମାନଙ୍କୁ ଅନୁଗତ ସିପାହୀମାନଙ୍କର ସମ୍ମୁଖରେ ପୋଷାକ ଉତାରି ଦେଇ ଓ ହାତକଡ଼ି ଗୋଡ଼ କଡ଼ି ପିନ୍ଧାଇ ଜେଲ୍‌କୁ ପଠାଇ ଦିଆଗଲା । ବିଦ୍ରୋହୀ ସେନାଗଣ ନିଜ ନିଜ ଧର୍ମକୁ ରକ୍ଷାକରିବାକୁ ଯାଇ ଯେଉଁ କଠୋର ଦଣ୍ଡ ଭୋଗ କଲେ, ତାହା ରାଜଭକ୍ତ ସିପାହୀମାନଙ୍କ ମନରେ ଗଭୀର ଅସନ୍ତୋଷ ସୃଷ୍ଟି କଲା ଏବଂ ଦଣ୍ଡିତ ସିପାହୀ ମାନେ ସେମାନଙ୍କ ଆଖିରେ 'ବୀର' ଭାବେ ବିବେଚିତ ହେଲେ । ଅବଶ୍ୟ ସଙ୍ଗେ ସଙ୍ଗେ ସେହି ଅସନ୍ତୋଷ ପ୍ରକାଶିତ ହୋଇନଥିଲା । କିନ୍ତୁ ସେମାନେ ଯେ କୌଣସି ମୁହୂର୍ତ୍ତରେ ଯେ ବିଦ୍ରୋହ ଘୋଷଣା କରିବେ, ଏଥିରେ ଜେନେରାଲ ଡଫ୍‌ଙ୍କ ଭଳି ସେନାପତିମାନଙ୍କ ସନ୍ଦେହ ନଥିଲା । ସେ ସ୍ୱୀକାର କରିଛନ୍ତି ''ସେହି ସମୟରେ ଆମ ପାଖରେ ଯଥେଷ୍ଟ ବ୍ରିଟିଶ୍ ସୈନ୍ୟ ଉପସ୍ଥିତ ଥିବାରୁ ଭାରତୀୟ ବିଦ୍ରୋହୀ ସିପାହୀ ମାନେ ଚୁପ୍ ଚାପ୍ ରହିଗଲେ । ଅସ୍ୱାଭାବିକ ନିସ୍ତବ୍ଧତା ଭିତରେ ''ଅନୁଗତ ବୋଲି ବିଶ୍ୱାସ କରାଯାଉଥିବା ସମସ୍ତ ସିପାହୀ ନିଜ ନିଜ ବ୍ୟାରାକ୍ କୁ ଫେରିଗଲେ । କଲୋନେଲ କାର୍ମିକେଲ ସ୍ମିଥ୍ ତଥା ବ୍ରିଗେଡିଅର ଉଇଲସନ୍ ପ୍ରଭୃତି ବ୍ରିଟିଶ ସେନାପତି ଗଣ ମନଖୁସିରେ ଯେ ଯାହାର କ୍ୱାଟରକୁ ଫେରିଗଲେ ।

ପୂର୍ବାହ୍ନ ଓ ଅପରାହ୍ନ କୌଣସି ଅଘଟଣ ବିନା ଅତିବାହିତ ହୋଇଗଲା ।

କିନ୍ତୁ ସନ୍ଧ୍ୟା ପୂର୍ବରୁ ସିପାହୀ ଲାଇନରେ ହଠାତ୍ ଏକ ଜନରବ ସୃଷ୍ଟି ହୋଇଗଲା ଯେ ୟୁରୋପୀୟ ସେନାବାହିନୀ ଯଥା ଶୀଘ୍ର ସେଠାରେ ପହଞ୍ଚି ସମସ୍ତ ଭାରତୀୟ ସୈନ୍ୟମାନଙ୍କୁ ନିରସ୍ତ୍ର କରିଦେବେ । ସେ ଜନରବର ଭୟାବହ ପ୍ରତିକ୍ରିୟା ସୃଷ୍ଟିହେଲା ସିପାହୀ

ଲାଇନ୍‌ରେ । ୩ ନମ୍ବର ଅଶ୍ୱାରୋହୀ ବାହିନୀର ସମସ୍ତ ସୈନ୍ୟ ଏକ ସଙ୍ଗେ ବିଦ୍ରୋହ ଘୋଷଣା କରି ସିଧା ଚାଲିଲେ ଜେଲ୍‌କୁ । ଜେଲ୍ ଗେଟ୍‌କୁ ଭାଙ୍ଗି ଚୁରମାର କଲେ ଏବଂ ମୁକ୍ତ ହେଲେ ସମସ୍ତ ଦଣ୍ଡିତ ବିଦ୍ରୋହୀ ସିପାହୀ । ତାପରେ ଭଙ୍ଗାଗଲା ୨୦ ନମ୍ବର ଏନ୍.ସି. ରେଜିମେଣ୍ଟର ଅସ୍ତ୍ର ଭଣ୍ଡାର ଏବଂ ଲୁଟ ହେଲା ସମସ୍ତ ଅସ୍ତ୍ରଶସ୍ତ୍ର । କ୍ରମେ ସମସ୍ତ ବ୍ୟାରାକ୍‌କୁ ବିଦ୍ରୋହ ବ୍ୟାପିଗଲା ।

ଏକ ସଙ୍ଗେ ଶହ ଶହ ସିପାହୀଙ୍କର ସଶସ୍ତ୍ର ବିଦ୍ରୋହ ଘୋଷଣା ସମ୍ବାଦ ବ୍ରିଟିଶ୍ ସେନାପତିମାନଙ୍କ ପକ୍ଷରେ ଥିଲା ଅପ୍ରତ୍ୟାଶିତ ଓ ଅକଳ୍ପନୀୟ । ସେନାପତି କାର୍ମକେଲ, ଯାହାର ୩ନମ୍ବର ଅଶ୍ୱାରୋହୀ ରେଜିମେଣ୍ଟ ବିଦ୍ରୋହର ନେତୃତ୍ୱ ନେଇଥିଲେ, ସେ ଏକାବେଳକେ କିଂ କର୍ତ୍ତବ୍ୟବିମୂଢ଼ ହୋଇଗଲେ, ସେ ଦୌଡ଼ିଲେ କମିସନରଙ୍କ ନିକଟକୁ । ସେଠାରୁ ଦୌଡ଼ିଲେ ବ୍ରିଗେଡିଅର ବଙ୍ଗଲୋକୁ ଏବଂ ଶେଷରେ ପହଞ୍ଚିଲେ ଜେନେରାଲଙ୍କ ପାଖରେ । ଜେନେରାଲ ବିଦ୍ରୋହୀମାନଙ୍କ ପ୍ରକୃତ ସଂଖ୍ୟା ଓ ଗତିପଥ କଳନା କରିପାରୁ ନଥିବାରୁ ବିଦ୍ରୋହର ସମ୍ମୁଖୀନ ହେବା ସମ୍ଭବ ହେଲା ନାହିଁ । ବ୍ରିଟିଶ ସେନାପତିମାନଙ୍କର ନୀରବତା ବିଦ୍ରୋହୀ ସିପାହୀ ମାନଙ୍କର ମନୋବଳ ବଢ଼ାଇଦେଲା । ଫଳରେ ସମଗ୍ର ମୀରଟ ସହରରେ ବିଦ୍ରୋହୀ ସିପାହୀମାନଙ୍କ ଅଖଣ୍ଡ ରାଜତ୍ୱ ଚାଲିଲା । ବ୍ରିଟିଶ ସେନାପତି ଓ ସୈନ୍ୟମାନଙ୍କର କ୍ୱାଟରରେ ଥିବା ୟୁରୋପିଆନ୍ ଅଧିବାସୀ ବିଦ୍ରୋହୀମାନଙ୍କର ଶିକାର ହେଲେ । ସାରା ରାତି ସେହି ଏକତରଫା ଯୁଦ୍ଧ କାଣ୍ଟନମେଣ୍ଟରେ ନରମେଧ ଯଜ୍ଞ ଓ ରକ୍ତର ପ୍ଳାବନ । ସେହି ଅରାଜକତାର ସୁଯୋଗ ନେଇ ଗୁର୍ଜର ଅଧିବାସୀ ସମାଜ ବିରୋଧୀମାନେ ବ୍ୟାପକ ଭାବେ ଗୃହଦାହ କରିବା ସଙ୍ଗେ ସଙ୍ଗେ ମିରଟ ସହରରେ ବ୍ୟାପକ ଲୁଟ୍ ତରାଜ ମଧ କଲେ । କେବଳ ବିଦେଶୀ ଶାସକ ବର୍ଗଙ୍କ ଗୃହ ନୁହେଁ ସରକାରୀ ସମର୍ଥକ ଭାରତୀୟ ବ୍ୟବସାୟୀ ବାସଗୃହ ଓ ବ୍ୟବସାୟ ପ୍ରତିଷ୍ଠାନ ମଧ ଲୁଟତରାଜରୁ ରକ୍ଷା ପାଇଲା ନାହିଁ ।

ମିରଟରେ ସେତେବେଳେ ୧୫୦୦ ୟୁରୋପିୟାନ୍ ସୈନ୍ୟ ଥିଲେ ମଧ ସେମାନେ ବହୁସଂଖ୍ୟାରେ ଅଧିକ ବିଦ୍ରୋହୀ ଭାରତୀୟ ସିପାହୀମାନଙ୍କ ସହ ମୁକାବିଲା କରିବା ଅପେକ୍ଷା ବ୍ରିଟିଶ ସେନାପତି ଓ ସୈନ୍ୟମାନଙ୍କର ବାସଗୃହକୁ ସୁରକ୍ଷା ଦେବା ଅଧିକ ଆବଶ୍ୟକ ମନେ କଲେ ।

ଦୁଇଦିନ ଦୁଇରାତି ମିରଟରେ ହତ୍ୟା ଲୁଟ ତରାଜ ପରେ ବିଦ୍ରୋହୀମାନେ ଆଉ ସେଠାରେ ରହିବାକୁ ନିରାପଦ ମନେ କଲେ ନାହିଁ । କାରଣ ସେମାନେ ଆଶଙ୍କା କଲେ ଯେ ବ୍ରିଟିଶ ପକ୍ଷ ଏତିକିରେ ଦବି ନଯାଇ କଲିକତା ଓ ଅନ୍ୟଆଡୁ ଅଧିକ ସଂଖ୍ୟକ ବ୍ରିଟିଶ ସୈନ୍ୟ ଆଣି ବିଦ୍ରୋହୀମାନଙ୍କୁ ନିପାତ କରିବାର ସମ୍ଭାବନା ଅଧିକ । ତେଣୁ ସେମାନେ ଦଳ ଦଳ ହୋଇ ମିରଟ ପରିତ୍ୟାଗ କରିବାକୁ ଲାଗିଲେ । ଗୋଟିଏ ଦଳ ହାପୁର, ଅନ୍ୟ ଦଳ ଗୁଡ଼ିକ ବାଗପଟ, ମୁରି ଓ ମୁରାଦପୁର ଅଭିମୁଖେ ଗଲେ । କିନ୍ତୁ ଅଧିକାଂଶ ଚାଲିଲେ ମୋଗଲ ଭାରତର ରାଜଧାନୀ ଦିଲ୍ଲୀ ଅଭିମୁଖେ ।

ମିରଟରୁ ଆରମ୍ଭ ହୋଇଥିବା ବିଦ୍ରୋହ କ୍ରମେ ସମଗ୍ର ଉତ୍ତର, ପୂର୍ବ ଓ ପଶ୍ଚିମ ଭାରତର ବିଭିନ୍ନ ଅଂଶରେ ବ୍ୟାପିବାକୁ ଲାଗିଲା ।

**ଆସାମ:** ୧୮୩୩ରେ ଇଂରେଜମାନେ ବଳପୂର୍ବକ ଆସାମକୁ ଦଖଲ କରି ରାଜା ପୁରନ୍ଦର ସିଂହଙ୍କୁ ଗାଦିଚ୍ୟୁତ କରିଥିଲେ । କିନ୍ତୁ ତାଙ୍କର ଦେଓ୍ୱାନ ମନିରାମ ଜଣେ ଅତ୍ୟନ୍ତ ସ୍ୱାଧୀନ ଚେତା ବ୍ୟକ୍ତି ହୋଇଥିବାରୁ ସେ ସେହି ପରାଜୟକୁ ସ୍ୱୀକାର କରିପାରିନଥିଲେ । ଇଂରେଜ ଶାସନରେ ଆସାମ ଅଧିବାସୀଙ୍କୁ ଅଧିକ ଶୋଷଣ କରାଯାଉଛି ବୋଲି ସେ ସରକାରୀ କର୍ତ୍ତାମାନଙ୍କୁ ଜଣାଇଲେ ସୁଦ୍ଧା ତାହାର କୌଣସି ସୁଫଳ ହେଲା ନାହିଁ । ବରଂ ମନ୍ତ୍ରୀ ମନିରାମ ବ୍ରିଟିଶ କୋପଦୃଷ୍ଟିରେ ପଡ଼ିଥିଲେ । ସିପାହୀ ବିଦ୍ରୋହ ଆରମ୍ଭ ହେବ ବେଳେ ସେ କଲିକତା ରେ ଥିଲେ। ଏହାକୁ ଏକ ସୁଯୋଗ ମନେକରି ଆସାମର ସାମନ୍ତମାନଙ୍କୁ ଏକ ଗୋପନ ପତ୍ର ଦେଇ ସମସ୍ତେ ବିଦ୍ରୋହରେ ଯୋଗଦେବାକୁ ଆହ୍ୱାନ କରିଥିଲେ । ତାଙ୍କର ଯୋଜନା ଥିଲା ଯେ ଆସାମ ରାଜାଙ୍କ ନାତି କନ୍ଦର୍ପେଶ୍ୱର ସିଂଙ୍କ ନେତୃତ୍ୱରେ ବିଦ୍ରୋହ ଆରମ୍ଭ ହେଲେ ଆସାମର ଜନସାଧାରଣ ଓ ଆସାମରେ ଅବସ୍ଥାପିତ ସିପାହୀମାନେ ମଧ ବିଦ୍ରୋହରେ ଯୋଗ ଦେବେ । କିନ୍ତୁ ଦୁର୍ଭାଗ୍ୟବଶତଃ ମନିରାମଙ୍କର ସେହି ଗୋପନୀୟ ଚିଠି ଖଣ୍ଡିକ ଧରାପଡ଼ିଯିବାରୁ ଷଡ଼ଯନ୍ତ୍ର ଧରାପଡ଼ିଗଲା । ମଣିରାମ କଲିକତାରୁ ଧରାହେଲେ ଏବଂ ପିଆଲି ବରୁଆ ନାମକ ତାଙ୍କର ସହକର୍ମୀଙ୍କ ସହ ସେ ଫାଶୀ ପାଇଲେ । ଅନ୍ୟ କେତେକ ସନ୍ଦିଗ୍ଧ ବିଦ୍ରୋହୀ ମଧ୍ୟ ଦଣ୍ଡିତ ହେଲେ ।

**ଓଡ଼ିଶା:** ୧୮୫୭ ମହାବିଦ୍ରୋହର ୪୦ ବର୍ଷ ପୂର୍ବରୁ ହୋଇଥିବା ଖୋର୍ଦ୍ଧା ପାଇକ ବିଦ୍ରୋହ ପାଞ୍ଚ ବର୍ଷକାଳ ଓଡ଼ିଶାରେ ବ୍ରିଟିଶ ଶାସନକୁ ଦୋହଲାଇ ଦେଇଥିଲା । ତାହା ପରେ ପରେ ଓଡ଼ିଶାର ଅଧିକାଂଶ ଜମିଦାରୀ ବଙ୍ଗଭାଷୀ ଜମିଦାରଙ୍କ ହାତକୁ ଚାଲି ଯାଇଥିଲା । ତେଣୁ ଉପକୂଳ ଓଡ଼ିଶାରେ ବ୍ରିଟିଶ ବିରୋଧୀ ବିଦ୍ରୋହ ହେବାର ସମ୍ଭାବନା ନଥିଲା । କେବଳ ପୁରୀର ଚାଖୀ ଖୁଣ୍ଟିଆ ବିଦ୍ରୋହରେ ଯୋଗ ଦେଇଥିଲେ ମଧ ତାହା ମୁଖ୍ୟତଃ ଓଡ଼ିଶା ବାହାରେ ସଂଘଟିତ ହୋଇଥିଲା । ତଥାପି ଘୁମୁଷରର କନ୍ଧମାନେ ବ୍ୟାପକ ବିଦ୍ରୋହ କରି ଇଂରେଜ ସୈନ୍ୟଙ୍କର ଅଶେଷ କ୍ଷତି ସାଧନ କରିଥିଲେ । ପାରଳାଖେମୁଣ୍ଡିର ଶବରମାନେ ମଧ ବିଦ୍ରୋହ କରିଥିଲେ । ଓଡ଼ିଶାରେ ଅସଲ ସଂଗ୍ରାମ ହୋଇଥିଲା ସମ୍ବଲପୁରକୁ କେନ୍ଦ୍ରକରି ପଶ୍ଚିମ ଓଡ଼ିଶାରେ ସମ୍ବଲପୁର ରାଜଗାଦି ପାଇଁ ବୀର ସୁରେନ୍ଦ୍ର ସାଏଙ୍କ ଦାବୀକୁ ଉପେକ୍ଷା କରି ସୁରେନ୍ଦ୍ରକୁ ହଜାରୀବାଗ ଜେଲରେ ଇଂରେଜମାନେ ବନ୍ଦୀ କରିଥିଲେ । କିନ୍ତୁ ବିହାରରେ ସିପାହୀ ବିଦ୍ରୋହ ତୀବ୍ର ହୋଇ ଉଠିବାରୁ ବିଦ୍ରୋହୀମାନେ ହଜାରୀ ବାଗ ଜେଲ୍‌କୁ ଭାଙ୍ଗି ଦେଇ ସୁରେନ୍ଦ୍ର ଓ ଅନ୍ୟାନ୍ୟ ବନ୍ଦୀଙ୍କୁ ଖଲାସ କରିଦେଇଥିଲେ । ସୁରେନ୍ଦ୍ର ଓ ତାଙ୍କର ଭାଇମାନେ- ଉଜ୍ୱଳ, ଛବିଳ,

ଧ୍ରୁବ ଓ ମେଦିନୀ ପ୍ରଭୃତି ପାଞ୍ଚବର୍ଷ କାଳ ସମ୍ବଲପୁରରେ ବ୍ରିଟିଶ୍ ପ୍ରଶାସନର ଅଶେଷ କ୍ଷତି ସାଧନ କରିଥିଲେ । ତାଙ୍କର ଦାବୀକୁ ସମର୍ଥନ କରି ଛୋଟ ଛୋଟ ଜମିଦାର ଓ ଗୌନ୍ତିଆ ମାନେ ମଧ୍ୟ ବିଦ୍ରୋହରେ ଯୋଗଦାନ କରିଥିଲେ । ସେମାନଙ୍କ ମଧ୍ୟରେ ବରଗଡ଼ ଘେଁଷର ବିଂଝାଲ ସମ୍ପ୍ରଦାୟର ରାଜା ମାଧୋ ସିଂ ଓ ତାଙ୍କର ପୁତ୍ରଗଣ ଯଥା: ହାଟୀ ସିଂ, କୁଞ୍ଜଲ୍ ସିଂ, ଐରୀ ସିଂ, ବୈରୀ ସିଂ ଓ ଆତ୍ମୀୟ ସାଲିଗରାମ ବରିହା, ଗୋବିନ୍ଦ ସିଂ ପ୍ରଭୃତି ଇଂରେଜ ସୈନ୍ୟମାନଙ୍କ ସହ ପ୍ରାଣ ମୂର୍ଚ୍ଛା ସଂଗ୍ରାମ କରିଥିଲେ । ବିଖ୍ୟାତ ଇଂରେଜ ସେନାପତି ଉଡ୍‌ବ୍ରିଜ ସିଂଗୋଡ଼ା ଘାଟିରେ ମାଧୋ ସିଂଙ୍କ ଦ୍ୱାରା ନିହତ ହୋଇ ଇଂରେଜ ପ୍ରଶାସନଙ୍କୁ ଆତଙ୍କିତ କରିଦେଇଥିଲା । ଏହି ଯୁଦ୍ଧ ୧୮୬୨ ପର୍ଯ୍ୟନ୍ତ ଚାଲିଥିଲା । ଭାରତରେ ଅନ୍ୟତ୍ର ବିଦ୍ରୋହ ଦମନ ହେବାପରେ ଇଂରେଜମାନେ ସମ୍ବଲପୁର ବିଦ୍ରୋହକୁ ନିର୍ବାପିତ କରିବାକୁ ସମର୍ଥ ହୋଇଥିଲେ । ଏହି ଯୁଦ୍ଧରେ ବୀର ସୁରେନ୍ଦ୍ର ସାଏ ସପରିବାର ପୁନର୍ବାର ବନ୍ଦୀ ହୋଇ ସେହି ବନ୍ଦୀ ଶାଳାରେ ଆତ୍ମୋତ୍ସର୍ଗ କରିଥିଲେ । କିନ୍ତୁ ସ୍ୱୟଂ ମାଧୋ ସିଂ ଫାଶୀ ପାଇବା ସଙ୍ଗେ ସଙ୍ଗେ ତାଙ୍କର ବୀରପୁତ୍ର ଗଣ ମଧ୍ୟ ଫାଶୀ, ଗୁଳି ବା ଦ୍ୱୀପାନ୍ତରେ ଦଣ୍ଡରେ ସହିଦ ହୋଇଥିଲେ । ସମ୍ପୂର୍ଣ୍ଣ ଗୋଟିଏ ପରିବାର ବନ୍ଧୁ ବାନ୍ଧବଙ୍କ ସହ ଦେଶପାଇଁ ଏଭଳି ପ୍ରାଣଦାନ କରିବାର ଉଦାହରଣ ଭାରତରେ ଅନ୍ୟତ୍ର ମିଳେନା । ଭାରତର ଅନ୍ୟାନ୍ୟ ରାଜା ଜମିଦାର ନିଜ ନିଜ ହୃତ ରାଜ୍ୟ ଫେରି ପାଇବା ପାଇଁ ଯୁଦ୍ଧ କରୁଥିଲେ ମଧ୍ୟ ମାଧୋ ସିଂହ ଙ୍କ ପରିବାର ସୁରେନ୍ଦ୍ରଙ୍କ ପ୍ରତି ହୋଇଥିବା ଅନ୍ୟାୟ ବିରୁଦ୍ଧରେ ଯୁଦ୍ଧ କରି ସର୍ବସ୍ୱ ହରାଇଥିଲେ ।

ଗଞ୍ଜାମର ରାଧାକୃଷ୍ଣ ଦଣ୍ଡସେନା ମଧ୍ୟ ମହାବିଦ୍ରୋହରେ ବୀରତ୍ୱ ପ୍ରଦର୍ଶନ କରି ଇତିହାସରେ ଅମର ହୋଇ ରହିଛନ୍ତି । ଓଡ଼ିଶାର କୁଟିଆ କନ୍ଧମାନେ ବିଦ୍ରୋହରେ ଯୋଗ ଦେଇଥିଲେ ।

**ଛୋଟ ନାଗପୁର:** ବେଙ୍ଗଲ ଅନ୍ତର୍ଗତ ପାଲାମୁ, ହଜାରିବାଗ୍, ରାଞ୍ଚି, ସିଂଭୂମ୍ ଓ ମାନଭୂମ୍ ପ୍ରଭୃତିର ଶାସକ ଓ ଆଦିବାସୀ ପ୍ରଜା ସିପାହୀ ବିଦ୍ରୋହର ଅନ୍ୟତମ ନେତା କନଓ୍ୱାର ସିଂଙ୍କ ସହ ମିଶି ବିଦ୍ରୋହୀ ସିପାହୀମାନଙ୍କୁ ସାହାଯ୍ୟ କରିଥିଲେ । ପୁରୁହତ ରାଜାଙ୍କ ନେତୃତ୍ୱରେ କୋହ୍ଲ ବିଦ୍ରୋହ ବିଶେଷ ଗୁରୁତ୍ୱ ପୂର୍ଣ୍ଣ ଥିଲା ।

**ଉତ୍ତର ଭାରତ:** ବଙ୍ଗଳାରୁ ଆରମ୍ଭ କରି ପଞ୍ଜାବ ପର୍ଯ୍ୟନ୍ତ ସମଗ୍ର ଉତ୍ତର ଭାରତରେ ମହା ବିଦ୍ରୋହ ଏଭଳି ଉଗ୍ର ରୂପଧାରଣ କରିଥିଲା ଯେ ଏହାକୁ ଏକ ସ୍ୱତନ୍ତ୍ରପୂର୍ଣ୍ଣ ବିପ୍ଳବ ବୋଲି ବ୍ରିଟିଶ୍ ଐତିହାସିକମାନେ ମୁକ୍ତ କଣ୍ଠରେ ସ୍ୱୀକାର କରିଅଛନ୍ତି । ଅଯୋଧ୍ୟା, ରୋହିଲାଖଣ୍ଡ, ବୁନ୍ଦେଲଖଣ୍ଡ ଆଲ୍‌ହାବାଦ, ଆଗ୍ରା ଓ ମିରଟ ଡିଭିଜନ ତଥା ପଶ୍ଚିମ

ଡିଭିଜନରେ ଅବସ୍ଥାପିତ ସିପାହୀମାନେ ଏକ ସଙ୍ଗେ ବିଦ୍ରୋହ କରିଥିଲେ । ସିପାହୀମାନଙ୍କ ସହ ଜନସାଧାରଣ ମିଶିଯିବାରୁ ମହାବିଦ୍ରୋହ ଭୟାବହ ରୂପ ଗ୍ରହଣ କରିଥିଲା । ("The rising of the people and the Sipahis were almost simultaneous.") ସିପାହୀ ଓ ଜନବିଦ୍ରୋହ ଏକ ସଙ୍ଗେ ହୋଇଛି ।

ବିହାର: ବିହାରରେ କୌଣସି ଗୋଟିଏ ଅଞ୍ଚଳ ମଧ୍ୟ ବିଦ୍ରୋହରୁ ମୁକ୍ତ ନଥିଲା । ସାନ୍ତାଳ ପ୍ରଗନ୍ନା ରୋହିନୀରେ ଅବସ୍ଥାପିତ ସିପାହୀ ହଠାତ୍ ଗୋରା ଅଫିସରମାନଙ୍କ ଉପରେ ଅପ୍ରତ୍ୟାଶିତ ଆକ୍ରମଣ କରି ସେମାନଙ୍କୁ ନିପାତ କରିଦେବା ସଙ୍ଗେ ସଙ୍ଗେ ବିଦ୍ରୋହାଗ୍ନି ବିହାରର ସର୍ବତ୍ର ବ୍ୟାପିଗଲା । ପୁର୍ଣ୍ଣିଆରୁ ଆରମ୍ଭ କରି ଚମ୍ପାରଣ, ସାହାବାଦ, ପାଟନା ଓ ଗୟା ପ୍ରଭୃତି ସ୍ଥାନରେ ଥିବା ସିପାହୀମାନେ ଏକ ସଙ୍ଗେ ବିଦ୍ରୋହ ଘୋଷଣା କରିଥିଲେ ।

ବିହାର ବିଦ୍ରୋହର ଆଉ ଏକ ବିଶେଷତ୍ୱ ଥିଲା ଯେ ହିନ୍ଦୁ ଓ ମୁସଲମାନ ସମସ୍ତ ଭେଦଭାବ ଭୁଲି କାନ୍ଧକୁ କାନ୍ଧ ମିଳାଇ ବିଦେଶୀ ଶକ୍ତି ବିରୁଦ୍ଧରେ ଲଢ଼ିଥିଲେ । ତାହା ବ୍ରିଟିଶ୍ ଶକ୍ତିକୁ ସ୍ତମ୍ଭୀଭୂତ କରି ଦେଇଥିଲା । କେବଳ ବିହାର ନୁହେଁ ସମଗ୍ର ଉତ୍ତର ଭାରତରେ ଉଭୟ ସମ୍ପ୍ରଦାୟ ଏକ ଭାରତୀୟ ଜାତି ଭାବରେ ଲଢ଼ିଥିଲେ ।

କାର୍ଲମାର୍କ୍ସ କହିଥିଲେ ''ବ୍ରାହ୍ମଣ ମଙ୍ଗଳ ପାଣ୍ଡେ ଠାରୁ ଆରମ୍ଭ ହୋଇଥିବା ମହାବିଦ୍ରୋହର ନେତା ହେଲେ ମୋଗଲ ସମ୍ରାଟ ବାହାଦୂର ସାହା ଜାଫର'' । କିନ୍ତୁ ସେତିକି ନୁହେଁ ଏକାବେଳକେ ନିମ୍ନସ୍ତରରେ ଥିବା ହିନ୍ଦୁ ପୁରୋହିତ ଓ ମୁସଲମାନ ମୌଲବୀମାନେ ମଧ୍ୟ ମହାବିଦ୍ରୋହରେ ନିଜ ନିଜର ଭୂମିକା ଚରମ ସଫଳତା ସହକାରେ ସମ୍ପନ୍ନ କରିଥିଲେ । ବିହାରର ପୀରଅଲ୍ଲୀ, ୟୁସୁଫ୍ ଅଲ୍ଲୀ, ଇମାଜଜ୍ ଇନ ପ୍ରଭୃତି ମଧ୍ୟ ବୀର 'କନଓ୍ୱାର' ସିଂଙ୍କ ସହ ମିଶି ବିଦ୍ରୋହୀ ସିପାହୀମାନଙ୍କର ନେତୃତ୍ୱ ନେଇଥିଲେ । କନଓ୍ୱାରଙ୍କର ଅଦମ୍ୟ ସାହସ, ଯୁଦ୍ଧକୌଶଳ ଓ ସିପାହୀମାନଙ୍କ ଭିତରେ ତାଙ୍କର ଲୋକପ୍ରିୟତା ଦୃଷ୍ଟିରୁ ସେ ବିଦେଶୀସୈନ୍ୟମାନଙ୍କ ବିରୁଦ୍ଧରେ ସଫଳ ଅଭିଯାନ କରିପାରିଥିଲେ । ତାଙ୍କର ଯୁଦ୍ଧକ୍ଷେତ୍ର ରେଓ୍ୱା, ବନ୍ଦା ଓ କଳ୍ପି ପର୍ଯ୍ୟନ୍ତ ପରିବ୍ୟାପ୍ତ ହୋଇଥିଲା । କାନପୁରରେ ବିଦ୍ରୋହର ଅନ୍ୟତମ ପ୍ରଖ୍ୟାତ ନେତା ନାନା ସାହେବଙ୍କୁ ମଧ୍ୟ କନ୍ଓ୍ୱାରଙ୍କ ସୈନ୍ୟମାନେ ସହାୟତା କରିଥିଲେ । ଏପରିକି ସେ ଲକ୍ଷ୍ନୌ ପର୍ଯ୍ୟନ୍ତ ମଧ୍ୟ ମାଡ଼ିଯାଇଥିଲେ । ତା'ପରେ ସେ ଫେରିଆସିଥିଲେ ବିହାର ଏବଂ ସେଠାରେ ବ୍ରିଟିଶ ସୈନ୍ୟ ବିରୁଦ୍ଧରେ ଲଢୁଥିବା ବେଳେ ୧୯୫୮ ଏପ୍ରିଲ୍ ମାସରେ ସହୀଦ ହେଲେ ।

ଦିଲ୍ଲୀ: ଏହା ଉଲ୍ଲେଖ କରିବା ନିଷ୍ପ୍ରୟୋଜନ ଯେ ୧୮୫୭ ମଇ ୧୦ ତାରିଖରେ ମିରଟର ବିଦ୍ରୋହୀ ସିପାହୀମାନେ ବିଜୟ ଦର୍ପରେ ଦିଲ୍ଲୀଠାରେ ପହଞ୍ଚିବା ସମୟଠାରୁ ସମଗ୍ରଦେଶର ରାଜନୈତିକ ପରିସ୍ଥିତି ସମ୍ପୂର୍ଣ୍ଣ ବଦଳିଯାଇଥିଲା । ଦିଲ୍ଲୀ ଥିଲା ମୋଗଲ

ଭାରତର ରାଜଧାନୀ ଓ କେନ୍ଦ୍ର ସ୍ଥଳ । ଦିଲ୍ଲୀରେ ଅବସ୍ଥିତ ଲାଲକିଲ୍ଲା ଥିଲା ସମ୍ରାଟଙ୍କର ବାସସ୍ଥାନ । ସେ ନାମକୁ ମାତ୍ର ସମ୍ରାଟ ଥିଲେ ମଧ୍ୟ ସମଗ୍ର ଦେଶରେ ସେ ଥିଲେ ଏକତାର ପ୍ରତୀକ । ଇଷ୍ଟ ଇଣ୍ଡିଆ କମ୍ପାନୀ ଭାରତରେ ବାଣିଜ୍ୟ କରିବା ଅଧିକାର ପାଇବା ପାଇଁ ମୋଗଲ ସମ୍ରାଟ ଜାହାଙ୍ଗୀରଙ୍କଠାରେ କେତେ ତୋଷାମଦ କରି ଓ ମୂଲ୍ୟବାନ ଉପଢୌକନ ଦେଇ ଅନୁମତି ଲାଭ କରିଥିଲେ । ଶହେ ବର୍ଷ ଭିତରେ ନାନାଦି କୁଟଚକ୍ରାନ୍ତ ଓ ସୈନ୍ୟବଳ ସାହାଯ୍ୟରେ ସେହି ଇଷ୍ଟ ଇଣ୍ଡିଆ କମ୍ପାନୀ ଦେଶର ସର୍ବେସର୍ବା ହୋଇଥିଲା । ମହାଶକ୍ତିଶାଳୀ ସେହି ମୋଗଲ ସମ୍ରାଟଙ୍କର ଉତ୍ତରାଧିକାରୀ ବାହାଦୂର ସାହା ଜାଫର ପାଲଟିଥିଲେ ନଖଦନ୍ତ ହୀନ ପଶୁରାଜ ସିଂହ ଭଳି ଦୁର୍ବଳ ଓ କମ୍ପାନୀର ଅନୁଗ୍ରହ ପ୍ରାର୍ଥୀ । ତେଣୁ ମିରଠର ବିଦ୍ରୋହୀ ସିପାହୀମାନେ ବିଦ୍ରୋହର ନେତୃତ୍ୱ ନେବାକୁ ଯେତେବେଳେ ତାଙ୍କୁ ଅନୁରୋଧ କଲେ, ସେ ପ୍ରଥମେ ଅନିଚ୍ଛୁକ ଥିଲେ ମଧ୍ୟ ସିପାହୀ ମାନଙ୍କର ବାଧ୍ୟ ବାଧକତାରେ ସେହି ନେତୃତ୍ୱ ଗ୍ରହଣ କଲେ । ସ୍ୱୟଂ ମୋଗଲ ସମ୍ରାଟ ସିପାହୀ ବିଦ୍ରୋହର ନେତୃତ୍ୱ ନେବା ସମ୍ବାଦ ବିଦ୍ୟୁତ୍ ଗତିରେ ସମଗ୍ର ଦେଶରେ ପ୍ରଚାରିତ ହୋଇଗଲା । ଇଂରେଜମାନଙ୍କ କୁଟନୀତି ଓ ବିଶ୍ୱାସଘାତକତା ଯୋଗୁଁ ଶକ୍ତିହୀନ ଓ କ୍ଷମତା ଶୂନ୍ୟ ମୋଗଲ ସମ୍ରାଟ ହଠାତ୍ ଯେମିତି ସାରା ଭାରତର ସେହି ସର୍ବଶକ୍ତିମାନ ସମ୍ରାଟରେ ପରିଣତ ହୋଇଗଲେ । ତେଣୁ କେବଳ ବିଦ୍ରୋହୀ ସିପାହୀ ନୁହନ୍ତି, ଅପାମର ଜନତା ଓ କ୍ଷମତାଚ୍ୟୁତ ରାଜା-ଜମିଦାର ମାନେ ମଧ୍ୟ ବିଦ୍ରୋହକୁ ଯୋଗ ଦେଲେ । ସମଗ୍ର ଦିଲ୍ଲୀ ସହରରୁ ବ୍ରିଟିଶ ଶାସନ ଲୋପ ପାଇଁ ମୋଗଲ ଶାସନ ପ୍ରବର୍ତ୍ତିତ ହେଲା, ଏହା ସମଗ୍ର ସିପାହୀ ବିଦ୍ରୋହର ମୌଳିକ ଓ ଗୁଣାତ୍ମକ ପରିବର୍ତ୍ତନ ଆଣିଦେଲା ।

ବ୍ରିଟିଶ ସୈନ୍ୟ ବାହିନୀର ଅଧିକାଂଶ ସିପାହୀ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶରୁ ଆରମ୍ଭ କରି ଅଯୋଧ୍ୟା ପର୍ଯ୍ୟନ୍ତ ପରିବ୍ୟାପ୍ତ ଅଞ୍ଚଳର ଅଧିବାସୀ ଥିଲେ । ଆଠ ଡିଭିଜନ ସିପାହୀ ସେହି ଅଞ୍ଚଳରେ ଅବସ୍ଥାପିତ ହୋଇଥିଲେ । ଦିଲ୍ଲୀର ନିକଟବର୍ତ୍ତୀ ହୋଇଥିବାରୁ ମୋଗଲ ସମ୍ରାଟଙ୍କ ନେତୃତ୍ୱର ପ୍ରଭାବ ସେମାନଙ୍କ ଉପରେ ବିଶେଷ ପଡ଼ିଥିଲା । ତେଣୁ ପ୍ରାୟ ସର୍ବତ୍ର ବିଦ୍ରୋହର ନହବତ ବାଜି ଉଠିଲା । ବ୍ରିଟିଶ ସେନାପତି ମେଟକାଫଙ୍କ ହିସାବ ଅନୁସାରେ କେବଳ ଦିଲ୍ଲୀ ସହରରେ ୪୦ ରୁ ୬୦ ହଜାର ସୈନ୍ୟ ବିଦ୍ରୋହୀ ହୋଇଥିଲେ । କାନପୁରରେ ନାନା ସାହେବଙ୍କ ଅଧୀନରେ ୫୮ ହଜାର ବିଦ୍ରୋହୀ, ଖାଁ ବାହାଦୂର ଖାଁ ଅଧୀନରେ ୪୦ ହଜାର ଓ ରାଣା ବେଣୀ ମାଧୋ ସିଂଙ୍କର ବ୍ୟକ୍ତିଗତ ସୈନ୍ୟ ସଂଖ୍ୟା ଥିଲେ ୧୫ ହଜାର । ଗୋରଖପୁରରେ ଗଦାଧର ସିଂଙ୍କୁ ୫୧ ହଜାର ବିଦ୍ରୋହୀ ସେନା ନେତା ଭାବରେ ସ୍ୱୀକାର କରିଥିଲେ । ମୋଟରେ ପ୍ରାୟ ପାଞ୍ଚ ଲକ୍ଷ ବିଦ୍ରୋହୀ ସିପାହୀ ଯେ ବ୍ରିଟିଶ ଶାସନ ବିରୁଦ୍ଧରେ ଲଢୁଥିଲେ, ସେଥିରେ କୌଣସି ଅତିରଞ୍ଜନ ନଥିଲା ।

ବିଦ୍ରୋହୀମାନଙ୍କ ଦ୍ୱାରା ଦିଲ୍ଲୀ ଦଖଲ ହେବା ପରେ ତାହାର ପ୍ରଭାବ ସର୍ବପ୍ରଥମେ ପ୍ରତିବେଶୀ ବାଗ ପେଟ ଓ ସାରାଧାନରେ ପଡ଼ିଲା । ରୁର୍କୀ ମଧ ମଇ ୧୩ ତାରିଖରେ ଦଖଲ ହେଲା । ସେଠାରେ ଜନୈକ ମୋଗଲ ସାମନ୍ତଙ୍କୁ ଶାସନ କର୍ତ୍ତା ଭାବେ ନିଯୁକ୍ତ କରାଯାଇଥିଲା । ବୁଲନ୍ଦର ମୁଜାଫରପୁର, ସାହାରନପୁର, ଆଲିଗଡ଼, ତାହା ପରେ ପରେ ବିଦ୍ରୋହୀ ମାନେ ଦଖଲ କଲେ । ଖାଁ ବାହାଦୁର ଖାଁ ରୋହିଲାଖଣ୍ଡର ଶାସକ ନିଯୁକ୍ତ ହୋଇଥିଲେ ! ବରେଲି, ରାମପୁର, ମୋରଦାବାଦ, ଅମରୋହ, ବିଜନୁର, ବଦାୟକ, ସାହାଜାହାନପୁରରୁ ମଧ ବ୍ରିଟିଶ୍ ଶାସନ ଲୋପ ପାଇଲା । ଫରୁକାବାଦ, ଫତେପୁର ଓ ସୀତାପୁରରେ ବିଦ୍ରୋହୀ ସିପାହୀମାନେ ସ୍ୱାଧୀନ ସରକାର ପ୍ରତିଷ୍ଠା କଲେ ।

ଆଗ୍ରା ଡିଭିଜନରେ ଲେଫ୍ଟନାଣ୍ଟ ଗଭର୍ଣ୍ଣର ଡିଭିଜନର ଆଗ୍ରା, ମଥୁରା, ଏଟଓ୍ୱା ଓ ମୈନିପୁରରେ ଥିବା ସିପାହୀମାନେ ବିଦ୍ରୋହ କରିବା ସମ୍ବାଦ ପାଇ ସେ ଆଗ୍ରାଫୋଟ ଭିତରେ ଆଃଶ୍ରୟ ନେଇଥିଲେ ମଧ ସେଠାରେ ମଧ ସେ ତିଷ୍ଠି ପାରିଲା ନାହିଁ । ଜୁନ ମାସରେ ଆଲ୍ହାବାଦ୍ ବିଦ୍ରୋହୀମାନଙ୍କ ଦଖଲକୁ ଆସିଲା ତାହାର ପ୍ରଭାବରେ ଫତେପୁରା ବନ୍ଧ ହମୀରପୁର ମଧ ବିଦ୍ରୋହରେ ଯୋଗଦେଲେ ।

କାନପୁର ମହାବିଦ୍ରୋହରେ ଗୁରୁତ୍ୱ ପୂର୍ଣ୍ଣ ସ୍ଥାନ ଅଧିକାର କରିଛି । ଗାଦିଚ୍ୟୁତ ପେଶ୍ୱା ନାନା ସାହେବଙ୍କ ରହଣୀ ସ୍ଥାନ ହୋଇଥିବାରୁ କାନପୁର ବିଦ୍ରୋହ ଉଲ୍ଲେଖ ଯୋଗ୍ୟ ଅଟେ । ସେଠାରେ ଅବସ୍ଥାପିତ କମ୍ପାନୀର ଗୋଟାଏ ପୁରା ଡିଭିଜନ ସୈନ୍ୟ ବିଦ୍ରୋହ କରି ସରକାରୀ ଟ୍ରେଜେରୀ ଓ ଅସ୍ତ୍ରାଗାର ଲୁଣ୍ଠନ କରିଥିଲେ, ବ୍ରିଟିଶ ସୈନ୍ୟ ବାହିନୀ ଆତ୍ମ ସମର୍ପଣ କଲେ । ଏବଂ ନାନା ସାହେବ ପେଶ୍ୱା ଭାବରେ ଘୋଷଣା କରାଯାଇଥିଲା ।

ଝାନ୍ସୀ ରାଜା ଗଙ୍ଗାଧର ରାଓ ଅପୁତ୍ରିକ ହୋଇ ମୃତ୍ୟୁବରଣ କରିବା ପରେ କମ୍ପାନୀ ଝାନ୍ସୀକୁ ଦଖଲ କଲେ । ସେହି ଦିନଠାରୁ ଝାନ୍ସୀ ରାଣୀ ଲକ୍ଷ୍ମୀବାଈ ଅତ୍ୟନ୍ତ କ୍ଷୁବ୍ଧ ହୋଇ ରହିଥିଲେ । କିନ୍ତୁ ଦିନକୁ ଦିନ କମ୍ପାନୀ କର୍ମଚାରୀମାନେ ରାଜ ପରିବାର ସହ ଓ ରାଜ ପ୍ରାସାଦରେ ବହୁ ଅନୀତି ଓ ଧର୍ମବିରୋଧୀ କାର୍ଯ୍ୟ କରିବାରୁ ଝାନସୀରେ ଅବସ୍ଥାପିତ ସିପାହୀମାନେ ବିଦ୍ରୋହ ଘୋଷଣା କଲେ । ଲକ୍ଷ୍ମୀବାଈ ସେମାନଙ୍କୁ ନେତୃତ୍ୱ ଦେବାରୁ ବିଦ୍ରୋହାଗ୍ନି ପ୍ରଜ୍ୱଳିତ ହେବାକୁ ଲାଗିଲା । ରାଣୀ ସ୍ୱୟଂ ଅଶ୍ୱାରୋହଣ କରି ସୈନ୍ୟମାନଙ୍କ ସହ ବ୍ରିଟିଶ ଫୌଜ ବିରୁଦ୍ଧରେ ଅସ୍ତ୍ରଚାଳନା କରୁଥିଲେ । ସୌଭାଗ୍ୟତଃ ସେହି ଯୁଦ୍ଧ କ୍ଷେତ୍ରରେ ତାଙ୍କର ମୃତ୍ୟୁ ହେଲା । ଶତ୍ରୁ ପକ୍ଷ ତାଙ୍କୁ ଜୀବନ୍ତ ଧରି ପାରିଲେ ନାହିଁ । ବନ୍ଦାର ନବାବଙ୍କର ମଧ ସେହି ଅବସ୍ଥା ହେଲା । ଝାନ୍ସୀ ପୁନର୍ଦଖଲ ହେଲା ।

ବାରଣାସୀ: ଏହା କେବଳ ହିନ୍ଦୁମାନଙ୍କ ପ୍ରଧାନ ତୀର୍ଥସ୍ଥାନ ନଥିଲା, ଏଠାରେ ମୋଗଲ ନବାବଙ୍କ ପରିବାରର ବହୁ ଲୋକ ବାସ କରୁଥିଲେ । ତଥାପି ଏଠାରେ ବିଦ୍ରୋହ

ଉତ୍‌ଥାନ ପତନ ଭିତରେ ଗତି କରି ଶେଷରେ ବିଦ୍ରୋହୀ ଜୟଯୁକ୍ତ ହୋଇଥିଲେ । ଆଜାମଗଡ଼, ଦାଉନପୁର, ଶିଖ ରେଜିମେଣ୍ଟ ବିଦ୍ରୋହରେ ଯୋଗ ଦେବାରୁ ବିଦ୍ରୋହ ଯେମିତି ତେଜି ଉଠିଥିଲା, ଗୁର୍ଖା ରେଜିମେଣ୍ଟ ସରକାରୀ ପକ୍ଷକୁ ଚାଲିଯିବାରୁ ତାହା ସ୍ତିମୀତ ହୋଇଯାଇଥିଲା । ଶେଷ ସୁଦ୍ଧା କମ୍ପାନୀ ସୈନ୍ୟମାନେ ବାଧ ହୋଇ ଗାଜିପୁର ପରିତ୍ୟାଗ କରିଥିଲେ ।

ଅଯୋଧା ବେଗମ୍ ହଜରତ ମଲ- ଝାନ୍‌ସୀ ରାଣୀ ଲକ୍ଷ୍ମୀବାଈଙ୍କ ଭଳି ଅଯୋଧାର ବେଗମ୍ ମଧ ମହାବିଦ୍ରୋହରେ ଅପରିସୀମ ଧୈର୍ଯ୍ୟ ଓ ସାହସ ପ୍ରଦର୍ଶନ କରି ମହାବିଦ୍ରୋହର ଇତିହାସରେ ଅବିସ୍ମରଣୀୟ ହୋଇ ରହି ଅଛନ୍ତି । ଅଯୋଧାର ନାବାଳକ ନବାବଙ୍କୁ ଗ୍ରହଣ ନକରି କମ୍ପାନୀ ଅଯୋଧାକୁ ଅତିଶୟ ଅନ୍ୟାୟ ଭାବରେ ଦଖଲ କରିଥିବାରୁ ସମଗ୍ର ଦେଶବାସୀ ସେଥିରେ କ୍ଷୁବ୍ଧ ହୋଇଥିଲେ । କୁଶାସନ ଅଭିଯୋଗରେ ନବାବଙ୍କୁ ନିର୍ବାସନ ଦେବା ଓ ତାଙ୍କର ଉତ୍ତରାଧିକାରୀଙ୍କୁ ସ୍ୱୀକାର ନକରିବା ଭଳି ଅନ୍ୟାୟ କିଏ କାହିଁକି ସହ୍ୟ କରିବ । ନାନା ସାହେବ ଓ ଅଜିମୁଲ୍ଲା ସାହା ପ୍ରଭୃତି ସାରା ଅଯୋଧାରେ ‘ବିଦ୍ରୋହ’ର ପ୍ରଚାର କଲେ । ମଇ ଶେଷ ସପ୍ତାହରେ ଅଯୋଧାରେ ବିଦ୍ରୋହ ଆରମ୍ଭ ହେଲା । ସୀତାପୁର, ମହମଦୀ, ଲକ୍ଷ୍ମୀପୁର କ୍ଷେତ୍ରୀ, ଫୌଜାବାଦ, ବାରହାଡି, ମୁଲତାନ୍‌ପୁର ଓ ଗୋନ୍ଦାରେ ପ୍ରବଳ ବିଦ୍ରୋହ ଲାଗିଲା ।

ଏଣେ ବେଗମ୍ ନିଜର ନାବାଳକ ପୁତ୍ରକୁ ନବାବ ବୋଲି ଘୋଷଣା କରି ନିଜେ ବୁଲି ବୁଲି ବିଦ୍ରୋହୀ ସେନାଙ୍କୁ ଉଦ୍‌ବୁଦ୍ଧ କଲେ । କିନ୍ତୁ ଇଂରେଜ ସେନାପତିମାନେ ଅଯୋଧା ଦୁର୍ଗ ଭିତରେ ଏଭଳି ସୁସଜ୍ଜିତ ହୋଇ ରହିଥିଲେ ଯେ ବିଦ୍ରୋହୀମାନେ ତା ଭିତରକୁ ଯାଇପାରିଲେ ନାହିଁ, ତେଣୁ ଦୁର୍ଗକୁ ଅବରୋଧ କରିରଖାଗଲା, ଯେପରିକି ବାହାରୁ ବ୍ରିଟିଶ ସୈନ୍ୟ ନ ଆସନ୍ତି ଏବଂ ଖାଦ୍ୟାଭାବରୁ ଅବରୁଦ୍ଧ ବ୍ରିଟିଶ୍ ସୈନ୍ୟମାନେ ମୃତ୍ୟୁବରଣ କରନ୍ତି । ଏହିଭଳି ଭାବରେ ୧୮୫୭ ଜୁନ୍ ମାସରୁ ୧୮୫୮ ମାର୍ଚ୍ଚ ପର୍ଯ୍ୟନ୍ତ ଦୁର୍ଗ ଅବରୋଧ ହେଲା । ଦୁର୍ଗ ଭିତରେ ଥିବା ବ୍ରିଟିଶ୍ ସୈନ୍ୟମାନେ ଅସୀମ ସାହସ ଓ ଅର୍ଦ୍ଧାହାରରେ ରହି ସୁଦ୍ଧା ଆତ୍ମସମର୍ପଣ କରି ନଥିଲେ । ମାର୍ଚ୍ଚ ୩୧ରେ ବାହାରୁ ବ୍ରିଟିଶ୍ ସୈନ୍ୟମାନେ ଅଯୋଧାକୁ ପୁନର୍ଦଖଲ କଲେ ବେଗମ୍ ହଜରତ ଯୋଦ୍ଧା ବେଶରେ ନେପାଳକୁ ଚାଲିଗଲେ ବିଦ୍ରୋହ ଦବିଗଲା ।

**ପଞ୍ଜାବ:** ବୀର ଓ ସ୍ୱାଧୀନତା ପ୍ରିୟ ଜାତି ଭାବରେ ପରିଚିତ ପଞ୍ଜାବୀମାନେ ଯେ ‘ମହାବିଦ୍ରୋହ’ରେ ଯଥୋପଯୁକ୍ତ ବୀରତ୍ୱ ପ୍ରଦର୍ଶନ କରିପାରିଲେ ନାହିଁ, ତାହା ଭାରତ ଇତିହାସରେ ଏକ ବେଦନାଦାୟକ ଅଧ୍ୟାୟ । ବରଂ ଅପେକ୍ଷାକୃତ ଅଧିକ ସଂଖ୍ୟକ ପଞ୍ଜାବୀ ସୈନ୍ୟ ବିଦେଶୀ ଦସ୍ୟୁମାନଙ୍କୁ ସୁରକ୍ଷା ପ୍ରଦାନ କରିଥିଲେ ।

ମିରଟ୍ ବିଦ୍ରୋହ ଓ ଦିଲ୍ଲୀର ଘଟଣାବଳୀ ପଞ୍ଜାବରେ ଯଥା ସମୟରେ ପହଞ୍ଚିଥିଲେ ମଧ୍ୟ ସେଠାକାର ଅବସ୍ଥାପିତ ଭାରତୀୟ ସୈନ୍ୟମାନଙ୍କ ଭିତରେ କୌଣସି ଅସନ୍ତୋଷର ସୂଚନା ମିଳିନଥିଲା । ଏକେତ ପଞ୍ଜାବରାଜା ରଣଜିତ୍ ସିଂହଙ୍କୁ ପରାସ୍ତ କରି ପଞ୍ଜାବକୁ ଇଂରେଜ ସାମ୍ରାଜ୍ୟଭୁକ୍ତ କରିବା ବିଦ୍ରୋହର ଅଳ୍ପ କିଛି ଦିନ ପୂର୍ବରୁ ଘଟିଥିଲା । ରାଜା ଏବଂ ବୀରଶିଖ ସୈନ୍ୟମାନେ ଯୁଦ୍ଧରେ ପରାଜିତ ହୋଇ ନୈତିକ ବଳ ହରାଇ ସାରିଥିଲେ । ବିଦ୍ରୋହ ପ୍ରବଣ ଆଫଗାନ ବା ସେଠାକାର ଆଦିବାସୀମାନଙ୍କ ମନୋଭାବ ମଧ୍ୟ ବିଦ୍ରୋହ ସପକ୍ଷରେ ନଥିଲା । ସାମନ୍ତ ଶିଖମାନେ ମଧ୍ୟ କୌଣସି ନୂଆ ବିପଦକୁ ମୁଣ୍ଡକୁ ଆଣିବାକୁ ଚାହୁଁ ନଥିଲେ । ଛଟେଇ ହୋଇଥିବା ଶିଖମାନଙ୍କର କେହି ବେଶୀ ନଥିଲେ । ସେହି ପରିସ୍ଥିତିର ସୁଯୋଗ ନେଇ ଦକ୍ଷ ବ୍ରିଟିଶ ପ୍ରଶାସକମାନେ ଅନୁଗତ ସିପାହୀମାନଙ୍କୁ ଅଧିକ ଅନୁଗତ କରିବାକୁ ଲାଗିଲେ । ଆଫଗାନ୍ ଶାସକ ଦୋସ୍ତ ମହମ୍ମଦଙ୍କୁ ପ୍ରଚୁର ସୁନା ଲାଞ୍ଚ ଦେଇ ନୀରବ କରିଦିଆ ଯାଇଥିଲା । ମିଆଁମୀର, ଫିଲର, ଗୋବିନ୍ଦଗଡ଼, ଫରୋଜପୁର, ଜଳନ୍ଧର ଓ କାଙ୍ଗ୍ରା ପ୍ରଭୃତିରେ ସେବା ସନ୍ଦିଗ୍ଧ ସିପାହୀମାନଙ୍କୁ ନିରସ୍ତ୍ର କରିଦିଆଗଲା । ସେମାନଙ୍କ ମଧ୍ୟରୁ କେତେକ ସିପାହୀ ଦିଲ୍ଲୀ ଯାଉଥିବା ବେଳେ ସେମାନଙ୍କୁ କମ୍ପାନୀ ସୈନ୍ୟମାନେ ହତ୍ୟା କରିଥିଲେ । କୁଲୁ ଉପତ୍ୟକା ରାଜା ପ୍ରତାପ ସିଂ ଓ ତାଙ୍କ ଭାଇ ବିଦ୍ରୋହ ଘୋଷଣା କରି ମଧ୍ୟ ଶତ୍ରୁପକ୍ଷ ଦ୍ୱାରା ନିହତ ହେଲେ । ୧୪ ନମ୍ବର ନେଟିଭ୍ ଇନ୍‌ଫାଣ୍ଟ୍ରି, ୪୬ ନମ୍ବର ସିଆଲକୋଟ ଓ ୨୬ ନମ୍ବର ମିଆଁମୀର ରେଜିମେଣ୍ଟ ବିଦ୍ରୋହ କରିଥିଲେ ମଧ୍ୟ ପରାସ୍ତ ହୋଇଥିଲା । ଖାଟିଶ୍, ଖୁରାଲ, ହୁଟ୍ଟୁ, ଫତୱାନ୍ ଏବଂ ଅନ୍ୟାନ୍ୟ ମୁଲ୍ଲୁ ଉପଜାତି ଭାବଲପୁର ଓ ଫିରୋଜପୁର ଅସ୍ତ୍ରାଗାରରୁ ଅସ୍ତ୍ର ଆଣି ବିଦ୍ରୋହରେ ଯୋଗ ଦେଇ ବ୍ରିଟିଶ ପକ୍ଷର ବହୁ ସୈନ୍ୟ ମାରିଥିଲେ ମଧ୍ୟ ଶେଷରେ ସେମାନେ ପରାଜିତ ହୋଇ ମରୁପ୍ରଦେଶକୁ ପଳାଇଲେ କିନ୍ତୁ ବ୍ରିଟିଶ ପ୍ରତିରୋଧରୁ ରକ୍ଷା ହୋଇପାରିଲେ ନାହିଁ । ଏହିଭଳି ଭାବରେ ବୀର ପଞ୍ଜାବୀ ଜାତି 'ମହାବିଦ୍ରୋହ'ରେ କୌଣସି ଉଲ୍ଲେଖ ଯୋଗ୍ୟ ବୀରତ୍ୱ ଦେଖାଇ ପାରିଲେ ନାହିଁ ।

ଇଂରେଜମାନଙ୍କ ଦ୍ୱାରା ସିନ୍ଧୁପ୍ରଦେଶର ଅମୀର ଗାଦିଚ୍ୟୁତ ହୋଇଥିବାରୁ ଜନସାଧାରଣ ଓ ସାମନ୍ତମାନଙ୍କ ବ୍ରିଟିଶ ଜାତି ବିରୁଦ୍ଧରେ ବିଦ୍ରୋହ ଖୁବ୍ ତୀବ୍ର ହୋଇ ଉଠିଥିଲା । ସାହଜାଦା ପୀର ମହମ୍ମଦ, ଓ ଇମାମ୍ ବକ୍ସ ପ୍ରଭୃତିଙ୍କ ନେତୃତ୍ୱରେ ସିପାହୀ ସେଠାରେ ବିଦ୍ରୋହ କରିଥିଲେ ସୁଦ୍ଧା କମ୍ପାନୀ ସରକାର ସେହି ବିଦ୍ରୋହକୁ ନିର୍ମମ ଭାବରେ ଦମନ କରି ଦେଇଥିଲେ ।

**ରାଜସ୍ଥାନ:** ଅଷ୍ଟାଦଶ ଶତାବ୍ଦୀରେ ରାଜପୁତନାର ରାଜପୁତମାନେ ପରସ୍ପର ଭିତରେ ଯୁଦ୍ଧରେ ବ୍ୟାପୃତ ହୋଇ ଖଣ୍ଡ ଖଣ୍ଡ ହୋଇଯାଇଥିଲେ, ବ୍ରିଟିଶ ଶାସକମାନେ ମଧ୍ୟ ସେମାନଙ୍କ ମଧ୍ୟରେ ସର୍ବଦା କଳହ ଲଗାଇ ରଖିଥିବାରୁ ବ୍ରିଟିଶ ବିରୁଦ୍ଧରେ ଏକତ୍ର ଲଢ଼ିବା ସମ୍ଭବ ନଥିଲା । ଆଜମୀରରେ କମ୍ପାନୀର ଯେଉଁ ବିଶାଳ ଅସ୍ତ୍ରାଗାର ଥିଲା ତାହାର ଜଗୁଆଳି

ଥିଲେ ଭାରତୀୟ ସିପାହୀ । ମିରଠ୍ ବିଦ୍ରୋହ ସମ୍ବାଦ ସେଠାରେ ପହଞ୍ଚିବାରୁ ବିଦ୍ରୋହ ଆରମ୍ଭ ହୋଇଥିଲା । ନାସିରାବାଦ ଓ ନିମଚ୍‌ରେ ବିଦ୍ରୋହ ଲାଗିଗଲା । ସେମାନେ ସାହାବାଦ ଫିରୋଜ ସାହା ମାଳାସହର ଦଖଲ କରିଥିଲେ କିନ୍ତୁ ମୁଖ୍ୟ ଲଢ଼େଇ ହୋଇଥିଲା, ଯୋଧପୁର ଅନ୍ତର୍ଗତ ଏଡ୍‌ଓ୍ୱା ଓ ଏଓ୍ୱାରେ । ଗୁଲାର, ରୂପନଗର ପ୍ରଭୃତିରେ ବିଦ୍ରୋହୀ ମାନେ ଯୋଧପୁର ମହାରାଜାଙ୍କ ସୈନ୍ୟମାନଙ୍କୁ ପରାସ୍ତକରି ଦିଲ୍ଲୀ ଅଭିମୁଖେ ଯାତ୍ରା କରିଥିଲେ । ସେହିପରି ଅସରଗଡ଼ ବର୍‌ହାନପୁରରେ ମଧ ବିଦ୍ରୋହ ହୋଇଥିଲା । କୋଲାପୁର ଓ ବେଲଗାଓରେ ବିଦ୍ରୋହ ତୀବ୍ର ହୋଇଥିଲା । କିନ୍ତୁ ଶେଷ ସୁଦ୍ଧା ତାହା ଦମନ କରାଯାଇଥିଲା ।

ଦକ୍ଷିଣ ଭାରତରେ ମଧ ବିଦ୍ରୋହର ନିଆଁ ଜଳି ଉଠିଥିଲା ଅବଶ୍ୟ ମାନ୍ଦ୍ରାଜରେ ଥିବା ଭାରତୀୟ ସୈନ୍ୟବାହିନୀ ଅଧିକାଂଶ ନିମ୍ନ ଓ ଦଳିତ ସମ୍ପ୍ରଦାୟର ହୋଇଥିବାରୁ ସେମାନେ ଧର୍ମ ଯୁଦ୍ଧର ଗୁରୁତ୍ୱ ବୁଝି ନଥିଲେ । ଅବଶ୍ୟ ହାଇଦ୍ରାବାଦ ଓ ମହିଶୁରରେ ମୁସଲମାନମାନେ ବହୁସଂଖ୍ୟାରେ ବାସ କରୁଥିବାରୁ ସେମାନଙ୍କ ଭିତରେ ବିଦ୍ରୋହଭାବ ବିଶେଷ ଭାବେ ପ୍ରକାଶିତ ହୋଇଥିଲା ଏବଂ ଦିଲ୍ଲୀରେ ମୋଗଲ ବାଦଶାହ ବିଦ୍ରୋହର ନେତୃତ୍ୱ ନେବାରୁ ଦକ୍ଷିଣ ଭାରତର ମୁସଲମାନ ସିପାହୀମାନେ ମାତି ଉଠିଲେ । ହିନ୍ଦୁ ସିପାହୀ ମଧ ପଛରେ ପଡ଼ି ନଥିଲେ । କିନ୍ତୁ ମାନ୍ଦ୍ରାଜ ସରକାର ୧୪ ନମ୍ବର ରେଗୁଲେସନ ଘୋଷଣାକରି ବିଦ୍ରୋହୀମାନଙ୍କୁ କୋର୍ଟ ମାର୍ସାଲ ଓ ସଂକ୍ଷିପ୍ତ ବିଚାରରେ ଅଧିକାଂଶଙ୍କୁ ପ୍ରାଣଦଣ୍ଡ ଦେଇ ବିଦ୍ରୋହାଗ୍ନିକୁ ନିର୍ବାପିତ କରିଦେବାକୁ ସମର୍ଥ ହୋଇଥିଲା ।

ବିଜୟ ନା ପରାଜୟ ? ମହାବିଦ୍ରୋହ - ୧୮୫୭ର ଇତିହାସକୁ ପର୍ଯ୍ୟାଲୋଚନା କରି ଏହା ନିର୍ବିବାଦରେ କୁହାଯାଇପାରିବ ଯେ ଏଥିରେ ଭାରତୀୟମାନଙ୍କର ଯୁଦ୍ଧକ୍ଷେତ୍ରରେ ପରାଜୟ ହୋଇଥିଲେ ମଧ ଏହା ଭାରତର ୧ମ ସ୍ୱାଧୀନତା ଯୁଦ୍ଧ । ଏହାକୁ ସମ୍ପୂର୍ଣ୍ଣ ପରାଜୟ ମଧ କୁହାଯାଇପାରିବ ନାହିଁ । କାରଣ ବିଦେଶୀ ଶାସନର ବିତାଡ଼ନ ପାଇଁ ହୋଇଥିବା ଏହି ସଂଗ୍ରାମ ସେହି ଶାସନର ମୂଳଦୁଆକୁ ଦୋହଲାଇ ଦେଇଥିଲା । ଏହା ସଚେତନ ୟୁରୋପବାସୀଙ୍କୁ ଚେତାଇ ଦେଇଥିଲା ଯେ ସ୍ୱାଧୀନତା ସଂଗ୍ରାମ ସଫଳ ହେବାର ମୂଳମନ୍ତ୍ର ହେଲା ହିନ୍ଦୁ ମୁସଲମାନଙ୍କ ମଧରେ ଥିବା ଦୃଢ଼ ଏକତା । ସେହି ସାମ୍ପ୍ରଦାୟିକ ଐକ୍ୟର ଆଦର୍ଶ ପରବର୍ତ୍ତୀ ସଂଗ୍ରାମରେ ଅଧିକ ଦୃଢ଼ିଭୂତ ହୋଇ ଶେଷ ବିଦ୍ରୋହରେ ସର୍ବୋଚ୍ଚ ସ୍ତରରେ ପହଞ୍ଚିଥିଲା । ମହାବିଦ୍ରୋହରେ ସେହି ଐକ୍ୟ ପ୍ରତିଷ୍ଠା କାର୍ଯ୍ୟରେ ମୁସଲମାନ ନେତାମାନଙ୍କର ଭୂମିକା ଥିଲା ଅଧିକ ଗୌରବମୟ । ଦିଲ୍ଲୀ ଶାସନ କାଳ ଭିତରେ ବକ୍ରିଦ୍ ପର୍ବରେ କାଳେ ବିଦ୍ରୋହ ବିରୋଧୀମାନେ ଦୁଇ ଧର୍ମ ଭିତରେ କନ୍ଦଳ ସୃଷ୍ଟି କରିଦେବେ, ତାହାର ପ୍ରତିରୋଧକ ସ୍ୱରୂପ ବାହାଦୂର ସାହା 'ଗୋବଧ' ସମ୍ପୂର୍ଣ୍ଣ ବନ୍ଦ କରିବାକୁ ନିର୍ଦ୍ଦେଶ ଜାରି କରିଥିଲେ । ଖାଁ ବାହାଦୁର ଖାଁ ମଧ ରୋହିଲାଖଣ୍ଡରେ ସେୟା କରିଥିଲେ ।

ମହାବିଦ୍ରୋହର ମୁଖ୍ୟ କାରଣ ସମ୍ପର୍କରେ ଇଂରେଜ ଐତିହାସିକମାନେ କହନ୍ତି ଯେ, ଇଷ୍ଟ ଇଣ୍ଡିଆ କମ୍ପାନୀର ସ୍ୱେଚ୍ଛାଚାରୀ ଶାସନ ଏଥିପାଇଁ ଯେତିକି ଦାୟୀ ପାଶ୍ଚାତ୍ୟ ସଭ୍ୟତା ଓ ଶିକ୍ଷାର ଯଥେଷ୍ଟ ପ୍ରଚାରର ଅଭାବ ମଧ୍ୟ କମ୍ ଦାୟୀ ନୁହେଁ । କିନ୍ତୁ ପରବର୍ତ୍ତୀ ଦେଢ଼ଶହ ବର୍ଷ ଭିତରେ ହୋଇଥିବା ସଂଗ୍ରାମମାନଙ୍କରେ ଯେଉଁମାନେ ନେତୃତ୍ୱ ନେଇଥିଲେ ସେମାନେ ସେହି ପାଶ୍ଚାତ୍ୟ ଶିକ୍ଷାର ସର୍ବୋଚ୍ଚ ସ୍ତରରେ ପହଞ୍ଚିଥିବା ଭାରତୀୟଗଣ । ଏକପକ୍ଷରେ ନେତାଜୀ ସୁଭାଷ ଓ ମହାତ୍ମା ଗାନ୍ଧୀ ସେହି ତତ୍ତ୍ୱର ଜ୍ୱଳନ୍ତ ଉଦାହରଣ ।

ମହାବିଦ୍ରୋହରେ ଯେଉଁ କେତେଜଣ ନେତା ଯୁଦ୍ଧରେ ତାତ୍ପର୍ଯ୍ୟପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ, ସେମାନଙ୍କର ସାହସ, ବୀରତ୍ୱ ଓ ତ୍ୟାଗର ପଟାନ୍ତର ନାହିଁ, ସେମାନେ ଚିରଦିନ ପାଇଁ ଯେ କୌଣସି ପରାଧୀନ ଦେଶମାନଙ୍କ ନିକଟରେ ପୂଜ୍ୟ ଓ ବରେଣ୍ୟ । ମୋଗଲ ବାଦଶାହା ବାହାଦୂର ସାହା ନିଜ ଓ ନିଜର ପରିବାରର ଭବିଷ୍ୟତକୁ ବିପନ୍ନ କରି ଯେପରି ନେତୃତ୍ୱ ନେଲେ, ତାହା ହୋଇନଥିଲେ, ଲକ୍ଷ ଲକ୍ଷ ଭାରତବାସୀ ବିଦ୍ରୋହ ପ୍ରତି ଉଦାସୀନ ରହିଥାନ୍ତେ । ବିହାରର କନ୍ୱାର ସିଂହ, ମଧ୍ୟ ଭାରତର ତାନ୍ତିଆ ଟୋପେ ପ୍ରଭୃତି ଜଣେ ଜଣେ ବିଦ୍ରୋହୀ ଭାବରେ ଜନ୍ମଗ୍ରହଣ କରିଥିଲେ । ନାନା ସାହେବ ଓ ବୀର ସୁରେନ୍ଦ୍ର ସାଏଙ୍କର ନିଜ ନିଜ ଗାଦି ଫେରିପାଇବାର ସ୍ୱାର୍ଥ ଥିଲେ ମଧ୍ୟ ସେମାନଙ୍କ ବୀରତ୍ୱ ଓ ତ୍ୟାଗ ଅଦ୍ୱିତୀୟ ଥିଲା । କେବଳ ଦେଶର ସ୍ୱାର୍ଥରେ ବିଦ୍ରୋହର ଅଗ୍ନିକୁଣ୍ଡ ଭିତରକୁ ଲମ୍ଫ ପ୍ରଦାନ କରି ସବଂଶେ ସହୀଦ ହୋଇଥିବା ଘେଁଷର ମାଧୋ ସିଂ ଓ ତାଙ୍କର ପରିବାର ଭାରତରେ ଅଦ୍ୱିତୀୟ ।

ଏତଦ୍‌ବ୍ୟତୀତ ଝାନ୍‌ସୀରାଣୀ ଲକ୍ଷ୍ମୀବାଈ, ବେଗମ ହଜରତ ମଲ ଓ ମାତା ତପସ୍ୱିନୀ ପ୍ରଭୃତି ବୀରାଙ୍ଗନାବୃନ୍ଦ ଏ ଦେଶର ମାତୃଶକ୍ତିର ଗର୍ବ ଓ ଗୌରବ ।

ବିଡ଼ମ୍ବନା ଯେ ଜାତିର ସେହି ଜୀବନ ମରଣ ସଂଗ୍ରାମରେ ଭାରତରେ ଥିବା ସମସ୍ତ ବ୍ରିଟିଶ ସୈନ୍ୟ ସରକାର ସପକ୍ଷରେ ଠିଆ ହେଇଥିଲେ ମଧ୍ୟ ସମସ୍ତ କଳା ବା ଭାରତୀୟ ସୈନ୍ୟ ବିଦ୍ରୋହରେ ଯୋଗ ଦେଇନଥିଲେ । ତାହାହିଁ ଥିଲା ପରାଜୟର ଅନ୍ୟତମ ମୁଖ୍ୟ କାରଣ ।

ତଥାପି ମହାବିଦ୍ରୋହରେ ହୋଇଥିବା ଭୁଲ ଠିକ୍‌ରୁ ଶିକ୍ଷା ଲାଭ କରି ପରବର୍ତ୍ତୀ ସଂଗ୍ରାମ ଗୁଡ଼ିକ ପରିଚାଳିତ ହୋଇଥିବାରୁ ସ୍ୱାଧୀନତା ସଂଗ୍ରାମ ଇତିହାସରେ ମହାବିଦ୍ରୋହ - ୧୮୫୭ ସ୍ୱର୍ଣ୍ଣାକ୍ଷରରେ ରଞ୍ଜିତ ଏକ ରୋମାଞ୍ଚକର ଅଧ୍ୟାୟ ।



# ଆଉ ଏକ ବିଦ୍ରୋହର ପ୍ରଚେଷ୍ଟା

ବିଂଶ ଶତାବ୍ଦୀର ପ୍ରଥମ ପାଦରେ ଯେତେବେଳେ ବ୍ରିଟିଶ ଶାସନ ବିରୁଦ୍ଧରେ ପ୍ରଥମ ବ୍ୟାପକ ଜନବିଦ୍ରୋହ 'ବଙ୍ଗ-ଭଙ୍ଗ' ଆନ୍ଦୋଳନ ରୂପରେ ଆତ୍ମ ପ୍ରକାଶ କଲା । ସେତେବେଳେ ପ୍ରଥମାବସ୍ଥାରେ ସେ ଧନତନ୍ତ୍ରୀ ସାମନ୍ତ ବାଦୀ ନେତୃମଣ୍ଡଳୀ ସେଥିପ୍ରତି ସମ୍ପୂର୍ଣ୍ଣ ଉଦାସୀନ ରହିଥିଲେ । ଏହି ଆନ୍ଦୋଳନରେ କ୍ରମେ ଯେତେବେଳେ ସ୍ୱଦେଶୀ ଓ ବୟକଟ୍ ଅସ୍ତ୍ରକୁ ବିଦେଶୀ ଶାସନ ବିରୁଦ୍ଧରେ ଏକ ଆର୍ଥନୀତିକ ଅସ୍ତ୍ର ରୂପେ ବ୍ୟବହାର କରିବାକୁ ସ୍ଥିର କରାଗଲା, ସେତେବେଳେ ସେମାନେ ବଙ୍ଗଭଙ୍ଗ ଆନ୍ଦୋଳନ ପ୍ରତି ସମର୍ଥନ ଜଣାଇଲେ । କାରଣ ବିଦେଶୀ ଦ୍ରବ୍ୟକୁ ବୟକଟ୍ ବା ବାସନ୍ଦ କରି ସ୍ୱଦେଶୀ ଦ୍ରବ୍ୟକୁ ଗ୍ରହଣ କରିବା ଫଳରେ ଦେଶୀୟ ପୁଞ୍ଜିପତିମାନେ ଏହା ଦ୍ୱାରା ପ୍ରତ୍ୟକ୍ଷ ଭାବରେ ଲାଭବାନ ହେଲେ । କିନ୍ତୁ ପୁନଶ୍ଚ ଯେତେବେଳେ ବଙ୍ଗଭଙ୍ଗ ବିରୋଧୀ ଆନ୍ଦୋଳନରେ 'ବିପ୍ଳବବାଦ' ମୁଣ୍ଡ ଟେକିଲା ସେତେବେଳେ ସେମାନେ ପ୍ରାଣପଣେ ବିରୋଧ ମଧ କଲେ । ବଙ୍ଗଭଙ୍ଗ ଆନ୍ଦୋଳନ କ୍ରମେ ବଙ୍ଗଳାର ସୀମା ଅତିକ୍ରମ କରି ସାରାଦେଶରେ ଏକ ଉଗ୍ର ବ୍ରିଟିଶ ବିରୋଧୀ ସଂଗ୍ରାମରେ ପରିଣତ ହେଲା ସତ୍ୟ ଏବଂ ସ୍ୱାଧୀନତା ସଂଗ୍ରାମ ଉପରେ ଏହାର ସୁଦୂର ପ୍ରସାରୀ ପ୍ରଭାବ ପଡ଼ିଥିଲା । କିନ୍ତୁ ହିନ୍ଦୁ ସାମ୍ପ୍ରଦାୟିକବାଦୀମାନେ ଏହାକୁ ଏଭଳି ଏକ ସାମ୍ପ୍ରଦାୟୀକ ଆନ୍ଦୋଳନରେ ପରିଣତ କରିଦେଲେ ଯେ, 'ମହାବିଦ୍ରୋହ' ଯେଉଁ ସାମ୍ପ୍ରଦାୟିକ ଭାତୃତ୍ୱ ସୃଷ୍ଟି କରିଥିଲା ସେହି କୋମଳ ଲତାଟି ଦୁର୍ବଳ ହୋଇଗଲା ଏବଂ ମୁସଲିମ୍ ସମ୍ପ୍ରଦାୟ ବଙ୍ଗଭଙ୍ଗ ଆନ୍ଦୋଳନରୁ ସମ୍ପୂର୍ଣ୍ଣ ଅଲଗା ହୋଇଗଲେ । ବିଦେଶୀ ଶାସକ ମାନେ ସ୍ୱାଭାବିକ ଭାବରେ ଏହି ବିଭେଦକୁ ନିଜ ସ୍ୱାର୍ଥରେ ନିୟୋଜିତ କରିଥିଲେ ।

ବିଚିତ୍ର କଥା ଯେ ସେନା ବାହିନୀ ବିଦ୍ରୋହରେ ସାମ୍ପ୍ରଦାୟିକ ଭେଦଭାବ ରହୁ ନଥିଲା । ୧୯୧୪-୧୯୧୮ ପର୍ଯ୍ୟନ୍ତ ହୋଇଥିବା ପ୍ରଥମ ବିଶ୍ୱଯୁଦ୍ଧ ବେଳେ ହିନ୍ଦୁ-ମୁସଲିମ୍ ଭାତୃତ୍ୱ ଅଦ୍ୱିତୀୟ ଦୃଷ୍ଟାନ୍ତ ପୁଣି ସୃଷ୍ଟି ହେଲା । ମୁଖ୍ୟତଃ ଇଂଲାଣ୍ଡ ଓ ଜର୍ମାନୀ ଭିତରେ ହୋଇଥିବା ଏହି ଯୁଦ୍ଧରେ ଦେଶପ୍ରେମୀ ଭାରତୀୟ ମାନଙ୍କ ପକ୍ଷରେ ଇଂଲାଣ୍ଡକୁ ସାହାଯ୍ୟ କରିବା ପଛରେ କୌଣସି ଯୁକ୍ତି ନଥିଲା । ଶିଳ୍ପବାଣିଜ୍ୟ କ୍ଷେତ୍ରରେ ଜର୍ମାନୀର ଅଚିନ୍ତନୀୟ ଅଗ୍ରଗତିରେ ଆତଙ୍କିତ ହୋଇ ନିଜର ଅସ୍ତିତ୍ୱ ରକ୍ଷାକରିବାକୁ ଇଂଲାଣ୍ଡ ଏହି ଯୁଦ୍ଧ ଭିଆଇଥିଲା । ସୁତରାଂ ଇଂଲାଣ୍ଡର ସମ୍ପୂର୍ଣ୍ଣ ପରାଜୟ ପ୍ରତ୍ୟେକ ଭାରତୀୟର କାମ୍ୟ ହେବା ଉଚିତ୍ ଥିଲା । କିନ୍ତୁ

କଂଗ୍ରେସର ରକ୍ଷଣଶୀଳ ନେତୃତ୍ୱ ଓଲଟା ରାସ୍ତା ଧରିଲେ । ବ୍ରିଟିଶ ଶାସକମାନଙ୍କ ପରାଜୟ କାମନା କରିବା ପରିବର୍ତ୍ତେ ସେମାନଙ୍କର ବିଜୟ ପାଇଁ ଧନବଳ ଓ ଜନବଳ ସବୁ ଯୋଗାଇ ଦିଆଗଲା । ଭାରତୀୟ ରାଜନୀତିରେ ସମ୍ପୂର୍ଣ୍ଣ ନବାଗତ ଗାନ୍ଧୀଜୀ ଗାଁ ଗାଁ ବୁଲି ସୈନ୍ୟବାହିନୀ ପାଇଁ ଲୋକ ସଂଗ୍ରହ କଲେ । ନିଜେ 'ଅହିଂସା' ପାଇଁ ଓକିଲାତି କରୁଥିଲେ ମଧ୍ୟ ହିଂସାତ୍ମକ ଯୁଦ୍ଧରେ ଜର୍ମାନୀର ତୋପକମାଣ ପାଇଁ ସେ ଶିକାର ସଂଗ୍ରହରେ ଲାଗି ପଡ଼ିଲେ ବୋଲି ତାଙ୍କୁ ସମାଲୋଚନା କରାଗଲା ।

କିନ୍ତୁ ଭାରତୀୟ ବିପ୍ଳବୀମାନେ ଇଂରେଜ ଶାସକ ମାନଙ୍କର ସେହି ଅଡୁଆ ପରିସ୍ଥିତିର ସୁଯୋଗ ନେଇ ସେନାବାହିନୀ ମଧ୍ୟରେ ବିଦ୍ରୋହ ସୃଷ୍ଟି କରିବାକୁ ଉଦ୍ୟମ କରିଥିଲେ । ସେତେବେଳେ ଅଧିକାଂଶ ଭାରତୀୟ ସୈନ୍ୟ ଇଂରେଜ ମାନଙ୍କ ସପକ୍ଷରେ ଆଫ୍ରିକା, ପଶ୍ଚିମ ଏସିଆ ଓ ୟୁରୋପ ଯୁଦ୍ଧ କ୍ଷେତ୍ରରେ ଅବସ୍ଥାପିତ ହୋଇଥିବାରୁ ସ୍ୱଳ୍ପ ସଂଖ୍ୟକ ସୈନ୍ୟ ଭାରତର ବିଭିନ୍ନ ସେନା ଛାଉଣୀରେ ରହିଥଲେ ମାମୁଲି ଦୈନନ୍ଦିନ କାର୍ଯ୍ୟ ସମ୍ଭାଳିବାକୁ । ଏହା ଭାରତର ସ୍ୱାଧୀନତା ପ୍ରାପ୍ତିପାଇଁ ଏକ ସୁବର୍ଣ୍ଣ ସୁଯୋଗ ଆଣି ଦେଇଥିଲା । ସାରା ଭାରତରେ ଏକା ଦିନେ ଜନ ବିଦ୍ରୋହ କରାଯିବା ସଙ୍ଗେ ସଙ୍ଗେ ପଞ୍ଜାବର ଆମ୍ବଲାଠାରୁ ଆରମ୍ଭ କରି ସିଙ୍ଗାପୁର ପର୍ଯ୍ୟନ୍ତ ସମସ୍ତ ସେନା ଛାଉଣୀରେ ମଧ୍ୟ ଏକ ସମୟରେ ସୈନ୍ୟ ବିଦ୍ରୋହ କରାଯିବାର ଆୟୋଜନ ହୋଇଥିଲା । ଏହି ସବୁ ବିଦ୍ରୋହର ପରିଚାଳନାର ମୁଖ୍ୟ ଦାୟିତ୍ୱ ଥିଲା ବଙ୍ଗଳା ଓ ମହାରାଷ୍ଟ୍ର ବିପ୍ଳବୀ ମାନଙ୍କ ଉପରେ । ରାସବିହାରୀ ବୋଷ, ବାଘା ଯତୀନ ଏବଂ ମହାରାଷ୍ଟ୍ରର ବିଷ୍ଣୁ ଗଣେଷ ପିଙ୍ଗଲେ ନାମକ ମହାନ ବିପ୍ଳବୀ ସେମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ଥିଲେ । ଜନ ବିଦ୍ରୋହ ପାଇଁ ହୋଇଥିବା ବିପୁଳ ଆୟୋଜନ ସମ୍ପର୍କରେ ବିଶେଷ ଆଲୋଚନା ନ କରି ଏଠାରେ ମୁଖ୍ୟତଃ ସୈନ୍ୟ ବାହିନୀର ବିଦ୍ରୋହ ସମ୍ବନ୍ଧରେ ଉଲ୍ଲେଖ କରାଯାଉଅଛି ।

ସେନାବାହିନୀ ସ୍ୱତଃସ୍ଫୁର୍ତ୍ତ ଭାବରେ କୌଣସି ବିଦ୍ରୋହରେ ଯୋଗଦେବା ଏବଂ ସେମାନଙ୍କୁ ବିଦ୍ରୋହ ପାଇଁ ଅନୁପ୍ରାଣିତ କରି ଲଢ଼େଇ ରାସ୍ତାରେ ଓହ୍ଲାଇ ଦେବା ଏକା କଥା ନୁହେଁ । ଭାରତୀୟ ସୈନ୍ୟ ବାହିନୀର ଗଠନ ଯେଉଁ ଶୈଳୀରେ ହୋଇଥିଲା ସେ ଦୃଷ୍ଟିରୁ ଏହା ଏକ ଅତିଶୟ କଠିନ କାର୍ଯ୍ୟ ଥିଲା । 'ମହା ବିଦ୍ରୋହ'ର ତିକ୍ତ ଅଭିଜ୍ଞତା ଦୃଷ୍ଟିରୁ ଇଂରେଜମାନେ ସେନାବାହିନୀର ଶ୍ରେଣୀବିନ୍ୟାସ ରେ ବହୁ ସତର୍କତା ଓ ସାବଧାନତା ଅବଲମ୍ବନ କରିଥିଲେ । ବିଶେଷତଃ ବିଦ୍ରୋହୋତ୍ତର ଯୁଗରେ ସେହି ଶ୍ରେଣୀ ବିନ୍ୟାସ ଅଧିକ ଜାତି ଭିତ୍ତିକ ହୋଇଥିଲା । ମରହଟ୍ଟା ରେଜିମେଣ୍ଟ, ଶିଖ ରେଜିମେଣ୍ଟ, ଜାଠ ରେଜିମେଣ୍ଟ ଓ ଗୁର୍ଖା ରେଜିମେଣ୍ଟ ପ୍ରଭୃତି ସେହି ଜାତି ଆଣ ଭିତ୍ତିର ପ୍ରକୃଷ୍ଟ ଉଦାହରଣ । ଆଞ୍ଚଳିକ ବା ଜାତି ଆଣ ସ୍ୱାଭିମାନରେ ଉଦ୍‌ବୁଦ୍ଧ ହୋଇ ସେମାନେ ସ୍ୱ ସ୍ୱ ରେଜିମେଣ୍ଟର ବୀରତ୍ୱ ଓ ପରାକାଷ୍ଠା ପ୍ରଦର୍ଶନ କରୁଥିବାରୁ ସର୍ବଭାରତୀୟ ମହାସ୍ରୋତରେ ସେନାବାହିନୀକୁ ସାମିଲ

କରିବା ଏକ କଠିନ କାର୍ଯ୍ୟ ଥିଲା । ତଥାପି ଭାରତୀୟ ବିପ୍ଳବୀମାନେ ସେହି ଅସମ୍ଭବ କାର୍ଯ୍ୟକୁ ସମ୍ଭବ କରିଥିଲେ । ସେହି ଦୁଃସାହସିକ କାର୍ଯ୍ୟରେ ରାସବିହାରୀ ପ୍ରଭୃତିଙ୍କୁ ସାହାଯ୍ୟ କରିବାକୁ ଆଗେଇ ଆସିଥିଲେ ଅନ୍ୟତମ ଶିଖ ନେତା ସର୍ଦ୍ଦାର କର୍ତ୍ତାର ସିଂ । ସର୍ଦ୍ଦାରଜୀ ଯୁକ୍ତରାଷ୍ଟ୍ର ଆମେରିକାରେ ଭାରତୀୟ ବିପ୍ଳବୀଦଳ ସହ ମୂଳରୁ ସମ୍ପୃକ୍ତ ଥିଲେ । ''କୋମାଗାତାମାରୁ'' ଜାହାଜ ଘଟଣାରେ ମଧ ତାଙ୍କର ନାମ ବିଶେଷ ଭାବେ ଜଡ଼ିତ ଥିଲା । ସେହିଭଳି ଶଚୀନ ସାନ୍ୟାଲ୍, ନରେନ୍ ଦତ୍ତ, ବିଡେନ୍ ସିଂ, ବିନାୟକ ରାଓ କାପ୍‌ଲେ, ଭାଇ ପରମାନନ୍ଦ ପ୍ରଭୃତି ବିଶିଷ୍ଟ ବିପ୍ଳବୀବୃନ୍ଦ ମଧ ସୈନ୍ୟ ଛାଉଣୀ ମାନଙ୍କରେ ବୁଲି ବୁଲି ସେମାନଙ୍କ ମଧରେ ଦେଶାତ୍ମବୋଧ ଓ ବିପ୍ଳବର ଆବଶ୍ୟକତା ସମ୍ପର୍କରେ ବୁଝାଉଥିଲେ । ଆଲ୍‌ହାବାଦ, ବନାରସ, ରାମନଗର, ଜବଲପୁର, ଜଳନ୍ଧର ଓ କୋହାଟର ୩୩, ୩୪ ଓ ୩୫ ନମ୍ବର ରେଜିମେଣ୍ଟ ଓ ଦିଲ୍ଲୀ କାଣ୍ଟନମେଣ୍ଟର ଦାୟିତ୍ୱ ପିଙ୍ଗଲେଙ୍କ ଉପରେ ମୁଖ୍ୟତଃ ନ୍ୟସ୍ତ ହୋଇଥିଲା । ସେହିପରି ଆମ୍ବାଲା ରାଓ୍ୱଲପିଣ୍ଡି ଓ ମୀରଠ୍ କାଣ୍ଟନମେଣ୍ଟ ଯେଉଁଠାରେ କି ନିରାପତ୍ତା ବ୍ୟବସ୍ଥା ଖୁବ୍ କଠୋର ଥିଲା ସେଠାରେ ମଧ ବିପ୍ଳବୀମାନେ କାର୍ଯ୍ୟରେ ଲାଗି ଯାଇଥିଲେ ।

ତେଣେ କମ୍ୟୁନିଷ୍ଟ ନେତା ଏମ. ଏନ୍. ରାୟଙ୍କ ପ୍ରଚେଷ୍ଟାରେ ଜର୍ମାନୀରୁ ଗୋପନରେ ଅସ୍ତ୍ରଶସ୍ତ୍ର ଆଣିବାର ଆୟୋଜନ ମଧ ଯଥେଷ୍ଟ କ୍ଷିପ୍ରତା ସହକାରେ ଆଗେଇ ଚାଲିଥିଲା । 'ମେଭେରିକ୍' ନାମକ ଜାହାଜରେ ଏହିସବୁ ଗୋପନ ଅସ୍ତ୍ରଶସ୍ତ୍ର ପୂର୍ବ ଉପକୂଳରେ ବାଲେଶ୍ୱର ପର୍ଯ୍ୟନ୍ତ ଆଣିବାର ବ୍ୟବସ୍ଥା ପକ୍କା ହୋଇଯାଇଥିଲା । ସୈନ୍ୟବାହିନୀ ସାହାଯ୍ୟରେ ଦେଶ ଭିତରେ ଚାଲିଥିବା ସେହି ଗୌରବମୟ ବୈପ୍ଳବିକ ପ୍ରଚେଷ୍ଟାକୁ ଶକ୍ତି ଓ ସାହସ ଯୋଗାଇବାକୁ ଆଫଗାନି ସ୍ଥାନର କାବୁଲଠାରେ ଏକ ଅସ୍ଥାୟୀ ବିପ୍ଳବୀ ସରକାର ଗଠିତ ହୋଇଥିଲା । ରାଜା ମହେନ୍ଦ୍ରପ୍ରତାପ ସେହି ସରକାରରେ ରାଷ୍ଟ୍ରପତି ଓ ବରକତ ଉଲ୍ଲା ପ୍ରଧାନ ମନ୍ତ୍ରୀ ରୂପେ ନିର୍ବାଚିତ ହୋଇଥିଲେ । ଏହା କେବଳ ଏକ ପ୍ରହସନ ନ ଥିଲା । ଏହି ବିପ୍ଳବୀ ସରକାରକୁ ଜର୍ମାନୀ, ଇଟାଲୀ, ଅଷ୍ଟ୍ରିୟା ଓ ତୁର୍କୀ ପ୍ରଭୃତି ସ୍ୱାଧୀନ ଦେଶମାନେ କୁଟନୈତିକ ସ୍ୱୀକୃତି ମଧ ଦେଇଥିଲେ । କଥା ହୋଇଥିଲା ଯେ କଲିକତାର ଫୋର୍ଟ ଉଇଲିୟମ୍ ଠାରେ ଅବସ୍ଥାପିତ ଗୋରା ସୈନ୍ୟମାନଙ୍କୁ କାବୁ କରି ଦେବାକୁ ଶହ ଶହ ସଂଖ୍ୟାରେ ବିପ୍ଳବୀ ପ୍ରଚୁର ଅସ୍ତ୍ରଶସ୍ତ୍ର ସହ ପ୍ରସ୍ତୁତ ରହିବେ । ବିପ୍ଳବୀ ବିପିନ୍ ଗାଙ୍ଗୁଲି ମୁଖ୍ୟତଃ ସେହି ଦାୟିତ୍ୱରେ ଥିଲେ । ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ମଧ ବାଣ୍ଟି ଦିଆଯାଇଥିଲା । ରାସ ବିହାରୀଙ୍କ ନିର୍ଦ୍ଦେଶ ଅନୁସାରେ ୧୯୧୫ ଫେବୃଆରୀ ୨୨ ତାରିଖରେ ସାରା ଭାରତରେ ଏକ ସଙ୍ଗେ ବିପ୍ଳବ ଆରମ୍ଭ ହେବ ବୋଲି ସ୍ଥିର ହୋଇଥିଲା । ବିପ୍ଳବୀ ମାନେ ନିଜ ନିଜ ଅଞ୍ଚଳରେ ଗୁରୁତ୍ୱପୂର୍ଣ୍ଣ ସରକାରୀ ପ୍ରତିଷ୍ଠାନ ଉପରେ ଚଢ଼ାଉ କରିବା ସଙ୍ଗେ ସଙ୍ଗେ ସୈନ୍ୟମାନେ ମଧ ବିଭିନ୍ନ କ୍ୟାଣ୍ଟନ୍‌ମେଣ୍ଟରେ ଗୋରାସୈନ୍ୟ ସେନାପତିଙ୍କ ବିରୁଦ୍ଧରେ ଲଢ଼େଇ ଆରମ୍ଭ କରିଦେବେ ।

ପଞ୍ଜାବ ଠାରୁ ସିଙ୍ଗାପୁର ପର୍ଯ୍ୟନ୍ତ ସମସ୍ତ ଆୟୋଜନ ପକ୍କା ହୋଇଗଲା ।ଏହି ଗୁରୁତ୍ୱପୂର୍ଣ୍ଣ ଗୋପନ ବୈପ୍ଳବିକ ଆୟୋଜନ ସମ୍ପର୍କରେ ଶତ୍ରୁପକ୍ଷ କୌଣସି ସୂଚନା ଯେପରି ନପାଏ, ତାହାର ସୁବନ୍ଦୋବସ୍ତ ମଧ୍ୟ ହୋଇଥିଲା । କିନ୍ତୁ ଦୁର୍ଭାଗ୍ୟ ବଶତଃ କୃପାଲ ସିଂ ଓ ନବାବ ଖାଁ ନାମକ ଦୁଇଜଣ ବିପ୍ଳବୀ ଯୁବକ ଶିବିରରୁ ଖସିଯାଇ ଫେବୃୟାରୀ ୧୮ ତାରିଖରେ ସେହି ଯୁଦ୍ଧ ଆୟୋଜନର ସମସ୍ତ ସମ୍ବାଦ ପୋଲିସ ନିକଟରେ ପ୍ରକାଶ କରିଦେଇଥିଲେ । ସେହି ପ୍ରତି ବିପ୍ଳବୀ ବିଶ୍ୱାସଘାତକ ଦୁଇଜଣଙ୍କୁ ପରେ ହତ୍ୟା କରାଯାଇଥିଲା ସତ୍ୟ କିନ୍ତୁ ସେତେବେଳକୁ ନେଡ଼ିଗୁଡ଼ କହୁଣୀକୁ ବୋହି ଯାଇଥିଲା । ସରକାରୀ ପକ୍ଷ ଏହି ସମ୍ବାଦ ପାଇ ଏହାକୁ ପଣ୍ଡ କରିଦେବାକୁ ଲାଗି ପଡ଼ିଲେ । ଚାରିଆଡ଼େ ଧରପଗଡ଼ କରି ବିପ୍ଳବୀ ଏବଂ ବିଦ୍ରୋହୀ ସୈନ୍ୟମାନଙ୍କୁ କାବୁ କରିଦିଆଗଲା । ସେହି ଅବସରରେ ବିପ୍ଳବୀ ବାଘା ଯତୀନ୍ ମଧ୍ୟ ବାଲେଶ୍ୱର ଠାରେ ଧରାପଡ଼ିଥିଲେ । 'ମ୍ୟାଭେରିକ୍' ଜାହାଜକୁ ମଝି ସମୁଦ୍ରରେ ଅଟକାଇ ଦେଇ ସେଥିରେ ଥିବା ଅସ୍ତ୍ରଶସ୍ତ୍ର ଜବଦ୍ କରି ଦିଆଗଲା । ଏହିଭଳି ଭାବରେ ବିପ୍ଳବୀମାନଙ୍କର ସମସ୍ତ ପ୍ରଚେଷ୍ଟାକୁ ପଣ୍ଡ କରି ଦିଆଗଲା ସତ୍ୟ କିନ୍ତୁ ସେନାବାହିନୀର ବିଦ୍ରୋହକୁ ସହଜରେ ରୋକି ହୋଇପାରିଲା ନାହିଁ ।

କିନ୍ତୁ ଫିରୋଜପୁର କ୍ୟାଣ୍ଟେନମେଣ୍ଟରେ ବିଦ୍ରୋହୀ ସୈନ୍ୟ ଓ ସରକାରୀ ଅନୁଗତ ସୈନ୍ୟମାନଙ୍କ ମଧ୍ୟରେ ପ୍ରବଳ ଯୁଦ୍ଧ ଆରମ୍ଭ ହୋଇଗଲା । ଦିନତମାମ ସେଠାରେ ଯୁଦ୍ଧ ହୋଇଥିଲା । ଏହି ଯୁଦ୍ଧରେ ଜଣେ ଗୋରା ସେନାପତିଙ୍କ ସମେତ ବହୁ ସଂଖ୍ୟକ ସୈନ୍ୟ ନିହତ ହୋଇଥିଲେ ସୁଦ୍ଧା ଶେଷରେ ବିଦ୍ରୋହୀ ସୈନ୍ୟମାନଙ୍କୁ ପରାଜୟ ବରଣ କରିବାକୁ ପଡ଼ିଲା । ଏହି ଖଣ୍ଡଯୁଦ୍ଧରେ ପଚାଶ ଜଣ ବିଦ୍ରୋହୀ ସୈନ୍ୟ ନିହତ ହୋଇଥିଲେ ଏବଂ ଅନ୍ୟମାନେ ହୋଇଥିଲେ ବନ୍ଦୀ । କିନ୍ତୁ ସେହି ସମୟରେ ସେନା ଛାଉଣୀରେ ଛଦ୍ମବେଶରେ ଥିବା ରାସବିହାରୀ ଓ ପିଙ୍ଗଲେ ସେଠାରୁ ଖସି ପଳାଇ ଆସିଥିଲେ । ସେହିପରି ଆମ୍ବାଲା ଓ ରାଓଲପିଣ୍ଡି କାଣ୍ଟନ୍‌ମେଣ୍ଟରେ ମଧ୍ୟ ବିଦ୍ରୋହୀ ସୈନ୍ୟ ଓ ସରକାରୀ ଅନୁଗତ ସୈନ୍ୟମାନଙ୍କ ମଧ୍ୟରେ ତୁମୁଳ ଲଢ଼େଇ ହୋଇଥିଲା ଏବଂ ସେଥିରେ ଅନ୍ୟୁନ ଶହେଜଣ ବିଦ୍ରୋହୀ ସୈନ୍ୟ ଶହିଦ ହୋଇଥିଲେ ।

ସେ ଯୁଗରେ ବିପ୍ଳବୀମାନଙ୍କ ମଧ୍ୟରେ ସମ୍ବାଦ ସରବରାହର ସେଭଳି କୌଣସି ନିର୍ଭର ଯୋଗ୍ୟ ବ୍ୟବସ୍ଥା ନଥିବାରୁ ମଧ୍ୟ ବହୁ ଅସୁବିଧା ହୋଇଥିଲା । କଥା ହୋଇଥିଲା ଫେବୃୟାରୀ ୨୨ ତାରିଖରେ 'ପଞ୍ଜାବ ମେଲ'' ରେଳଗାଡ଼ି କଲିକତାରେ ନ ପହଞ୍ଚିଲେ ବୁଝିବାକୁ ହେବ ଯେ ଉତ୍ତର ଭାରତରେ ସେନା ବିଦ୍ରୋହ ଆରମ୍ଭ ହୋଇଯାଇଛି ଏବଂ କଲିକତା ପୋର୍ଟ ଉଇଲିୟମ୍ ଉପରେ ପୂର୍ବ ଯୋଜନା ଅନୁସାରେ ଚଢ଼ାଉ ଆରମ୍ଭ ହୋଇଯିବ । କିନ୍ତୁ ବିପ୍ଳବ ଆପାତତଃ ବ୍ୟର୍ଥ ହୋଇଥିବାରୁ 'ପଞ୍ଜାବ ମେଲ' ଯଥା ରୀତି କଲିକତାରେ ପହଞ୍ଚିଥିଲା । ତେଣୁ କଲିକତାରେ ବିପ୍ଳବୀମାନେ ଯେ ଯାହା ସ୍ଥାନରେ ଚୁପ୍ ଚାପ୍ ରହିଗଲେ । କିନ୍ତୁ ସିଙ୍ଗାପୁରରେ ଏହି ସମ୍ବାଦ ପହଞ୍ଚିବା ସମ୍ଭବ ନଥିଲା । ତେଣୁ ସିଙ୍ଗାପୁର କ୍ୟାଣ୍ଟନ୍‌ମେଣ୍ଟରେ

ସେନା ବିଦ୍ରୋହ ଆରମ୍ଭ ହୋଇଗଲା । ସୁଦୂର ସିଙ୍ଗାପୁରରେ ଏଭଳି ଏକ ବିଦ୍ରୋହ ସଂଘଟିତ ହେବ ବୋଲି ସରକାର ସମ୍ଭବତଃ କଳ୍ପନା କରି ନଥିଲେ । ବିଦ୍ରୋହୀ ସୈନ୍ୟମାନେ ସେମାନଙ୍କର ଇଂରାଜୀ ହାକିମ ସେନାପତିମାନଙ୍କୁ ଅତର୍କିତ ବନ୍ଦୀକରି ''ସିଙ୍ଗାପୁରର ସ୍ୱାଧୀନତା'' ଘୋଷଣା କରି ଦେଲେ । ସତକୁ ସତ ସାତଦିନ ପର୍ଯ୍ୟନ୍ତ ସିଙ୍ଗାପୁର ଠାରେ ''ସ୍ୱାଧୀନ ସରକାର'' କାର୍ଯ୍ୟ କରିଥିଲା । ସରକାରୀ କୋଠାବାଡ଼ି ସର୍ବତ୍ର ବ୍ରିଟିଶ୍ ୟୁନିୟନ୍ ଜ୍ୟାକ୍ ପରିବର୍ତ୍ତେ ସ୍ୱାଧୀନ ଭାରତର ପତାକା ଉଡ୍ଡୀୟମାନ ହୋଇଥିଲା । 'ବନ୍ଦେ ମାତରମ୍' ଓ 'ସ୍ୱାଧୀନ ଭାରତ ଜୟ' ଧ୍ୱନୀରେ ସିଙ୍ଗାପୁରର ଆକାଶ ହେଲା ପ୍ରକମ୍ପିତ । ସିଙ୍ଗାପୁରର ବିଦ୍ରୋହୀ ସେନାଙ୍କର ଖଡ୍‌ଗରୁ କୌଣସି ପ୍ରକାରେ ବଞ୍ଚିଯାଇଥିବା ଜନୈକ ଗୋରା ସାମରିକ ଅଫିସର, ଲେଫ୍ଟନାଣ୍ଟ ଜେନେରାଲ ସାର୍ ଜର୍ଜ ମାକ୍‌ସନ୍ ତାଙ୍କର ଡାଏରୀରେ ଲେଖିଛନ୍ତି ''ବିଦ୍ରୋହୀ ସୈନ୍ୟମାନେ ତିନି ଦଳରେ ବିଭକ୍ତ ହୋଇ ଗୋଟିଏ ଦଳ ଜର୍ମାନୀ 'ଯୁଦ୍ଧ ବନ୍ଦୀ ଶିବିର' ଜଗୁଆଳୀମାନଙ୍କୁ କାବୁ କରିଦେଇ ବନ୍ଦୀମାନଙ୍କୁ ମୁକ୍ତ କରି ଦେଇଥିଲେ । ଆଉ ଗୋଟିଏ ଦଳ କର୍ଣ୍ଣେଲଙ୍କ ବାସଭବନ ଆକ୍ରମଣ କରିବାକୁ ଏବଂ ତୃତୀୟ ଦଳଟି ସିଙ୍ଗାପୁର ରାସ୍ତା ଦେଇ ଆସୁଥିବା ସମସ୍ତ ସମ୍ଭାବ୍ୟ ସାହାଯ୍ୟ ଆସିବାର ପଥରୋଧ କରିବାକୁ ଲାଗିଲେ । ଆଉ କେତେକ ସୈନ୍ୟ ଛୋଟ ଛୋଟ ଦଳରେ ବିଭକ୍ତ ହୋଇ ରାସ୍ତାରେ ଥିବା ୟୁରୋପୀୟମାନଙ୍କୁ ହତ୍ୟା କରିବାକୁ ଲାଗିଲେ ।''

କଲିକତାଠାରୁ ଜାହାଜରେ ବହୁ ସଂଖ୍ୟକ ଅନୁଗତ କଳା ସୈନ୍ୟ ଓ ଗୋରା ସୈନ୍ୟଙ୍କୁ ପଠାଯାଇ ସିଙ୍ଗାପୁର ବିଦ୍ରୋହକୁ ସରକାର ଦମନ କରିବାକୁ ସମର୍ଥ ହୋଇଥିଲେ ।

ତେଣେ ଲାହୋର କାଣ୍ଟନ୍‌ମେଣ୍ଟ ଭିତରେ ବୁଲୁଥିବା ଅବସ୍ଥାରେ ଅସାବଧାନତା ବଶତଃ ବିପ୍ଳବୀ ପିଙ୍ଗଲେ ବନ୍ଦୀ ହୋଇ ଫାଶୀ ଖୁଣ୍ଟରେ ପ୍ରାଣ ବିସର୍ଜନ କଲେ ।

ପ୍ରାୟ ସମସ୍ତ କାଣ୍ଟନ୍‌ମେଣ୍ଟରେ ବିଦ୍ରୋହ ପ୍ରଶମିତ ହେବାପରେ ବିଭିନ୍ନ ଷଡ଼ଯନ୍ତ୍ର ମକଦ୍ଦମା ଚାଲୁ କରାଯାଇ ବଞ୍ଚିଥିବା ବିଦ୍ରୋହୀ ସୈନ୍ୟମାନଙ୍କୁ ଫାଶୀ ଦିଆଯାଇଥିଲା । ଲାହୋର କାଣ୍ଟନମେଣ୍ଟର ୭ ଜଣଙ୍କୁ ଫାଶୀ ଓ ୨୬ ଜଣଙ୍କୁ ଦିଆଯାଇଥିଲା ଯାବଜ୍ଜୀବନ ଦ୍ୱୀପାନ୍ତର ଶହୀଦମାନଙ୍କ ଭିତରେ ଥିଲେ ସର୍ଦ୍ଦାର କର୍ତ୍ତାର ସିଂ, ସୁରାଇନ୍ ସିଂ (୧), ସୁରାଇନ୍ ସିଂ (୨), ହରନାମ ସିଂ ଓ ବକ୍ଷସିଲ ସିଂ । ଫାଶୀ ଦେବାର ଶେଷ ମୁହୂର୍ତ୍ତରେ ଦିଲ୍ଲୀ ଚିଫ୍‌କୋର୍ଟ ଆଦେଶ ଦେଇଥିଲେ ଯେଉଁମାନେ ସରକାରଙ୍କ ନିକଟରେ କ୍ଷମା ପ୍ରାର୍ଥନା କରିବେ ସେମାନଙ୍କ ଫାଶୀ ଦଣ୍ଡକୁ କୋହଳ କରି ଜେଲଦଣ୍ଡ ବା ଦ୍ୱୀପାନ୍ତର ଦଣ୍ଡ ଦିଆଯିବ । କିନ୍ତୁ ଚିଫ୍ କୋର୍ଟରେ ସେହି ନିର୍ଦ୍ଦେଶକୁ ହସରେ ଉଡ଼ାଇ ଦେଇଥିଲେ ବିପ୍ଳବୀଗଣ । ସର୍ଦ୍ଦାର କର୍ତ୍ତାର ସିଂ ଓଲଟି କହିଲେ, ''କାହିଁକି ପ୍ରାଣ ଭିକ୍ଷା କରିବି ? ମୋର ଯଦି ଆଉ ଗୋଟାଏ ପ୍ରାଣ ଥାନ୍ତା, ତେବେ ତାକୁ ମଧ୍ୟ ମୁଁ ଉତ୍ସର୍ଗ କରି ଦେଇଥାନ୍ତି ଦେଶ ମାତୃକାର ମୁକ୍ତି ପାଇଁ । ମୋର ଦୁଃଖ ଯେ ଭଗବାନ ମୋତେ ମାତ୍ର ଗୋଟିଏ ପ୍ରାଣର ଅଧିକାରୀ କରିଅଛନ୍ତି ।'' କି ଅଫୁରନ୍ତ ଦେଶଭକ୍ତି ଏହା ! ବର୍ଣ୍ଣନା କରିବାର ନୁହେଁ, ଅନୁଭବ କରିବାର କଥା ।

ଏହାର ଅଳ୍ପଦିନ ପରେ ୨ୟ ଲାହୋର ଷଡ଼ଯନ୍ତ୍ର ମକଦ୍ଦମା ଚାଲୁ ହୋଇ ସେଥିରେ ୧୧୨ ଜଣ ବିଦ୍ରୋହୀ ସୈନ୍ୟଙ୍କ ମଧ୍ୟରୁ ଉତ୍ତମ ସିଂ, ହିସାର ସିଂ, ବୀର ସିଂ, ରଙ୍ଗ ସିଂଙ୍କୁ ଫାଶୀ ଦିଆଗଲା । ସେମିତି ୩ୟ ମକଦ୍ଦମାରେ ବଳବନ୍ତ ସିଂ, ହରନାମ ସିଂ, ଅରୁର ସିଂ, ବାବୁରାମ, ମୌଲବୀ ଅବଦୁଲ୍ଲା ପ୍ରଭୃତି ଫାଶୀ ପାଇଲେ । ଏତଦ୍ ବ୍ୟତୀତ କେତେକଙ୍କୁ କୋର୍ଟ ମାର୍ସଲ କରାଯାଇ ଗୁଳି ମାଡ଼ରେ ଉଡ଼ାଇ ଦିଆଯାଇଥିଲା ଏବଂ ୨୩ ନମ୍ବର ଘୋଡ଼ା ସବାର ବାହିନୀର ସମସ୍ତ ସିପାହୀଙ୍କୁ ଫାଶୀ ଦିଆଯାଇଥିଲା ।

'କଂଗ୍ରେସ'ର ରକ୍ଷଣଶୀଳ ନେତୃତ୍ୱ ସେନାବାହିନୀର ସେହି ନିର୍ଭୀକ ଦେଶପ୍ରେମ ଓ ଚରମତ୍ୟାଗକୁ ଇତିହାସ ଗ୍ରନ୍ଥରେ ଉପଯୁକ୍ତ ସ୍ଥାନ ଦିଅନ୍ତୁ ବା ନ ଦିଅନ୍ତୁ- ଏହା ପରବର୍ତ୍ତୀ ଯୁଗରେ ହଜାର ହଜାର ସୈନ୍ୟଙ୍କୁ ମୁକ୍ତି ସଂଗ୍ରାମରେ ଝାସ ଦେବାକୁ ଅପୂର୍ବ ପ୍ରେରଣା ଓ ଉନ୍ମାଦନା ପ୍ରଦାନ କରିଥିଲା, କୌଣସି ନିରପେକ୍ଷ ଗବେଷକ ଏହା କେବେ ବିସ୍ମୃତ ହୋଇପାରିବ ନାହିଁ । ସେନାବାହିନୀର ବାରମ୍ବାର ବିଦ୍ରୋହ ବିଦେଶୀ ଶାସନକୁ ଯେଉଁ ଶକ୍ତ ଆଘାତ ଦେଇଥିଲା ତାହା କ୍ରମେ ଶାସନର ମୂଳଦୁଆକୁ ଦୁର୍ବଳ କରୁଥିଲା । ସୁତରାଂ ପରବର୍ତ୍ତୀ ଯୁଗରେ ନେତାଜୀ ସୁଭାଷଙ୍କର ଆଜାଦ୍ ହିନ୍ଦ୍ ବାହିନୀ ଓ ୧୯୪୬ର ନୌବିଦ୍ରୋହରେ ତାହା ଆତ୍ମପ୍ରକାଶ କରିଥିଲା ।



# ଆଜାଦ୍ ହିନ୍ଦ୍ ଫୌଜ

## -୧-

ବ୍ରିଟିଶ୍‌ର କୌଣସି ଏକ ଶତ୍ରୁରାଷ୍ଟ୍ରର ସାହାଯ୍ୟରେ ସଶସ୍ତ୍ର ଅଭିଯାନ ଦ୍ୱାରା ଭାରତରୁ ବ୍ରିଟିଶ୍ ଶାସନର ମୂଳୋତ୍ପାଟନ କରିବା ଲକ୍ଷ୍ୟରେ ନେତାଜୀ ଭାରତରୁ ଗୋପନରେ ପଳାୟନ କରିଥିଲେ ୧୯୪୧ ମସିହା ଜାନୁୟାରୀ ୧୬ ତାରିଖରେ । ସେତେବେଳେ ଇଂରେଜମାନଙ୍କ ବିରୁଦ୍ଧରେ କଂଗ୍ରେସ, କମ୍ୟୁନିଷ୍ଟ ଓ ଅନ୍ୟାନ୍ୟ ବାମପନ୍ଥୀ ଦଳମାନେ ଆନ୍ଦୋଳନ କରୁଥିଲେ । ସେ ଦୃଷ୍ଟିରୁ ସେତେବେଳେ ଜର୍ମାନୀ ବା ଜାପାନର କେହି କଂଗ୍ରେସର ଶତ୍ରୁ ନଥିଲେ । ବରଂ କଂଗ୍ରେସ ଦ୍ୱାରା ପରିଚାଳିତ ବ୍ରିଟିଶ୍ ବିରୋଧୀ ଆନ୍ଦୋଳନ ଜର୍ମାନୀ ଜାପାନର ସହାୟକ ଥିଲା । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ ଥିଲା ଏହି ଯେ ପୃଥିବୀର ଏକମାତ୍ର ସମାଜବାଦୀ ଦେଶ ସୋଭିଏତ୍ ରୁଷିୟା ସେତେବେଳେ ନାଜୀ ଜର୍ମାନୀ ଦ୍ୱାରା ଆକ୍ରାନ୍ତ ହୋଇନଥିଲା । ତେଣୁ ସେହି ଦୁଇ ଦେଶ ମଧ୍ୟରେ କୌଣସି ଶତ୍ରୁତା ମଧ୍ୟ ନଥିଲା । ତଥାପି ସୁଭାଷ ଭାରତରୁ ପଳାଇଯାଇ ସୋଭିଏତ୍ ରୁଷିୟାରେ ଆଶ୍ରୟ ନେବା ପାଇଁ ବହୁ ଚେଷ୍ଟା କରିଥିଲେ ।

କିନ୍ତୁ ରୁଷିୟାଠାରୁ କୌଣସି ଅନୁକୂଳ ଉତ୍ତର ନପାଇ ଶେଷରେ ସେ ବାଧ୍ୟ ହୋଇ ଇଟାଲୀ ଓ ଜର୍ମାନୀରେ ଆଶ୍ରୟ ନେଇ ସେହି ଦୁଇଟି ରାଷ୍ଟ୍ରର ସାହାଯ୍ୟରେ ବ୍ରିଟିଶ୍-ଭାରତ ସଶସ୍ତ୍ର ଅଭିଯାନର ପରିକଳ୍ପନା କଲେ ।

ସୁଭାଷଙ୍କର ସେହି ପରିକଳ୍ପନାରୁ ସୃଷ୍ଟି ହୋଇଥିଲା 'ଇଣ୍ଡିୟାନ୍ ଲିଜିୟନ୍' ବା 'ଆଜାଦ୍ ହିନ୍ଦ୍ ଫୌଜ' । ବିଶ୍ୱଯୁଦ୍ଧର ଘନଘଟା ଭିତରେ ତାହାର କେନ୍ଦ୍ର ବିନ୍ଦୁ ଇଟାଲୀ, ଜର୍ମାନୀ ଏବଂ ପରେ ଜାପାନରେ ସୁଭାଷଙ୍କର ଅଧିକାଂଶ ସମୟ ଅତିବାହିତ ହୋଇଥିଲେ ମଧ୍ୟ ଏବଂ ସେଥିପାଇଁ ସେ ନାଜୀବାଦୀ-ଫାସିସ୍ଟ ବାଦୀମାନଙ୍କର ସାହାଯ୍ୟ ସହଯୋଗ ଗ୍ରହଣ କରିଥିଲେ ସୁଦ୍ଧା ସେହି ସାହାଯ୍ୟ ସହଯୋଗର ବିନିମୟରେ ସେ ଗଣତନ୍ତ୍ର ବା ସମାଜବାଦ ଏବଂ ଭାରତର ''ଜାତୀୟ ସ୍ୱାଭିମାନ''କୁ ବଳି ଦେଇ ନଥିଲେ । ଭାରତର ଆତ୍ମ ମର୍ଯ୍ୟାଦାର ସୁରକ୍ଷା ଥିଲା ସୁଭାଷଙ୍କ ପକ୍ଷରେ ଅତ୍ୟନ୍ତ ମୂଲ୍ୟବାନ । ଭାରତରୁ 'ପଳାୟନ' କରିବା ମୁହୂର୍ତ୍ତଠାରୁ ଆରମ୍ଭ କରି ତଥାକଥିତ ଉଡ଼ାଜାହାଜ ଦୁର୍ଘଟଣାରେ ତଙ୍କର ରହସ୍ୟମୟ ଅନ୍ତର୍ଦ୍ଧାନ ପର୍ଯ୍ୟନ୍ତ ସୁଭାଷଙ୍କର ସମସ୍ତ କାର୍ଯ୍ୟକଳାପ, ଚିଠିପତ୍ର, ବେତାର ଭାଷଣ ଏବଂ ବନ୍ଦୀ

'ଆଜାଦହିନ୍ଦ୍ ଫୌଜ'ର 'ଲାଲକିଲ୍ଲା ବିଚାର' ପର୍ଯ୍ୟନ୍ତ ପ୍ରତ୍ୟେକ କ୍ଷେତ୍ରକୁ ବିଶ୍ଳେଷଣ କଲେ 'ସୁଭାଷ'ଙ୍କର ଉଜ୍ଜ୍ୱଳ ଚରିତ୍ରର ସେହି ଅମ୍ଳାନ ରୂପଟି ସ୍ପଷ୍ଟ ପ୍ରତିଭାତ ହୁଏ । ସୁତରାଂ ସ୍ୱାଧୀନତା ସଂଗ୍ରାମର ଅନ୍ତିମ ପର୍ଯ୍ୟାୟରେ ସୁଭାଷଙ୍କ ନେତୃତ୍ୱରେ ଭାରତୀୟ ସୈନ୍ୟ ବାହିନୀର ଗୌରବୋଜ୍ଜ୍ୱଳ ଅବଦାନକୁ ସେହି ଐତିହାସିକ ପଟ୍ଟଭୂମିରେ ହିଁ ଅନୁଶୀଳନ କରିବାକୁ ହେବ । ଅନ୍ୟଥା ସୁଭାଷଙ୍କ ପ୍ରତି ମୁଷ୍ଟିମେୟ ନେତୃସ୍ଥାନୀୟ ବ୍ୟକ୍ତି, ରକ୍ଷଣଶୀଳ ତଥା ପ୍ରତିକ୍ରିୟାଶୀଳ ଶକ୍ତିମାନଙ୍କର ବ୍ୟକ୍ତିଗତ ଅସୂୟା ତଥା ପ୍ରତ୍ୟକ୍ଷ ସଂଗ୍ରାମ ପ୍ରତି ଭୀତ ଓ କୁଣ୍ଠିତ ରାଜନୀତିଜ୍ଞମାନଙ୍କ ଦ୍ୱାରା ସୁଭାଷଙ୍କ ବିରୁଦ୍ଧରେ ଥିବା ଚିନ୍ତାଧାରାରେ ପ୍ରଭାବିତ ହୋଇ ସ୍ୱାଧୀନତା ସଂଗ୍ରାମରେ ସୈନ୍ୟବାହିନୀରେ ଅସାଧାରଣ କୃତିତ୍ୱର ନିରପେକ୍ଷ ମୂଲ୍ୟାୟନ କରିବା ସମ୍ଭବ ହେବ ନାହିଁ ।

ସୁଭାଷ ଜର୍ମାନୀରେ ପହଞ୍ଚିବାର ପ୍ରାୟ ପରେ ପରେ ହିଁ ସେଠାରେ ଭାରତର ସ୍ୱାଧୀନତା ସଂଗ୍ରାମକୁ ତ୍ୱରାନ୍ୱିତ କରିବା ପାଇଁ କାର୍ଯ୍ୟାନୁଷ୍ଠାନ ଆରମ୍ଭ ହୋଇ ଯାଇଥିଲା । ପଶ୍ଚିମ ୟୁରୋପ ବିଶେଷତଃ ନାଜୀ ଅଧିକୃତ ଦେଶମାନଙ୍କରେ ଥିବା ସ୍ୱାଧୀନତା ପ୍ରେମୀ ଭାରତୀୟ ମାନଙ୍କୁ ସଂଘଟିତ କରି ସେ ଏହି କାର୍ଯ୍ୟର ଶୁଭାରମ୍ଭ କରିଥିଲେ । ପ୍ରଥମେ 'ଫ୍ରି ଇଣ୍ଡିଆ ସେଣ୍ଟର' ଓ ''ଦି ଇଣ୍ଡିୟାନ୍ ଲିଜିୟନ୍'' ନାମକ ଦୁଇଟି ଗୁରୁତ୍ୱପୂର୍ଣ୍ଣ ସଙ୍ଗଠନ ସୁଭାଷ ସେଠାରେ ପହଞ୍ଚିବାର ମାତ୍ର ନଅମାସ ଭିତରେ ଗଢ଼ି ଦେଇଥିଲେ । ସେ ପୂର୍ବ ଏସିୟାରେ ପହଞ୍ଚିବା ପରେ ସେହି ଛାଞ୍ଚରେ ଗଠିତ ହୋଇଥିଲା- 'ଆଜାଦ୍ ହିନ୍ଦ୍ ସରକାର' ଓ 'ଆଜାଦ୍ ହିନ୍ଦ୍ ଫୌଜ୍' । ତାହାର ସର୍ବ ପ୍ରଥମ କାର୍ଯ୍ୟ ହୋଇଥିଲା ଭାରତବାସୀଙ୍କ ଉଦ୍ଦେଶ୍ୟରେ ବ୍ରିଟିଶ ବିରୋଧୀ ପ୍ରଚାର ଏବଂ ସେହି ଉଦ୍ଦେଶ୍ୟରେ ଜର୍ମାନୀରେ ବାସ କରୁଥିବା ପନ୍ଦର ଜଣ ଦେଶପ୍ରେମୀ ଭାରତୀୟଙ୍କ ଉପରେ ବେତାର ପ୍ରଚାର ଦାୟିତ୍ୱ ଅର୍ପଣ କରାଯାଇଥିଲା । 'ଆଜାଦ୍ ହିନ୍ଦ ରେଡିଓ' ନାମରେ ବେତାର କେନ୍ଦ୍ର ୧୯୪୧ ଅକ୍ଟୋବର ମାସରୁ କାର୍ଯ୍ୟ ଆରମ୍ଭ କରିଥିଲା ଓ ସେଠାରୁ ଇଂରାଜୀ, ହିନ୍ଦୁସ୍ଥାନୀ, ବଙ୍ଗଳା, ପାର୍ଶୀ, ତାମିଲ, ତେଲୁଗୁ ଓ ପୁସ୍ତୁ ଭାଷା (ଆଫଗାନିସ୍ଥାନୀ ଭାଷା)ରେ ପ୍ରଚାର ହେଉଥିଲା ।

ସୁଭାଷ ଜର୍ମାନୀ ଓ ଇଟାଲୀ ସରକାରର ସାହାଯ୍ୟରେ ସମସ୍ତ କାର୍ଯ୍ୟ କରୁଥିଲେ ସୁଦ୍ଧା ହିଟ୍‌ଲର ଓ ମୁସୋଲିନୀଙ୍କ ଫାସିବାଦ ଆଦର୍ଶର ଘୋର ବିରୋଧୀ ଥିଲେ । ବିଶେଷତଃ ହିଟଲର୍ ସହ ସୁଭାଷଙ୍କର ଆଦୌ ସୁସମ୍ପର୍କ ନଥିଲା । ତେଣୁ ତାଙ୍କର ସମସ୍ତ ଆଲୋଚନା ହେଉଥିଲା ହିଟ୍‌ଲରଙ୍କ ସହକର୍ମୀ ମାନଙ୍କ ସହ । ସେହି ଆଲୋଚନାରେ ସ୍ଥିର ହୋଇଥିଲା ଯେ ଯେଉଁ ବ୍ରିଟିଶ୍ -ଭାରତୀୟ ଯୁଦ୍ଧ ବନ୍ଦୀମାନେ ଜର୍ମାନୀରେ ଯୁଦ୍ଧ ବନ୍ଦୀ ଭାବରେ ରହିଥିଲେ ସେମାନଙ୍କୁ ନେଇ ସୁଭାଷ ଏକ ମୁକ୍ତିବାହିନୀ ଗଠନ କରିବେ (ଦି ଇଣ୍ଡିୟାନ୍ ଲିଜିଅନ) ଏବଂ ଉପଯୁକ୍ତ ସମୟରେ ଭାରତର ଉତ୍ତର ପଶ୍ଚିମ ସୀମାନ୍ତ ବାଟେ

ସେହି 'ମୁକ୍ତି-ବାହିନୀ' ଭାରତରେ ବ୍ରିଟିଶ୍ ଯୁଦ୍ଧ ଘାଟୀ ଉପରେ ଚଢ଼ାଉ କରି କ୍ରମେ ଅଭ୍ୟନ୍ତରକୁ ପ୍ରବେଶ କରିବେ ଓ ଭାରତରେ ଚାଲିଥିବା ସ୍ୱାଧୀନତା ସଂଗ୍ରାମକୁ ତୀବ୍ର କରିବେ । ସେହି ମୁକ୍ତିବାହିନୀ ସମ୍ପୂର୍ଣ୍ଣ ସ୍ୱାଧୀନ ଭାବେ କାର୍ଯ୍ୟ କରିବେ । ଅର୍ଥାତ୍ ମୁକ୍ତି ବାହିନୀର ସର୍ବୋଚ୍ଚ କର୍ତ୍ତାରୂପେ ସୁଭାଷଙ୍କ ନିର୍ଦ୍ଦେଶ ବ୍ୟତୀତ ଅନ୍ୟ କାହାରି ନିର୍ଦ୍ଦେଶ ମାନିବାକୁ ବାଧ ହେବେ ନାହିଁ ।

ସେହି ନିଷ୍ପତ୍ତି ଅନୁସାରେ ସୁଭାଷ ତାଙ୍କର ପ୍ରଧାନ ସହକର୍ମୀ ଏନ୍. ଜି. ସ୍ୱାମୀ ଓ ଆବିଦ୍ ହାସାନ୍‌ଙ୍କ ସହ ଉତ୍ତର ଆଫ୍ରିକାରେ ଅନାବର୍ଗ ଯୁଦ୍ଧବନ୍ଦୀ ଶିବିରକୁ ଯାଇ ସେଠାରେ ଥିବା ଭାରତୀୟ ସୈନ୍ୟମାନଙ୍କୁ ଭେଟିଥିଲେ ଏବଂ 'ମୁକ୍ତି ବାହିନୀ' ଗଠନ କରିବା ପାଇଁ ସେମାନଙ୍କୁ ବୁଝାଇଥିଲେ । ଯେଉଁ ସୈନ୍ୟମାନେ ବ୍ରିଟିଶ ସରକାର ପ୍ରତି ଆଜୀବନ ଅନୁରକ୍ତ ଥିଲେ ଏବଂ ନିଜ ନିଜର ପ୍ରାଣ ବିନିମୟରେ ବ୍ରିଟିଶ ସରକାରର ସ୍ୱାର୍ଥରକ୍ଷା କରିବାକୁ ଶପଥ ଗ୍ରହଣ କରିଥିଲେ । ସେମାନଙ୍କୁ ବ୍ରିଟିଶ ଶାସନ ବିରୁଦ୍ଧରେ ଯୁଦ୍ଧ କରିବା ପାଇଁ ପ୍ରବର୍ତ୍ତାଇବା କିଛି ସହଜ କାର୍ଯ୍ୟ ନଥିଲା । ତଥାପି ସୁଭାଷଙ୍କର ବିଶାଳ ବ୍ୟକ୍ତିତ୍ୱ ଏବଂ ଅନମନୀୟ ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ ସେମାନେ ସୁଭାଷଙ୍କ ପରିକଳ୍ପିତ ମୁକ୍ତି ବାହିନୀରେ ଯୋଗ ଦେବାକୁ ଅଙ୍ଗୀକାର କରିଥିଲେ ।

ପ୍ରଥମେ ମାତ୍ର ପନ୍ଦର ଜଣ ଯୁଦ୍ଧବନ୍ଦୀଙ୍କୁ ନେଇ 'ମୁକ୍ତି ବାହିନୀ'ରେ କ୍ରମେ ତିନି ହଜାର ସୈନ୍ୟ ଯୋଗ ଦେବା ଏକ ଅସାମାନ୍ୟ ଘଟଣା ଥିଲା । ପୂର୍ବରୁ ଟ୍ରେନିଂ ପ୍ରାପ୍ତ ସେହି ମୁକ୍ତି ସେନାନୀଙ୍କୁ ଜର୍ମାନୀ ଯୁଦ୍ଧ ଶିକ୍ଷକ ଓ୍ୱାଲଟର ହରବିଦ୍ କେତେକ ବିଶେଷ ଯୁଦ୍ଧ କୌଶଳ ଶିଖାଇଥିଲେ । ସେହି 'ମୁକ୍ତି ବାହିନୀ'ର ଶପଥ ଗ୍ରହଣ ଉତ୍ସବ ଏକ ସ୍ମରଣୀୟ ଦିବସ ଥିଲା ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସରେ । ଲମ୍ଫ ପ୍ରଦାନ କରୁଥିବା ଏକ ବ୍ୟାଘ୍ରର ଚିତ୍ରଥିବା ତ୍ରିରଙ୍ଗା ପତାକା ତଳେ ଜଣ ଜଣ କରି ଶପଥ ନେଲେ ।

''ଭଗବାନଙ୍କ ନାମରେ ମୁଁ ଏହି ଶପଥ ଗ୍ରହଣ କରୁଅଛି ଯେ ମୋର' ପବିତ୍ର ଜନ୍ମଭୂମି ଭାରତ ବର୍ଷ ଓ ତାହାର ଚାଳିଶି କୋଟି ଅଧିବାସୀଙ୍କୁ ପରାଧୀନତାରୁ ମୁକ୍ତ କରିବା ପାଇଁ ମୋର ନେତା ଶ୍ରୀଯୁକ୍ତ ସୁଭାଷ ଚନ୍ଦ୍ର ବୋଷଙ୍କର ନେତୃତ୍ୱ ପ୍ରତି ମୁଁ ସମ୍ପୂର୍ଣ୍ଣ ଅନୁରକ୍ତ ରହିବି ଏବଂ ସେଥିପାଇଁ ମୋର ସର୍ବସ୍ୱ, ଏପରିକି ମୋର ଜୀବନ ବିସର୍ଜନ କରିବା ପାଇଁ ସର୍ବଦା ପ୍ରସ୍ତୁତ ରହିବି ।''

ଶପଥ ଗ୍ରହଣ ଉତ୍ସବ ପରେ ସୁଭାଷ ଏକ ଉଦ୍ଦୀପନାମୟୀ ଭାଷଣ ଦେଇ କହିଲେ, ''ବନ୍ଧୁଗଣ, ଆପଣମାନେ ଶପଥଗ୍ରହଣ କରିଅଛନ୍ତି ଯେ ଏହି ତ୍ରିରଙ୍ଗା ଜାତୀୟ ପତାକା ତଳେ ଠିଆ ହୋଇ ଆପଣ ମୃତ୍ୟୁ ପର୍ଯ୍ୟନ୍ତ ଲଢ଼େଇ କରିବେ । ଆପଣମାନେ ଚାଳିଶି କୋଟି ଭାରତବାସୀଙ୍କ ଦାୟିତ୍ୱ ମୁଣ୍ଡପାତି ଗ୍ରହଣ କରିଅଛନ୍ତି । ଆପଣଙ୍କର ଯାହା କିଛି ଅଛି,

ଆଜିଠାରୁ ତାହା ଭାରତର ଜାତୀୟ ସମ୍ପତ୍ତି ଅଟେ । ଆଜାଦ୍ ହିନ୍ଦ୍ ଫୌଜର ଅଗ୍ରଗାମୀ ସୈନିକ ଭାବରେ ଆପଣମାନେ ପ୍ରକୃତ ଗୌରବର ଅଧିକାରୀ । ସ୍ୱାଧୀନତା ସଂଗ୍ରାମର ଇତିହାସର ଆପଣମାନଙ୍କ ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ଏହି ସଂଗ୍ରାମର ପ୍ରତ୍ୟେକ ଶହୀଦର ସମ୍ମାନାର୍ଥେ ସ୍ୱାଧୀନ ଭାରତରେ ସ୍ମୃତି ସ୍ତମ୍ଭରେ ଶ୍ରଦ୍ଧାର୍ଘ୍ୟ ଅର୍ପଣ କରିବେ ।''

''ଯଦିଓ ଆମ୍ଭେମାନେ ବିଦେଶରେ ଏହି ଉତ୍ସବ ପାଳନ କରୁଅଛନ୍ତି, ତଥାପି ଆମ୍ଭମାନଙ୍କର ଧ୍ୟାନ, ଜ୍ଞାନ, ଚିନ୍ତା ଓ ଭାବନା ସବୁ କିଛି ପଡ଼ି ରହିଛି ନିଜର ମାତୃଭୂମିରେ । ଯେତେ ଶୀଘ୍ର ଆମ୍ଭେମାନେ ସବୁ ଦିଗରୁ ନିଜକୁ ପ୍ରସ୍ତୁତ କରିନେବା, ଯାହା ଫଳରେ କି ଆମ୍ଭେମାନେ ସ୍ୱେଚ୍ଛାରେ ଯେଉଁ ଦାୟିତ୍ୱ ଗ୍ରହଣ କରି ନେଇଛୁ, ତାହାକୁ ସାର୍ଥକ ଭାବେ ପାଳନ କରି ପାରିବୁ । ସେ ଦିନ ଆଉ ଅଧିକ ବିଳମ୍ବ ନାହିଁ । ଯେଉଁଦିନ ଆପଣମାନଙ୍କର ଏହି ସାମରିକ ଶକ୍ତିକୁ ପ୍ରତ୍ୟକ୍ଷ ଭାବରେ କାର୍ଯ୍ୟରେ ଲଗାଇ ପାରିବେ ।''

''ଆଜି ଆମ୍ଭେମାନେ ସ୍ୱାଧୀନତା ଅର୍ଜନ କରିବା ପାଇଁ ଜାତୀୟ ପତାକା ତଳେ ଶପଥ ଗ୍ରହଣ କରି ଅଛନ୍ତି । ଏଭଳି ଦିନ ଆସିବ, ଯେତେବେଳେ ଆପଣମାନେ ଲାଲ୍ କିଲ୍ଲା ଉପରେ ଛିଡ଼ା ହୋଇ ଏହି ଜାତୀୟ ପତାକାକୁ ଅଭିବାଦନ ଜଣାଇବେ । ମନେ ରଖନ୍ତୁ, ସ୍ୱାଧୀନତା ଅର୍ଜନ ପାଇଁ ସର୍ବୋଚ୍ଚ ମୂଲ୍ୟ ଦେବାକୁ ପଡ଼ିବ । ଭିକ୍ଷା ଦ୍ୱାରା କେବେଁ ସ୍ୱାଧୀନତା ମିଳେ ନାହିଁ । ଆସେ ଶକ୍ତିର ବିନିମୟରେ, ଆସେ ରକ୍ତର ବିନିମୟରେ । ଆମ୍ଭେମାନେ କଦାପି କୌଣସି ବିଦେଶୀ ଶକ୍ତି ପାଖରେ ସ୍ୱାଧୀନତା ଭିକ୍ଷା କରି ପାରିବା ନାହିଁ । ଯଥାଯୋଗ୍ୟ ମୂଲ୍ୟ ଦେଇ ଆମ୍ଭେମାନେ ସ୍ୱାଧୀନତା ଅର୍ଜନ କରିବୁ । ମୁଁ ଶପଥ କରି କହୁଅଛି ଯେ ଆମ୍ଭେମାନେ ଯେତେବେଳେ ସମସ୍ତେ ମିଶି ଭାରତ ଆଡ଼କୁ ଆଗେଇ ଯିବା ସେତେବେଳେ ମୁଁ ଆପଣମାନଙ୍କ ଆଗରେ ରହି ଏହି 'ମୁକ୍ତି ବାହିନୀ'କୁ ପରିଚାଳନା କରିବି । ଜୟହିନ୍ଦ୍, ଇନ୍‌କ୍ୱିଲାବ୍ ଜିନ୍ଦାବାଦ୍ ।''

ସୁଭାଷ ମନପ୍ରାଣ ଢାଳି ଦେଇ 'ଫୌଜ'କୁ ସବୁଦୃଷ୍ଟିରୁ ଦୃଢ଼ କରିବାକୁ ଲାଗି ପଡ଼ିଲେ । ତାଙ୍କ ଜୀବନର ଏକ ମହାନ୍ ସ୍ୱପ୍ନ ସଫଳ ହେବାକୁ ଯାଉଥିଲା । ୧୯୨୮-୨୯ ମସିହା କଲିକତା କଂଗ୍ରେସ ଅଧିବେଶନରେ ସାମରିକ ଢାଞ୍ଚାରେ କଂଗ୍ରେସ ସେବା ଦଳକୁ ପୁନର୍ଗଠିତ କରି ଦେଶର ସ୍ୱାଧୀନତା ଅର୍ଜନ ପାଇଁ ଏକ ''ସଶସ୍ତ୍ର ମୁକ୍ତି ବାହିନୀ'' ର ଅପରିହାର୍ଯ୍ୟ ଆବଶ୍ୟକତା ପ୍ରତି କଂଗ୍ରେସ ପ୍ରତିନିଧିମାନଙ୍କର ଦୃଷ୍ଟି ଆକର୍ଷଣ କରିବା ପାଇଁ ସେ ଉଦ୍ୟମ କରିଥିଲେ । ସେ ଆଜି ଗୋଟିଏ ପାଦ ଆଗେଇ ଯାଇଛନ୍ତି । ସେ ଆନନ୍ଦରେ ଆତ୍ମହରା । ଫୌଜର ସ୍ୱାଧୀନତା ପ୍ରେମୀ ସୈନିକ ଗଣ ମଧ ଜୀବନର ନୂତନ ସ୍ୱାଦ ଅନୁଭବ କରୁଥିଲେ । ସୁଭାଷଙ୍କ ମନ ଭିତରେ ଅଫୁରନ୍ତ ଉତ୍ସାହ, ଅସରନ୍ତି ଉଦ୍ଦୀପନା, ଦେଶମୁକ୍ତି ପାଇଁ ତାଙ୍କର ଆନ୍ତରିକ ବ୍ୟାକୁଳତା ସର୍ବୋପରି ମୁକ୍ତି ସୈନିକ ମାନଙ୍କ ପ୍ରତି ତାଙ୍କର ଅକୃତ୍ରିମ ସ୍ନେହ,

ଶ୍ରଦ୍ଧା ତଥା ଅକୁଣ୍ଠ ବିଶ୍ୱାସ ତାଙ୍କୁ ସୈନ୍ୟ ଶିବିରରେ ଅତିଶୟ ପ୍ରିୟ କରି ଦେଇଥିଲା ଏବଂ ସେମାନେ ସ୍ୱତଃସ୍ଫୁର୍ତ୍ତ ଭାବରେ ତାଙ୍କୁ 'ସୁଭାଷ ବାବୁ' ନୁହେଁ 'ନେତାଜୀ' ବୋଲି ସମ୍ବୋଧନ କରିବାକୁ ଆରମ୍ଭ କଲେ । ତାହାହିଁ ଇତିହାସରେ ଚିହ୍ନିତ ହେଲା ସୁଭାଷଙ୍କର ଏକମାତ୍ର ପରିଚୟ ଭାବେ । ନେତା ତ ବହୁତ ଥିଲେ, କିନ୍ତୁ ସେ ହେଲେ ନେତାଜୀ । ୧୯୪୧ ସେପ୍ଟେମ୍ବର ମାସରେ 'ଆଜାଦ ହିନ୍ଦ୍ ଫୌଜ' ର ପ୍ରଥମ ସମର କୌଶଳ ପ୍ରଦର୍ଶିତ ହୋଇଥିଲା । ଏହି ପ୍ରଦର୍ଶନୀକୁ ନେତାଜୀଙ୍କ ସହ ବର୍ଲିନ୍‌ରେ ଥିବା ଜାପାନୀ ମିଲିଟାରୀ ଆଟାଚୀ କଲୋନେଲ୍ ୟାମାମାଟୋ ମଧ ନିରୀକ୍ଷଣ କରିଥିଲେ । 'ଆଜାଦ୍ ହିନ୍ଦ ଫୌଜ'ର ସେହି ଅପୂର୍ବ ସମର କୌଶଳ ଦେଖି ସମସ୍ତେ ସ୍ତମ୍ଭୀତ ହୋଇଯାଇଥିଲେ ।

'ଆଜାଦ୍ ହିନ୍ଦ ସରକାର'କୁ ଜର୍ମାନୀ, ଇଟାଲୀ ଓ ଜାପାନ ପ୍ରଭୃତି ବ୍ରିଟିଶ-ବିରୋଧୀ ରାଷ୍ଟ୍ରଗଣ କୁଟନୈତିକ ସ୍ୱୀକୃତି ପ୍ରଦାନ କରିଥିଲେ । କିନ୍ତୁ ଏ ସବୁ ସଫଳତା ସତ୍ତ୍ୱେ ''ଆଜାଦ୍ ହିନ୍ଦ୍ ସରକାର'' ଦ୍ୱାରା ଚିଠା କରାଯାଇଥିବା ''ଭାରତର ସ୍ୱାଧୀନତା ସମ୍ପର୍କୀୟ ଘୋଷଣାନାମା'' ପ୍ରତି ଜର୍ମାନୀ ସରକାର କୌଣସି ଆଗ୍ରହ ପ୍ରକାଶ କଲା ନାହିଁ ଏବଂ ଟାଳଟୁଳ ନୀତି ଅବଲମ୍ବନ କଲା । ନେତାଜୀ ଚାହିଁଥିଲେ ଯେ ବ୍ରିଟିଶ୍ ବିରୋଧୀ ତିନି ରାଷ୍ଟ୍ର-ଜାପାନ୍, ଇଟାଲୀ ଓ ଜର୍ମାନୀ ପ୍ରକାଶ୍ୟ ଘୋଷଣା କରିବେ ଯେ ''ଯୁଦ୍ଧଶେଷ ହେବା ପରେ ଭାରତର ସ୍ୱାଧୀନତାକୁ ସେମାନେ ସ୍ୱୀକାର କରିବେ ।'' ଇଟାଲୀର ଡିକ୍ଟେଟର ମୁସୋଲିନୀ ସେହି ମିଳିତ ଘୋଷଣାନାମାରେ ସ୍ୱାକ୍ଷର କଲା । ଜାପାନ ମଧ ସେଥିରେ ଏକମତ ହେଲା, କିନ୍ତୁ ହିଟଲର ଭିନ୍ନ ମତ ପ୍ରକାଶ କଲା । ସେ କହୁଥିଲା ଯୁଦ୍ଧ ଏକ ନିଷ୍ପତ୍ତି ମୂଳକ ସ୍ଥିତିରେ ନ ପହଞ୍ଚିବା ପର୍ଯ୍ୟନ୍ତ ଏଭଳି ଘୋଷଣାନାମା ପ୍ରତି ସ୍ୱୀକୃତି ପ୍ରଦାନ କରିବା ନିରର୍ଥକ ହେବ । ସେତେବେଳେ ଜର୍ମାନୀ-ସୋଭିଏତ୍ ରୁଷିଆ ଯୁଦ୍ଧ ଜର୍ମାନୀର ପ୍ରତିକୂଳ ଦିଗରେ ଗତି କରୁଥାଏ । ମୂଳରୁ ନେତାଜୀ ଜର୍ମାନୀର ସେହି ଦୁଃସାହସିକତାର ବିରୋଧ କରୁଥିଲେ ଏବଂ ଜର୍ମାନୀ ସୋଭିଏତ୍ ସଂଘର୍ଷ ଆରମ୍ଭ ହେଲେ ଭାରତରେ ଚାଲିଥିବା ବ୍ରିଟିଶ୍ ବିରୋଧୀ ସଂଗ୍ରାମ ଶିଥିଳ ପଡ଼ିବାକୁ ବାଧ ହେବ । କାରଣ ସେଭଳି ପରିସ୍ଥିତିରେ ବ୍ରିଟେନ୍ ଏବଂ ସୋଭିଏତ୍ ସ୍ୱାର୍ଥ ଏକାକାର ହୋଇଯିବେ । ଦ୍ୱିତୀୟତଃ ସୋଭିଏତ୍ ରୁଷିଆକୁ ଜର୍ମାନୀ କେବେ ହେଲେ ପରାଜିତ କରିବା ସମ୍ଭବ ନୁହେଁ ବୋଲି ନେତାଜୀ ଠିକ୍ ଅଟକଳ କରିଥିଲେ । ସୁତରାଂ ଭାରତର ସ୍ୱାଧୀନତା 'ଘୋଷଣାନାମା' ପ୍ରତି ଜର୍ମାନୀର ସେହି ଉଦାସୀନତାରେ ନେତାଜୀ ଆଦୌ ବିସ୍ମିତ ହୋଇ ନଥିଲେ । ସେ ଦୃଷ୍ଟିରୁ ସେ ଅଧିକ ଦିନ ଜର୍ମାନୀରେ ଅଟକି ରହିବାର କୌଣସି ପ୍ରାସଙ୍ଗିକତା ନଥିଲା । ବରଂ ଜାପାନ ଆମେରିକା ଓ ବ୍ରିଟେନ୍ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିସାରିଥିବା ଦୃଷ୍ଟିରୁ ତାଙ୍କର ଭବିଷ୍ୟତ ଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ ୟୁରୋପ ଅପେକ୍ଷା ପୂର୍ବ ଏସିୟା ଅଧିକ ଅନୁକୂଳ ହେବ ବୋଲି ନେତାଜୀ ଅନୁଭବ କରୁଥିଲେ ।

-୨-

ଜର୍ମାନୀରେ ଯେଉଁ ସମୟରେ (୧୯୪୧ ସେପ୍ଟେମ୍ବର) ନେତାଜୀ 'ଆଜାଦ୍ ହିନ୍ଦ୍ ଫୌଜ' ଗଠନ କରିଥିଲେ । ତାହାର ମାତ୍ର ତିନି ମାସ ପରେ ନେତାଜୀଙ୍କ ଭଳି ଅନ୍ୟ ଏକ ଭାରତୀୟ ବିପ୍ଳବୀ ରାସ ବିହାରୀ ବୋଷ ମଧ୍ୟ ବନ୍ଦୀ ଭାରତୀୟ ସୈନ୍ୟଙ୍କୁ ନେଇ ଅନ୍ୟ ଏକ 'ମୁକ୍ତି ବାହିନୀ' ପୂର୍ବ ଏସିୟାରେ ଗଠନ କରିଥିଲେ । ଜାପାନ ଯୁଦ୍ଧରେ ଯୋଗ ଦେଇ ବ୍ରିଟେନ ଓ ଆମେରିକା ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି ଦେବା ଫଳରେ ୨ୟ ବିଶ୍ୱଯୁଦ୍ଧର ଏକ ଗୁଣାତ୍ମକ ପରିବର୍ତ୍ତନ ସଂଘଟିତ ହେଲା । କାରଣ ବ୍ରିଟେନ୍ ବିରୁଦ୍ଧରେ ଯେଉଁ ଯୁଦ୍ଧ ସୁଦୂର ୟୁରୋପ ରଣାଙ୍ଗନରେ ହେଉଥିଲା, ତାହା ହଠାତ୍ ଭାରତର ଦ୍ୱାର ଦେଶରେ ପହଞ୍ଚି ଗଲା । ଯେଉଁ ଭାରତୀୟ ବିପ୍ଳବୀମାନେ ସଶସ୍ତ୍ର ଯୁଦ୍ଧ ବାଟରେ ଭାରତର ସ୍ୱାଧୀନତା ଅର୍ଜନ କରିବାର ସ୍ୱପ୍ନ ଦେଖୁଥିଲେ, ସେମାନେ ବ୍ରିଟେନ୍ ବିରୁଦ୍ଧରେ ଜାପାନର ଯୁଦ୍ଧ ଘୋଷଣାରେ ବିଶେଷ ଉତ୍ସାହିତ ହୋଇପଡ଼ିଲେ । ସେହି ବିପ୍ଳବୀ ଭାରତୀୟମାନଙ୍କ ମଧ୍ୟରେ ରାସବିହାରୀ ଥିଲେ ଅନ୍ୟତମ । ଭାରତରେ ବିଭିନ୍ନ ସଶସ୍ତ୍ର ଅଭିଯାନରେ ନେତୃତ୍ୱ ନେଇ ସେ ବ୍ରିଟିଶ୍ ଶାସକମାନଙ୍କର ଚକ୍ଷୁଃଶୂଳ ହୋଇଥିଲେ । ୧୯୧୧ ମସିହାରେ ଭାରତର ରାଜଧାନୀ କଲିକତାରୁ ଦିଲ୍ଲୀକୁ ସ୍ଥାନାନ୍ତରିତ ହେବା ଅବସରରେ ବ୍ରିଟିଶ୍ ଶକ୍ତିର ଅହମିକା ପ୍ରଦର୍ଶନ କରିବା ଉଦ୍ଦେଶ୍ୟରେ ଦିଲ୍ଲୀ ରାଜପଥରେ ବଡ଼ଲାଟ୍‌ଙ୍କର ଯେଉଁ ବର୍ଣ୍ଣାଢ଼୍ୟ ଶୋଭାଯାତ୍ରା ହୋଇଥିଲା ରାସ ବିହାରୀ ନାରୀ ବେଶରେ ସେହି ଶୋଭାଯାତ୍ରା ଉପରକୁ ଏକ ମାରାତ୍ମକ ବୋମା ନିକ୍ଷେପ କରି ବଡ଼ଲାଟକୁ କ୍ଷତବିକ୍ଷତ କରିବା ସଙ୍ଗେ ସଙ୍ଗେ ଶୋଭାଯାତ୍ରାକୁ ଛିନ୍ନଛତ୍ର କରିଦେଇଥିଲେ । ରାସ ବିହାରୀଙ୍କୁ ଧରିବା ପାଇଁ ପ୍ରାୟ ତିନିବର୍ଷ କାଳ ସରକାରକୁ ଅକ୍ଳାନ୍ତ ଉଦ୍ୟମ କରିବାକୁ ପଡ଼ିଥିଲା । କିନ୍ତୁ ସେ ଭିନ୍ନ ଭିନ୍ନ ବେଶରେ ଓ ବିଭିନ୍ନ ସ୍ଥାନରେ ଆତ୍ମଗୋପନ କରିବା ଫଳରେ ପୋଲିସ୍‌ର ସମସ୍ତ ଉଦ୍ୟମ ବ୍ୟର୍ଥ ହୋଇଥିଲା । ସେହି ଆତ୍ମଗୋପନ କାଳରେ ୧୯୧୪ ମସିହାରେ ସେ ସାରାଭାରତରେ ଏକ ସଙ୍ଗେ ବିଦ୍ରୋହ ଆରମ୍ଭ କରିବାର ଯୋଜନା କରି କିପରି ବିଫଳ ହୋଇଥିଲେ, ତାହା ପୂର୍ବରୁ ଆଲୋଚିତ ହୋଇଛି । ଶେଷରେ ୧୯୧୫ ମସିହାରେ ସେ ଅନନ୍ୟୋପାୟ ହୋଇ ଛଦ୍ମ ବେଶରେ ଜାପାନ ପଳାଇ ଯାଇଥିଲେ । ତାଙ୍କୁ ସେଠାରୁ ଗିରଫ କରିବା ପାଇଁ ବ୍ରିଟିଶ ସରକାରର ଉଦ୍ୟମକୁ ବ୍ୟର୍ଥ କରିବାକୁ ରାସ ବିହାରୀଙ୍କୁ ଜାପାନର ନାଗରିକ ହେବାକୁ ପଡ଼ିଲା । ସେହି ଦିନଠାରୁ ପ୍ରାୟ ତିରିଶ ବର୍ଷ କାଳ ସେ ଭାରତର ସ୍ୱାଧୀନତା ପାଇଁ ଏକ ସଶସ୍ତ୍ର ବିଦ୍ରୋହ କରିବା ପାଇଁ କମ୍ ଉଦ୍ୟମ କରିନଥିଲେ । ଯାହା ହେଉ, ୧୯୪୧ରେ ଜାପାନ ବ୍ରିଟେନ୍ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି ଦେବାରୁ ରାସ ବିହାରୀଙ୍କୁ ସେ ସୁଯୋଗ ମିଳିଯାଇଥିଲା ।

ରାସ ବିହାରୀଙ୍କ ସମେତ ଅନ୍ୟ ଅନେକ ଭାରତୀୟ ବିପ୍ଳବୀ ମଧ୍ୟ ସେହି ସମୟରେ ପୂର୍ବ ଏସିୟାର ବିଭିନ୍ନ ରାଜ୍ୟରେ ବାସ କରୁଥିଲେ । ବିପ୍ଳବୀ ବାବା ଅମର ସିଂ, ବର୍ମା

(ମୀୟାମାର)ର ମାଣ୍ଡାଲେ ଜେଲ୍‌ରେ ୨୨ ବର୍ଷ କାଳ କାରାଦଣ୍ଡ ଭୋଗିଥିଲେ । ସେ ଜେଲରୁ ମୁକ୍ତ ହୋଇ ଥାଇଲ୍ୟାଣ୍ଡରେ 'ଭାରତୀୟ ସ୍ୱାଧୀନତା ସଂଘ' ଗଠନ କରିଥିଲେ । ଏତଦ୍ ବ୍ୟତୀତ ଜ୍ଞାନୀ ପ୍ରୀତମ୍ ସିଂ, ବାବା ଉସ୍‌ମାନ ଖାଁ ଓ ସତ୍ୟାନନ୍ଦ ପୁରୀ ପ୍ରଭୃତି ସଶସ୍ତ୍ର ବିପ୍ଳବୀମାନେ ମଧ୍ୟ ଟୋକିଓ ଠାରେ ଏକତ୍ରିତ ହୋଇ ସ୍ୱାଧୀନତା ସଂଗ୍ରାମକୁ ଆଗେଇ ନେବା ପାଇଁ ବିଚାର ବିମର୍ଷ ଆରମ୍ଭ କରିଦେଇଥିଲେ । ଚାହୁଁ ଚାହୁଁ ପୂର୍ବ ଏସିୟାରେ ବାସ କରୁଥିବା ପ୍ରାୟ ତିରିଶି ଲକ୍ଷ ଭାରତୀୟ 'ଭାରତର ସ୍ୱାଧୀନତା ସଂଘ' ବା 'ଇଣ୍ଡିୟାନ୍ ଇଣ୍ଡିପେଣ୍ଡେଣ୍ଟଲିଗ୍'ରେ ଯୋଗ ଦେଲେ ।

ଏସିଆ ମହାଦେଶ ବହୁଦିନରୁ ବ୍ରିଟିଶ୍ ସାମ୍ରାଜ୍ୟବାଦର ଶୋଷଣ ଏବଂ ନିର୍ଯ୍ୟାତନାର ଶିକାର ହୋଇ ରହିଥିଲା । ଇଂରେଜମାନେ ଏସିଆ, ଆଫ୍ରିକା ଓ ଲାଟିନ୍ ଆମେରିକାର ଉପନିବେଶ ଗୁଡ଼ିକୁ ଅତ୍ୟନ୍ତ ହୀନ ଦୃଷ୍ଟିରେ ଦେଖୁଥିଲେ ଏବଂ ୟୁରୋପୀୟ ରାଷ୍ଟ୍ରମାନଙ୍କ ଦ୍ୱାରା ଚିରଦିନ ଶୋଷିତ ହେବା ପାଇଁ ବିଧି ନିର୍ଦ୍ଦେଶିତ ବୋଲି ସେମାନେ ଆସ୍ଫାଳନ ମଧ୍ୟ କରୁଥିଲେ । ଇଂରେଜମାନଙ୍କ ସାମ୍ରାଜ୍ୟ ବିସ୍ତାରର ଇତିହାସ କେବଳ ସାମରିକ ବିଜୟର ଇତିହାସ । ପରାଜୟର ଗ୍ଳାନି ଇଂରେଜମାନେ କଦାଚିତ୍ ଅନୁଭବ କରିଥିଲେ । ୨ୟ ମହାଯୁଦ୍ଧରେ ପ୍ରଥମ ଥର ପାଇଁ ସେମାନେ ସେହି ପରାଜୟ ଜନିତ ଗ୍ଳାନି ଅନୁଭବ କଲେ ଏବଂ ତାହା ପୁଣି ଜାପାନ ଭଳି ଏକ ଏସିଆ ରାଷ୍ଟ୍ର ହାତରେ । ତାହା ଇଂରେଜ ମାନଙ୍କ ପକ୍ଷରେ ଯେତିକି ବେଦନା ଦାୟକ ଥିଲା, ଏସିଆବାସୀଙ୍କ ପକ୍ଷରେ ଥିଲା ତାହା ତତୋଧିକ ଉତ୍ସାହଜନକ । ବ୍ରିଟେନ୍ ଆମେରିକା ଉପରେ ଜାପାନର ବିଜୟକୁ ସ୍ୱାଧୀନତା ପ୍ରେମୀ ଭାରତୀୟ ମାନେ ବାସ୍ତବରେ 'ଭାରତର ବିଜୟ' ବୋଲି ବିଚାର କରୁଥିଲେ । କିନ୍ତୁ ଏହି ସବୁ ଆନନ୍ଦ ଉଲ୍ଲାସ ସତ୍ତ୍ୱେ ଭାରତର ସ୍ୱାଧୀନତା ସଂଗ୍ରାମ ପ୍ରବାସୀ ଭାରତୀୟ ମାନେ ପ୍ରତ୍ୟକ୍ଷ ଭାବେ ସାହାଯ୍ୟ କରିବାର ସୁଯୋଗ ବା କଣ ଥିଲା ?

ଏଣେ ୨ୟ ବିଶ୍ୱଯୁଦ୍ଧ ଆରମ୍ଭ ହେବା ସଙ୍ଗେ ସଙ୍ଗେ ଭାରତର ତତ୍‌କାଳୀନ ବଡ଼ଲାଟ ଲିନ୍‌ଲିଥ୍ ଗୋ ସେତେବେଳେ ଭାରତର ବିଭିନ୍ନ ପ୍ରଦେଶରେ ରହିଥିବା କଂଗ୍ରେସ ସରକାର ବା ନିଖିଳ ଭାରତ କଂଗ୍ରେସ କମିଟିର ଅଜ୍ଞାତରେ ଭାରତକୁ ସେ ଯୁଦ୍ଧରେ ସଂଯୁକ୍ତ କରି ଯୁଦ୍ଧ ଘୋଷଣା କରିଦେଲେ । ଏହାର ପ୍ରତିବାଦରେ ସମସ୍ତ କଂଗ୍ରେସ ମନ୍ତ୍ରୀମଣ୍ଡଳ ଇସ୍ତଫା ପ୍ରଦାନ କଲେ । କମ୍ୟୁନିଷ୍ଟ ଓ ଅନ୍ୟ ବାମପନ୍ଥୀମାନେ ସରକାର ବିରୁଦ୍ଧରେ ତୁମୁଳ ଆନ୍ଦୋଳନ ଆରମ୍ଭ କରିଦେଲେ । ଫଳରେ ଭାରତର ରାଜନୀତିକ ପରିସ୍ଥିତି ଘୋର ଉତ୍ତେଜନା ଓ ଉତ୍କଣ୍ଠା ଭିତରେ ଗତି କରିବାକୁ ଲାଗିଲା । ଗାନ୍ଧିଜୀଙ୍କ ଡାକରାରେ ଯୁଦ୍ଧ ବିରୁଦ୍ଧରେ କଂଗ୍ରେସ 'ବାଣୀ ସତ୍ୟାଗ୍ରହ' ଆରମ୍ଭ କରିଥିଲେ ମଧ୍ୟ ତାହା ବିଶେଷ ଜନ ସମର୍ଥନ ଲାଭ କରିପାରିନଥିଲା । କଂଗ୍ରେସକୁ ପରିତ୍ୟାଗ କରି ଓ ଫରୱାର୍ଡ୍ ବ୍ଲକ୍ ଗଠନ କରି ନେତାଜୀ ସୁଭାଷ ଯେଉଁ ଯୁଦ୍ଧ ବିରୋଧୀ ସଂଗ୍ରାମ ଆରମ୍ଭ କରିଥିଲେ, ତାହା ବିପୁଳ ଜନ ସମର୍ଥନ

ପାଇବା ଦେଖି ସରକାର ଆତଙ୍କିତ ହୋଇ ନେତାଜୀଙ୍କୁ କାରାରୁଦ୍ଧ କରିଦେବା ପରେ ଭାରତର ଯୁବଶକ୍ତି ନେତୃତ୍ୱ ବିହୀନ ହୋଇଗଲେ ଏବଂ ସେ ଛଦ୍ମ ବେଶରେ ଦେଶରୁ ପଳାଇଯିବା ପରେ ସେମାନଙ୍କ ଭିତରେ ସମ୍ପୂର୍ଣ୍ଣ ହତାଶା ଓ ନୈରାଶ୍ୟ ସୃଷ୍ଟି ହୋଇଥିଲା । ନେତାଜୀ ଭାରତ ପରିତ୍ୟାଗ କରିବାର ପ୍ରାୟ ଦେଢ଼ ବର୍ଷ ପରେ 'ଭାରତ ଛାଡ଼' ଆନ୍ଦୋଳନର ଡାକରା ଦିଆଯିବା ପର୍ଯ୍ୟନ୍ତ ଦେଶର ଅବସ୍ଥା ସେହିଭଳି ଅନିଶ୍ଚିତତା ଭିତରେ ଗତି କରୁଥିଲା । ପୂର୍ବ ଏସିଆର ପ୍ରବାସୀ ଭାରତୀୟମାନେ ଦେଶ ଭିତରର ସେହି ନିସ୍ତବ୍ଧତାକୁ ଭଙ୍ଗ କରିଥିଲେ ପ୍ରବାସରେ "ଭାରତର ଜାତୀୟ ବାହିନୀ" (Indian National Army- I.N.A) ଗଠନ କରି । ଜାତୀୟ ବାହିନୀ ଗଠନର ଅଗ୍ରଗଣ୍ୟ ନେତା ହେଉଛନ୍ତି ଜ୍ଞାନୀ ପ୍ରିତମ୍ ସିଂ, କ୍ୟାପ୍‌ଟେନ୍ ମୋହନ ସିଂ ଏବଂ ଜାପାନ ସେନାଧକ୍ଷ ଜେନେରାଲ ଫୁଜିୟାରା ।

ଜାପାନ ଇଂଲାଣ୍ଡ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବାର ଅଳ୍ପ ଦିନ ଭିତରେ ଥାଇଲାଣ୍ଡ, ମାଲେସିଆ, ସିଙ୍ଗାପୁର ପ୍ରଭୃତି ରାଜ୍ୟରେ ଜାପାନୀ ସୈନ୍ୟଦଳ ମାଡ଼ି ଚାଲିଲେ । ଥାଇଲ୍ୟାଣ୍ଡରେ ଜାପାନୀ ସୈନ୍ୟ ୧୯୪୧ ଡିସେମ୍ବର ୬ ତାରିଖରେ ପହଞ୍ଚିଗଲେ । କ୍ୟାପ୍‌ଟେନ୍ ମୋହନ ସିଂ ୧୧ଶ 'ଇଣ୍ଡିଆନ୍ ଡିଭିଜନର ପଞ୍ଚଦଶ ଇନ୍‌ଫାଣ୍ଟ୍ରି ବ୍ରିଗେଡ଼ରେ ୧/୧୪ ପଞ୍ଜାବୀ ରେଜିମେଣ୍ଟର ନେତୃତ୍ୱ ନେଇ ବହୁ ପୂର୍ବରୁ ଜିତ୍ରାଠାରେ ଜାପାନୀ ସୈନ୍ୟମାନଙ୍କୁ ମୁକାବିଲା କରିବାକୁ ପ୍ରସ୍ତୁତ ଥିଲେ ସୁଦ୍ଧା ସେଥିପାଇଁ ନିର୍ଦ୍ଦିଷ୍ଟ ନିର୍ଦ୍ଦେଶ ମିଳିବାରେ ଅହେତୁକ ବିଳମ୍ବ ହେଉଥିଲା । ମେଜର ଜେନେରାଲ ମରେ-ଲିଅନ ନିଜେ ସ୍ଥିର କରିପାରୁ ନଥିଲେ । 'ଆକ୍ରମଣ'ର ନିର୍ଦ୍ଦେଶ ଦେବେ ନା 'ଆତ୍ମରକ୍ଷା'ର । ଅବିରାମ ବର୍ଷା ଭିତରେ ଧୈର୍ଯ୍ୟ ସହକାରେ ମୋହନ ସିଂଙ୍କୁ ଘଣ୍ଟା ଘଣ୍ଟା ଧରି ଅପେକ୍ଷା କରିବାକୁ ପଡ଼ିଲା । ଶେଷରେ ଡିସେମ୍ବର ୮ ତାରିଖ ଅପରାହ୍ନ ସାଢ଼େ ଗୋଟାଏ ବେଳେ ନିର୍ଦ୍ଦେଶ ଆସିଲା ସତ୍ୟ, କିନ୍ତୁ ତାହା 'ଆକ୍ରମଣ' ପାଇଁ ନୁହେଁ 'ଆତ୍ମରକ୍ଷା' ପାଇଁ (... revert to a defensive strategy) । ବ୍ରିଟିଶ୍ ସେନାପତିମାନଙ୍କର ନୈତିକ ଅଧଃପତନ ହୋଇଥିଲା । ଜାପାନର ଅକଳ୍ପନୀୟ ଅଗ୍ରଗତି ସେମାନଙ୍କୁ କିଂ କର୍ତ୍ତବ୍ୟ ବିମୂଢ଼ କରି ପକାଇଥିଲା । ତା' ପରଠାରୁ 'ଆକ୍ରମଣ' ପରିବର୍ତ୍ତେ ଆତ୍ମରକ୍ଷା ହିଁ ହେଲା ବ୍ରିଟିଶ ସେନାଧକ୍ଷମାନଙ୍କର କୌଶଳ । ପ୍ରାୟ ବିନାଯୁଦ୍ଧରେ ଜାପାନୀମାନେ ରାଜ୍ୟଜୟ କରି ଚାଲିଲେ ।

ଥାଇଲ୍ୟାଣ୍ଡରେ ଭାରତୀୟ ସୈନ୍ୟଙ୍କର ଦୟନୀୟ ପରାଜୟର ଗୋଟିଏ ବର୍ଣ୍ଣନା ଏହିଭଳି ଭାବରେ କରାଯାଇଅଛି- "The Punjabis were thrown into complete disorder. The Japanese tanks tore through the Indians, many of whom had never seen a tank before, blew up ten ammunition trucks, overran an anti tank battery which had not limbered up and careered onto Asun. Their tanks

were over a bridge in front of the Asun position before the Gurkhas were aware of their presence. Behind the tanks came a lorry loads of infantry, who quickly mopped up the scattered resistance. Within a matter of minutes. 1/14th Punjabis and the 2/1st Gurkhas had ceased to exist." The springing Tigers-Page -73) By Hugh Toye

ଜାପାନର ସାଞ୍ଜୁଆ ସୈନ୍ୟମାନଙ୍କର ଆକ୍ରମଣରେ ଭାରତୀୟ ସୈନ୍ୟ ବିପର୍ଯ୍ୟସ୍ତ ହୋଇ ପଡ଼ିଲେ । ଟ୍ୟାଙ୍କ ଓ କମାଣବାହୀ ଗାଡ଼ି ଗୁଡ଼ିକ ଭାରତୀୟ ଅଞ୍ଚଳରେ ହଠାତ୍ ପ୍ରବେଶ କଲେ । ଜୀବନରେ କେବେ ଟ୍ୟାଙ୍କ ଦେଖି ନଥିବା ଭାରତୀୟମାନେ ଆତଙ୍କିତ ହୋଇଗଲେ ଜାପାନୀ ଟ୍ୟାଙ୍କ ଆକ୍ରମଣ ସଙ୍ଗେ ସଙ୍ଗେ ଭାରତୀୟ ସୈନ୍ୟଙ୍କର ଟ୍ୟାଙ୍କ ବିଧ୍ୱଂସୀ ଯାନ ଓ ଯୁଦ୍ଧାସ୍ତ୍ର ଥିବା ଦଶଟି ଟ୍ରକ ବିସ୍ଫୋରଣରେ ବିଧ୍ୱସ୍ତ ହୋଇଗଲା । ଗୋଟିଏ ପୋଲ ଉପରେ ଛିଡ଼ା ହୋଇଥିବା ଭାରତୀୟ ଟ୍ୟାଙ୍କ ସୈନ୍ୟମାନେ ଜାପାନ ଆକ୍ରମଣ ଜାଣିବା ବେଳକୁ ସବୁ କାର୍ଯ୍ୟ ଶେଷ ହୋଇ ସାରିଥିଲା ।

କ୍ୟାପଟେନ୍ ମୋହନ ସିଂଙ୍କ ୧/୧୪ ପଞ୍ଜାବ ରେଜିମେଣ୍ଟ ଏବଂ ୨/୧ମ ଗୁର୍ଖା ରେଜିମେଣ୍ଟର ''ବିନା ଯୁଦ୍ଧରେ ପରାଜୟ'' ତାଙ୍କର ମନ ଭିତରେ ବହୁ କ୍ଷୋଭ ସୃଷ୍ଟି କରିଥିଲା କାରଣ ଜାପାନୀ ସୈନ୍ୟମାନଙ୍କର ସମସ୍ତ ପ୍ରହାର ପଡ଼ିଥିଲା ଭାରତୀୟ ସୈନ୍ୟମାନଙ୍କ ଉପରେ, ନିରାପଦ ଦୂରତ୍ୱରେ ଥିଲେ ବ୍ରିଟିଶ ସୈନ୍ୟଗଣ ।

ଚତୁର୍ଦ୍ଦଶ ପଞ୍ଜାବୀ ଓ ୧ମ ଗୁର୍ଖା ରେଜିମେଣ୍ଟ ଜିତ୍ରାଠାରେ ଯେଉଁ ଶୋଚନୀୟ ପରାଜୟର ସମ୍ମୁଖୀନ ହେଲେ ତାହା ଯେ କେବଳ ଇଂରେଜମାନଙ୍କର ସମଗ୍ର ଏକାଦଶ ଡିଭିଜନ୍‌କୁ ଧ୍ୱସ୍ତ ବିଧ୍ୱସ୍ତ କରିଦେଲା ସେତିକି ନୁହେଁ, ଜିତ୍ରା (ଥାଇଲ୍ୟାଣ୍ଡ)ଠାରୁ ସିଙ୍ଗାପୁର ପର୍ଯ୍ୟନ୍ତ ଥିବା ସମସ୍ତ ପ୍ରତିରୋଧ ବ୍ୟବସ୍ଥାକୁ 'ତାସ୍‌ର ଘର ଭଳି' ଅନାୟସରେ ଭୂଲୁଣ୍ଠିତ କରିଦେଲା । ("Defeat at Jitra was the first link in the chain of disaster that culminated in the surrender of Singapur"-)

କ୍ୟାପ୍‌ଟେନ୍ ମୋହନ ସିଂ ଶିଖ-ଅକାଳୀ ଆଦର୍ଶରେ ବ୍ରିଟିଶ-ବିରୋଧୀ ମାନସିକତାରେ ଲାଳିତ ପାଳିତ ହୋଇଥିଲେ । ପଞ୍ଜାବର ସିଆଲକୋଟରେ (ବର୍ତ୍ତମାନ ପାକିସ୍ତାନରେ) ଜନ୍ମଗ୍ରହଣ କରିଥିବା ସେହି ଜାଠ ସନ୍ତାନ ୧୯୨୭ରେ ସୈନ୍ୟ ବାହିନୀରେ ଯୋଗ ଦେଇ ୧୯୩୪ ୧/୧୪ଶ ପଞ୍ଜାବ ରେଜିମେଣ୍ଟରେ ଯୋଗ ଦେଇଥିଲେ । ଭାରତୀୟମାନଙ୍କ ପକ୍ଷରେ ଅତ୍ୟନ୍ତ ସ୍ପର୍ଶକାତର ''୨ୟ ମହାଯୁଦ୍ଧରେ ଭାରତ ମଧ୍ୟ ଜଣେ ଅଂଶୀଦାର'' ବୋଲି ବଡ଼ଲାଟଙ୍କ ଘୋଷଣା କୋଟି କୋଟି ଭାରତବାସୀଙ୍କ ଭଳି ମୋହନ ସିଂଙ୍କୁ ମଧ୍ୟ ମାନସିକ ଧକ୍କା ଦେଇଥିଲା । ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶର ଗୋଟିଏ ନିର୍ଜନ ଯୁଦ୍ଧ ଘାଟିରେ ୧୯୩୯ରେ ଅବସ୍ଥାପିତ ମୋହନ ସିଂଙ୍କ ମନରେ ପ୍ରଶ୍ନ ଉଠିଥିଲା,

"There was not the slightest doubt that we are being exploited by the British for their own ends. The war was not our war. Not a single Indian was consulted before plunging the entire nation into the most destructive struggle." ଅର୍ଥାତ୍ ‘‘ଏଥିରେ ସାମାନ୍ୟ ସନ୍ଦେହ ନାହିଁ ଯେ ଇଂରେଜମାନେ କେବଳ ସେହିମାନଙ୍କ ସ୍ୱାର୍ଥ ପାଇଁ ଆମକୁ ଶୋଷଣ କରୁଅଛନ୍ତି । ଏ ଯୁଦ୍ଧ ଆମ ଯୁଦ୍ଧ ନୁହେଁ । ଏଭଳି ଏକ ମାରାତ୍ମକ ଧ୍ୱଂସ ମୂଳକ ଯୁଦ୍ଧରେ ସମଗ୍ର ଜାତିକୁ ସଂଶ୍ଳିଷ୍ଟ କରିଦେବା ପୂର୍ବରୁ ଜଣେ ହେଲେ ଭାରତୀୟଙ୍କୁ ପଚରା ଯାଇନାହିଁ ।’’ ମୋହନ ସିଂ ଏହା ମଧ୍ୟ ତାଙ୍କ ଡାଏରୀରେ ଲେଖିଛନ୍ତି ଯେ ଜର୍ମାନୀ ଯେତେବେଳେ ଇଂଲାଣ୍ଡ ଉପରେ ଆକ୍ରମଣ କଲା ସେତେବେଳେ ସେ ଏବଂ ଅନ୍ୟାନ୍ୟ ଅଫିସରମାନେ ଗୋପନରେ ସେମାନଙ୍କର ଆନନ୍ଦ ପ୍ରକାଶ କରିଥିଲେ ।

ଜାପାନୀ ଆକ୍ରମଣରେ ପରାଜିତ କ୍ୟାପ୍‌ଟେନ୍ ମୋହନ ସିଂ ଓ ବ୍ରିଟିଶ୍-ଜାପାନ ଯୁଦ୍ଧର ଅନ୍ତିମ କ୍ଷଣର ବର୍ଣ୍ଣନା ଯୁଦ୍ଧ ଇତିହାସରେ ଏହିଭଳି ଭାବରେ ବର୍ଣ୍ଣନା କରାଯାଇଅଛି ।

‘‘ଯେତେବେଳେ ଜାପାନର ଲେଫ୍‌ଟନାଣ୍ଟ କଲୋନେଲ ସାଇକୀଙ୍କର ବାର ଗୋଟି ଟ୍ୟାଙ୍କର ସହ ଯୁଦ୍ଧ ଅଭିଯାନ ୧/୧୪ ପଞ୍ଜାବ ରେଜିମେଣ୍ଟକୁ ବିପର୍ଯ୍ୟସ୍ତ କରି ଆଗେଇ ଚାଲିଥିଲା, ମୋହନ ସିଂ ଅନନ୍ୟୋପାୟ ହୋଇ ଗୋଟିଏ ରବର ଗଛ ଉହାଡ଼ରେ ଲୁଚିଗଲେ । ଟ୍ୟାଙ୍କ ଚତୁର୍ଦ୍ଦିଗରେ ଗୁଳି ବର୍ଷଣ କରି ଚାଲିଥାଏ । ତାଙ୍କ ଭିତରେ ଥିବା ପଞ୍ଜାବୀ ରକ୍ତ ଗରମ ହୋଇ ଉଠୁଥାଏ । ସେ ନିଜକୁ ଭୁଲି ଯାଇ ଅବଜ୍ଞା ପ୍ରଦର୍ଶନ କରିବାକୁ ଇଚ୍ଛା କରିବା ମାତ୍ରେ ରବର ଗଛ ଦେହରେ ଅସଂଖ୍ୟା ଗୁଳି ଗଳି ଯାଉଥାଏ । କିଛି ସମୟ ପରେ ମୋହନ ସିଂ ପ୍ରକୃତିସ୍ଥ ହେଲେ । ବ୍ରିଟିଶ ଅଫିସର ଫିଜ୍ ପ୍ୟାଟ୍ରିକ୍ ସେହି ଆକ୍ରମଣରେ ଗୁରୁତର ଭାବରେ ଆହତ ହୋଇ ଛୋଟେଇ ଛୋଟେଇ ପଳାଇବାବେଳେ ଗଛ ଉହାଡ଼ରେ ମୋହନ ସିଂଙ୍କୁ ଦେଖି ତାଙ୍କ ରିଭଲଭରଟା ତାଙ୍କ ହାତକୁ ବଢ଼ାଇ ଦେଇ କହିଲେ, ‘‘ମୋ ଜୀବନକୁ ତୁମ ଜିମା ଦେଲି’’ । କିନ୍ତୁ ମୋହନ ସିଂ ସେତେବେଳେ କିଛି କରିବାର ମାନସିକ ସ୍ଥିତିରେ ନଥିଲେ । ସେ ରିଭଲଭରକୁ ସେହି କର୍ଦ୍ଦମାକ୍ତ ମାଟି ଉପରକୁ ଫୋପାଡ଼ି ଦେଲେ । ପ୍ୟାଟ୍ରିକ ସେତେବେଳେ ଆଉ ସେଠାରେ ନଥିଲେ ।’’ ଅବଶ୍ୟ ସେତେବେଳକୁ ସାଇକୀଙ୍କର ଟ୍ୟାଙ୍କ ଶୋଭାଯାତ୍ରା ସେଠାରୁ ଆଗକୁ ଚାଲି ଯାଇଥିଲା ।

କ୍ୟାପ୍‌ଟେନ୍ ମୋହନ ସିଂଙ୍କର ସେଦିନର ସେହି ପରାଜୟ ବ୍ରିଟିଶ୍ ସେନାପତିମାନଙ୍କ ନୈତିକ ଅଧଃପତନ ଜନିତ ଅନିଶ୍ଚିତତା ଯୋଗୁଁ ଘଟିଥିଲା । ନିଷ୍ପତ୍ତି ନେବାରେ ବିଳମ୍ବ ହେଲେ ଆଧୁନିକ ଯୁଦ୍ଧରେ ବିପର୍ଯ୍ୟୟ ସୁନିଶ୍ଚିତ ଅଟେ । ୧/୧୪ ପଞ୍ଜାବ ରେଜିମେଣ୍ଟରେ ସେଦିନ ତାହାହିଁ ଘଟିଥିଲା ଏବଂ ତାହାର ବାରମ୍ବାର ପୁନରାବୃତ୍ତି ଘଟି ସମଗ୍ର ପୂର୍ବ ଏସିଆରୁ ବ୍ରିଟିଶ୍ ଶାସନ ଲୋପ ପାଇଥିଲା । କିନ୍ତୁ ଯୁଦ୍ଧରେ ପରାଜୟ ଅପେକ୍ଷା ବ୍ରିଟିଶ୍ ସେନାଧ୍ୟକ୍ଷଙ୍କର

ସେମାନଙ୍କର ସ୍ୱଜାତି ଓ ଭାରତୀୟ ସୈନ୍ୟମାନଙ୍କ ମଧ୍ୟରେ ପାତର ଅନ୍ତର ବ୍ୟବହାର ଅଧିକ ଅସହନୀୟ ଓ ବେଦନା ଦାୟକ ହୋଇଥିଲା । ପରାଜୟର ଗ୍ଲାନି ଅପେକ୍ଷା ଶହେଗୁଣ ଉତ୍ତେଜନା ଓ କ୍ଷୋଭ ସୃଷ୍ଟି ହୋଇଥିଲା କ୍ୟାପ୍ଟେନ୍ ମୋହନ ସିଂଙ୍କର ମନରେ ସେନାଧ୍ୟକ୍ଷମାନଙ୍କର ଏହି ଦୁର୍ବ୍ୟବହାର କାରଣରୁ ।

ଯୁଦ୍ଧ କ୍ଷେତ୍ରରୁ ପଳାୟନ କଲାବେଳେ ଇଂରେଜ ସେନାପତିମାନେ ଗୋରାସୈନ୍ୟମାନଙ୍କୁ ଅପେକ୍ଷାକୃତ ନିରାପଦ ସ୍ଥାନକୁ ଭାରତୀୟ ସୈନ୍ୟମାନଙ୍କୁ ପରିତ୍ୟକ୍ତ ଅବସ୍ଥାରେ ଛାଡ଼ିଦେଇ ଯାଉଥିଲେ । ଏପରିକି ମେଜର ର୍ୟାଙ୍କର ଅଫିସରମାନଙ୍କ ପ୍ରତି ସେହି ଭଳି ବ୍ୟବହାର କରାଯାଉଥିଲା । ଖାଦ୍ୟପେୟରେ ଭାରତୀୟ ଓ ବ୍ରିଟିଶ ସୈନ୍ୟଙ୍କ ମଧ୍ୟରେ ତଫାତ୍ ରହୁଥିଲା । ଏକ ଦିଗରେ ବିଜୟୋଲ୍ଲାସରେ ଉନ୍ମତ୍ତ ଜାପାନୀ ସୈନ୍ୟମାନଙ୍କର ଅଚିନ୍ତନୀୟ ଅଗ୍ରଗତି ଏବଂ ଅନ୍ୟ ଦିଗରେ ବ୍ରିଟିଶ ସୈନ୍ୟମାନଙ୍କର ହୃଦୟ ବିଦାରକ ଦୁର୍ଦ୍ଦଶାରେ ସେମାନେ ହେଉଥିଲେ ଜର୍ଜରିତ । ଭାରତରୁ ଏଠାକୁ ଆସିବା ବେଳେ ମଧ୍ୟ ସେମାନେ ସେହିଭଳି ପାତର ଅନ୍ତର ବ୍ୟବହାର ଶୀକାର ହୋଇଥିଲେ । ଭାରତୀୟ ସୈନ୍ୟମାନଙ୍କର ସେହି ଭାରାକ୍ରାନ୍ତ ମାନସିକ ପୃଷ୍ଠପଟରେ ସୁଦୂର ଜର୍ମାନୀରେ ନେତାଜୀ ସୁଭାଷଙ୍କ ଦ୍ୱାରା 'ଇଣ୍ଡିଆନ୍ ଲିଜିୟନ୍' ଗଠନର ରୋମାଞ୍ଚକର ସମ୍ବାଦ ଗତ ୨/୩ ମାସ ହେବ ସେମାନଙ୍କ ମନୋରାଜ୍ୟରେ ବେଳେବେଳେ ଅପୂର୍ବ ପୁଲକ ସୃଷ୍ଟି କରି ବ୍ରିଟିଶ ଆନୁଗତ୍ୟର ମାୟାଜାଲ ଭିତରେ ପୁନର୍ବାର ସୁପ୍ତ ହୋଇ ଯାଉଥିଲା ।

ଜିତ୍ରାକୁ ଫେରିଯାଇ ପରାଜିତ ବ୍ରିଟିଶ ସାମରିକ ବାହିନୀରେ ପୁନର୍ବାର ଯୋଗଦେବାକୁ ମୋହନ ସିଂଙ୍କର ମନ ଡାକୁ ନଥିଲା । ବେଳେ ବେଳେ ତାଙ୍କ ଭିତରେ ଥିବା ଶିଖ ସୁଲଭ ଦେଶପ୍ରେମ ଜାଗ୍ରତ ହେଉଥିଲା । ସେତେବେଳେ ସେ ଭାବୁଥିଲେ ଦେଶ ଭିତରେ ଚାଲିଥିବା ସ୍ୱାଧୀନତା ସଂଗ୍ରାମକୁ ତ୍ୱରାନ୍ୱିତ କରିବା ପାଇଁ ଏକ ଦେଶପ୍ରେମୀ ସୈନ୍ୟଦଳ ବା ମୁକ୍ତି ବାହିନୀ ଗଢ଼ିଲେ କେମିତି ହୁଅନ୍ତା ! ସେଭଳି ଏକ ପ୍ରସ୍ତାବ କଣ ଜାପାନୀ କର୍ତ୍ତୃପକ୍ଷ ଗ୍ରହଣ କରିବେ ? ମୋହନ ସିଂଙ୍କ ମନରେ ଦୃଢ଼ ଆଶା ହେଉଥିଲା ଯେ ଯଦି ଜାପାନୀମାନେ ସେହି ପ୍ରସ୍ତାବରେ ରାଜି ହୁଅନ୍ତେ, ବହୁ ସଂଖ୍ୟାରେ ଭାରତୀୟ ସୈନ୍ୟ ଯେ ସେଥିରେ ଯୋଗ ଦିଅନ୍ତେ, ଏଥିରେ କୌଣସି ସନ୍ଦେହ ନାହିଁ । ତଥାପି ମୋହନ ସିଂ ବିଚାର ସଙ୍କଟରେ ପଡୁଥିଲେ । " a mental struggle over his loyalties- to the commission and the British crown or to his country but eventually acted on the urge to take a revolutionary step."

''ସାମରିକ କମିଶନ୍-ବ୍ରିଟିଶ୍ ରାଜ ମୁକୁଟ ଓ ନିଜର ମାତୃଭୂମି''— ତାଙ୍କର ଆନୁଗତ୍ୟ କାହା ପ୍ରତି ହେବା ଉଚିତ୍ ? ଶେଷରେ ଏକ ବୈପ୍ଳବିକ ପଦକ୍ଷେପ ପ୍ରତି ତାଙ୍କର ମନ ଟାଣିଲା ।

ଡିସେମ୍ବର ୧୨ ତାରିଖରେ ଜ୍ଞାନୀ ପ୍ରୀତମ୍ ସିଂ ଓ ଜାପାନ ସୈନ୍ୟାଧକ୍ଷ ମେଜର ଫୁଜିୟାରା ଥାଇଲ୍ୟାଣ୍ଡର ଆଲେରଷ୍ଟାର ନାମକ ସ୍ଥାନରେ ପହଞ୍ଚିଥିଲେ । ଅଦୂରରେ ଆଶ୍ରୟ ନେଇଥିବା ୧/୧୪ ପଞ୍ଜାବ ରେଜିମେଣ୍ଟ ତଥା ପ୍ରଥମ ଗୁର୍ଖା ରେଜିମେଣ୍ଟର ଆନୁଷ୍ଠାନିକ ଆତ୍ମ ସମର୍ପଣ ସେଠାରେ ହେବାର କଥା । ଫୁଜିୟାରା ଜାଣିବାକୁ ପାଇଲେ ଯେ ଭାରତୀୟ ସାମରିକ ଅଫିସର ତାଙ୍କ ସହ ସାକ୍ଷାତ କରିବାକୁ ଆଗ୍ରହୀ । ସାକ୍ଷାତ୍ ହେଲା । ଆଲୋଚନା ହେଲା ଏବଂ ମୋହନ ସିଂ ଓ ଫୁଜିୟାରା ଉଭୟ ସନ୍ତୁଷ୍ଟ ହେଲେ । ଫୁଜିୟାରା ଚାହୁଁଥିଲେ ଯେ ପରାଜିତ ବ୍ରିଟିଶ ଅଞ୍ଚଳରେ ଶାନ୍ତି ଶୃଙ୍ଖଳା ରକ୍ଷା ଏକ ଗୁରୁତର ସମସ୍ୟା ହୋଇଥିବା ଦୃଷ୍ଟିରୁ ବିଜିତ ଭାରତୀୟ ସେନାମାନେ ସେ ଦାୟିତ୍ୱ ସ୍ୱେଚ୍ଛାରେ ଗ୍ରହଣ କଲେ ଜାପାନ ସରକାର ନିଶ୍ଚିତ ହେବେ । ବିଜୟୀ ଜାପାନୀ ସେନାଧକ୍ଷଙ୍କଠାରୁ ଏଭଳି ଅପ୍ରତ୍ୟାଶିତ ସହାନୁଭୂତି ସୂଚକ ବ୍ୟବହାର ଲାଭ କରି ମୋହନ ସିଂ ମଧ କମ୍ ଖୁସି ହୋଇ ନଥିଲେ । ଶାନ୍ତି ଶୃଙ୍ଖଳା ରକ୍ଷାର ଦାୟିତ୍ୱ ସୁଚାରୁରୂପେ ସମ୍ପନ୍ନ କରିପାରିଲେ ପରାଜିତ ଭାରତୀୟ ସୈନ୍ୟମାନଙ୍କ ଭିତରେ ସୃଷ୍ଟି ହୋଇଥିବା ପରାଜୟ ମନୋଭାବ, ପରାଜୟ ଜନିତ ଗ୍ଲାନିରୁ ସେମାନଙ୍କୁ ମୁକ୍ତି ମିଳିବା ସଙ୍ଗେ ସଙ୍ଗେ ସେମାନେ କର୍ମ ତତ୍ପର ରହିବେ । ଫଳରେ ମନୋବଳ ମଧ ବଢ଼ିବ ଏବଂ ମୋହନ ସିଂଙ୍କର 'ଇପ୍ସିତ' ବିପ୍ଳବୀ ସୈନ୍ୟ ଦଳ ଗଢ଼ିବାରେ ଅନୁକୂଳ ପରିବେଶ ସୃଷ୍ଟି ହୋଇ ପାରିବ ।

ଫୁଜିୟାରାଙ୍କ ସହ ଆଲୋଚନାବେଳେ ମୋହନ ସିଂଙ୍କ ହୃଦବୋଧ ହୋଇଥିଲା ଯେ ସେହି ଯୁଦ୍ଧ ଭାରତୀୟମାନଙ୍କୁ ଆତ୍ମ ନିୟନ୍ତ୍ରଣ ଲାଭ କରିବାର ଅଧିକାର ଦେବ । (The conflict would give them a chance to win their freedom) ତଥାପି ମୋହନ ସିଂ ଉଚ୍ଚତର ଜାପାନୀ କର୍ତ୍ତୃପକ୍ଷଙ୍କଠାରୁ ତାହା ଶୁଣିବାକୁ ଚାହୁଁଥିଲେ । ଜେନେରାଲ ଫୁଜିୟାରା ତାହାର ମଧ ବ୍ୟବସ୍ଥା କରିଦେଲେ । ଲେଫ୍ଟନାଣ୍ଟ ଜେନେରାଲ ୟାମାସତାଙ୍କ ସହ ମୋହନ ସିଂ, ଜ୍ଞାନୀ ପ୍ରୀତମ୍ ଏବଂ ୧/୧୪ ପଞ୍ଜାବ ରେଜିମେଣ୍ଟର କର୍ଣ୍ଣେଲଙ୍କର ବିସ୍ତୃତ ଆଲୋଚନା ହେଲା । ୟାମାସିତା ଆହୁରି ପରିଷ୍କାର କରି କହିଦେଲେ 'ଭାରତର ସ୍ୱାଧୀନତା ଆନ୍ଦୋଳନ'ରେ ଜାପାନର ସାହାଯ୍ୟ ସହଯୋଗ ପଛରେ ତାହାର କୌଣସି ହୀନ ଅଭିସନ୍ଧି ନାହିଁ । ଜାପାନ ଚାହେଁ, ବନ୍ଦୀ ଭାରତୀୟ ସୈନ୍ୟମାନେ ଯଦି ଦେଶର ସ୍ୱାଧୀନତା ପାଇଁ ଯୁଦ୍ଧ କରନ୍ତି- ତେବେ ଜାପାନ ସରକାର ସେଭଳି ସୈନ୍ୟବାହିନୀକୁ ସବୁ ପ୍ରକାର ସାହାଯ୍ୟ ପ୍ରଦାନ କରିବ । ତାହାର ପ୍ରଥମ ପଦକ୍ଷେପ ସ୍ୱରୂପ ଜେନେରାଲ ଫୁଜିୟାରା ବନ୍ଦୀ ଭାରତୀୟ ସୈନ୍ୟଙ୍କର ସମସ୍ତ ଦାୟିତ୍ୱ କ୍ୟାପ୍ଟେନ୍ ମୋହନ ସିଂଙ୍କୁ ଯେପରି ଅର୍ପଣ କରିଛନ୍ତି, ସେଥିପ୍ରତି ଜାପାନ ସରକାରଙ୍କର ପୂର୍ଣ୍ଣ ସମର୍ଥନ ରହିଅଛି । ଏହି ସାକ୍ଷାତ୍‌କାର ପରେ ମୋହନ ସିଂଙ୍କର ଜାପାନର ଲକ୍ଷ୍ୟ (war aim) ସମ୍ପର୍କରେ ବିଶେଷ କୌଣସି ସନ୍ଦେହ ରହିଲା ନାହିଁ ସତ୍ୟ କିନ୍ତୁ ଆଉ ଏକ ପ୍ରଶ୍ନ ମଧ ତାଙ୍କ ମନ ଭିତରକୁ ବାରମ୍ବାର ଆନ୍ଦୋଳିତ କରୁଥିଲା ଯେ ସେହି ପ୍ରସ୍ତାବିତ

'ଜାତୀୟ ବାହିନୀ' ପ୍ରତି ଭାରତରେ କଂଗ୍ରେସଦଳ ଏବଂ ଗାନ୍ଧୀ-ନେହେରୁ-ପଟେଲ-ଆଜାଦ ପ୍ରଭୃତିଙ୍କ ମନୋଭାବ କ'ଣ ହେବ ! କିଏ ତା'ର ଉତ୍ତର ଦେବ ? କଂଗ୍ରେସର ରାଜନୀତିକ ଆଦର୍ଶ ଓ କାର୍ଯ୍ୟଧାରା ସମ୍ପର୍କରେ ସମ୍ପୂର୍ଣ୍ଣ ଅବଧାରଣା ନ ଥିବାରୁ ମୋହନ ସିଂଙ୍କ ମନରେ ସେହି ସବୁ ଅପ୍ରାସଙ୍ଗିକ କଥା ଆସୁଥିଲା । ସେ ଯଦି ଜର୍ମାନୀରେ ନେତାଜୀଙ୍କ ଦ୍ୱାରା ଗଠିତ 'ଇଣ୍ଡିଆନ୍ ଲିଜିୟନ୍'ର ପ୍ରଭାବରେ ପୂର୍ବ ଏସିଆରେ 'ଜାତୀୟ ବାହିନୀ' ଗଢୁଥିଲେ- ସେ କଣ ଗାନ୍ଧିଜୀ ଓ ନେତାଜୀଙ୍କ ରାଜନୈତିକ ଆଦର୍ଶର ପାର୍ଥକ୍ୟ ବିଷୟରେ କିଛି ନ ବୁଝି ସେହି ଦୁଃସାହସିକ ଅଭିଯାନରେ ଲମ୍ଫ ପ୍ରଦାନ କରୁଥିଲେ ? ବ୍ରିଟେନ୍ ଏକ ଜୀବନ ମରଣ ଯୁଦ୍ଧ ଲଢୁଥିବା ବେଳେ ଏବଂ ଭାରତ ସେହି ଯୁଦ୍ଧାୟୋଜନାରେ ବ୍ରିଟେନ୍‌ର ଏକ ପ୍ରଧାନ ସମ୍ବଳ ହୋଇଥିବା ସତ୍ତ୍ୱେ କଂଗ୍ରେସ ପକ୍ଷରୁ ଯେତେ ନିରୀହ ବ୍ରିଟିଶ୍ ବିରୋଧୀ ଆନ୍ଦୋଳନ ହେଲେ ବି ତାହା ଯେ ବ୍ରିଟେନ୍‌କୁ ମରଣାନ୍ତକ ଆଘାତ ଦେବ ଏକଥା କଂଗ୍ରେସ କଣ ଜାଣି ନ ଥିଲା ? ତା' ସତ୍ତ୍ୱେ ସେମାନେ ଯୁଦ୍ଧ ଆରମ୍ଭ ଦିନୁ ସ୍ୱାଧୀନତା ପାଇଁ ଛୋଟ ବଡ଼ ଆନ୍ଦୋଳନ ସର୍ବଦା ଲଗେଇ ରଖିଥିଲେ । ସେହି ସବୁ ଆନ୍ଦୋଳନ ସରକାରଙ୍କୁ କମ୍ ଅଡୁଆରେ ପକାଉ ନଥିଲେ ।

ଯୁଦ୍ଧ ଆରମ୍ଭ ହେବାର ଅଳ୍ପ କେଇ ଦିନ ଭିତରେ ଗାନ୍ଧୀଜୀ ଭାରତର ଭାଇସ୍‌ରାୟ ଲର୍ଡ ଲିଥ୍ ଗୋଙ୍କୁ ଭେଟିବା ପରେ ସଫା କହି ଦେଇଥିଲେ ଯେ ''ମାନବିକତା ଦୃଷ୍ଟିରୁ ମୋ'ର ପୂର୍ଣ୍ଣ ସହାନୁଭୂତି ରହିଛି ଇଂଲାଣ୍ଡ ଓ ଫ୍ରାନ୍‌ସ ପାଇଁ । ମୁଁ ଭାଇସ୍‌ରାୟଙ୍କୁ କହିଲି ଆଜିଯାଏ ଅପରାଜେୟ ବୋଲି ମନେ କରାଯାଉଥିବା ଲଣ୍ଡନ ସହର ଧ୍ୱଂସ ହେବା କଥା କଳ୍ପନା କରି ମୁଁ ଭୀଷଣ ଭାବେ ବିଚଳିତ ହୋଇ ପଡ଼ିଅଛି । ପାର୍ଲିଆମେଣ୍ଟ ଭବନ ବା ୱେଷ୍ଟ ମିନିଷ୍ଟର ଏବି ର ଦୃଶ୍ୟ ଏବଂ ସେ ଗୁଡ଼ିକର ଆସନ୍ନ ଧ୍ୱଂସ ହେବାର ସମ୍ଭାବନା କଥା କହିବାବେଳେ ମୁଁ ଭାଙ୍ଗି ପଡ଼ିଲି ଏବଂ ଧୈର୍ଯ୍ୟ ହରାଇ ଦେଲି । ସେଥିପାଇଁ ଭାରତ ବର୍ଷର ସ୍ୱାଧୀନତା କଥା ମୁଁ ବର୍ତ୍ତମାନ ଚିନ୍ତା କରି ପାରୁ ନାହିଁ ।''

କିନ୍ତୁ ଠିକ୍ ସେହି ପରିପ୍ରେକ୍ଷୀରେ ନେତାଜୀ କହୁଥିଲେ ''ୟୁରୋପରେ ବ୍ରିଟେନ୍ ଯେତିକି ଧକ୍କା ଖାଇବ ଭାରତ ଉପରୁ ତା'ର ହାତ ମୁଠା ସେତିକି ଢିଲା ହୋଇ ପଡ଼ିବ । ସୁତରାଂ ବ୍ରିଟେନ୍‌କୁ ରକ୍ଷା କରିବା କଥା କହିବା ଆମ୍ଭେମାନେ ବର୍ତ୍ତମାନ ବନ୍ଦ କରିଦେବା ଉଚିତ । ଏଭଳି ଗମ୍ଭୀର ପରିସ୍ଥିତିରେ ଭାରତ ବର୍ତ୍ତମାନ ତାହାର ନିଜ କଥା ଚିନ୍ତା କରିବା ଦରକାର ।''

ଗାନ୍ଧୀଜୀ ଓ ନେତାଜୀଙ୍କର ଦୃଷ୍ଟିକୋଣରେ ଏହି ମୌଳିକ ପାର୍ଥକ୍ୟ ଥିବାବେଳେ କ୍ୟାପ୍‌ଟେନ୍ ମୋହନ ସିଂଙ୍କ କିଭଳି ଆଶା କରୁଥିଲେ ଯେ ନେତାଜୀଙ୍କ ଆଦର୍ଶରେ ଗଠିତ 'ଭାରତୀୟ ଜାତୀୟ ବାହିନୀ' ପ୍ରତି କଂଗ୍ରେସ ବା ଗାନ୍ଧୀଜୀ ସମର୍ଥନ ଜଣାଇବେ ? ମୋହନ ସିଂଙ୍କର ରାଜନୀତିକ ଅନଭିଜ୍ଞତା ହୁଏତ ଏଭଳି ଅହେତୁକ ଅବାନ୍ତର ପ୍ରଶ୍ନ କରିବାକୁ ପ୍ରରୋଚିତ କରିଥିଲା ଏବଂ ଯୁଦ୍ଧ ଶେଷ ପର୍ଯ୍ୟନ୍ତ ତାଙ୍କ ମନକୁ ଆନ୍ଦୋଳିତ କରିଥିଲା ।

ସେ ଯାହା ହେଉ ପୂର୍ବ ଏସିଆର ଜାପାନର ପ୍ରଧାନ ସେନାପତି ୟାମାସିତାଙ୍କଠାରୁ ସବୁଜ ସଙ୍କେତ ପାଇ 'ଜାତୀୟ ବାହିନୀ' ଗଠନର ପ୍ରାଥମିକ କାର୍ଯ୍ୟ ଆରମ୍ଭ କରିଦେଲେ ।

'ଜାତୀୟ ବାହିନୀ' ଗଠନର ପ୍ରଥମ କାର୍ଯ୍ୟକ୍ରମ ହେଲା ବନ୍ଦୀ ସୈନିକମାନଙ୍କ ମଧ୍ୟରେ ରାଜନୀତିକ ଚେତନା ସୃଷ୍ଟି କରିବା । ଏକ 'ମୁକ୍ତି ବାହିନୀ' ପକ୍ଷରେ ସେହି ଶିକ୍ଷା ଥିଲା ଅଧିକ ଗୁରୁତ୍ୱପୂର୍ଣ୍ଣ । କାରଣ ଯୁଦ୍ଧ ବିଦ୍ୟାରେ ପୂର୍ବରୁ ନିପୁଣ ଭାବରେ ପ୍ରଶିକ୍ଷିତ ସୈନିକମାନଙ୍କର ରାଜନୈତିକ ଶିକ୍ଷାର ଆବଶ୍ୟକତା ଥିଲା ସର୍ବାଧିକ । ସେମାନଙ୍କର ଆନୁଗତ୍ୟର ବା ଧର୍ମ ପରିବର୍ତ୍ତନର ପ୍ରଶ୍ନ ସେଥିରେ ଜଡ଼ିତ ଥିଲା । ଯେଉଁମାନେ ପ୍ରଶିକ୍ଷଣ ଲାଭ କରିଥିଲେ ନିଜର ମାତୃଭୂମିକୁ ଚିରଦିନ ପରାଧୀନ ରଖିବା ପାଇଁ, ବିଦେଶୀ ବ୍ରିଟେନ୍‌ବାସୀଙ୍କୁ ସର୍ବୋଚ୍ଚ ପ୍ରଭୁ ଭାବରେ ପୂଜା କରିବା ପାଇଁ ଓ ଦେଶପ୍ରେମୀ ଭାରତବାସୀଙ୍କୁ ଶତ୍ରୁ ଭାବରେ ବିଚାର କରିବା ପାଇଁ, ରାତି ପାହିବା ବେଳକୁ ସେମାନେ ପାଲଟିଗଲେ ଦେଶ ପାଇଁ ଚରମ ତ୍ୟାଗ ବରଣ କରିବାକୁ ଓ ଜୀବନ ଉତ୍ସର୍ଗ କରିଥିବା 'ଦେଶପ୍ରେମୀ' ବ୍ରିଟେନ୍‌ର ପରମ ଶତ୍ରୁ ବା ମାତୃଭୂମିର ସୁଯୋଗ୍ୟ ସନ୍ତାନ । ଏହା ଅକଳ୍ପନୀୟ ଥିଲା; ଅସତ୍ୟ ନଥିଲା କି ଅସମ୍ଭବ ନଥିଲା । ବିଶ୍ୱ ଇତିହାସରେ ପରାଧୀନ ଜାତିର ମୁକ୍ତି ଯୁଦ୍ଧ ଇତିହାସରେ ଏକ ନୂତନ ଅଧ୍ୟାୟ ସଂଯୋଜିତ ହେଉଥିଲା । ବ୍ରିଟିଶ ଭାରତୀୟ ସୈନ୍ୟମାନେ-ଭାରତୀୟ ମୁକ୍ତି ବାହିନୀରେ ପରିଣତ ହେଉଥିଲେ ।

ବନ୍ଦୀ ସୈନ୍ୟମାନଙ୍କୁ ରାଜନୀତିକ ଶିକ୍ଷା ଦେବା ପାଇଁ କ୍ୟାପ୍‌ଟେନ୍ ମୋହନ ସିଂ 'ଦେଶପ୍ରେମ' 'ସାମ୍ପ୍ରଦାୟିକ ଏକତା' 'ଔପନିବେଶିକ' ଶୋଷଣର 'ସ୍ୱରୂପ ଓ ପରିଣତି' ପ୍ରଭୃତି ନିଗୂଢ଼ ତତ୍ତ୍ୱ ଉପରେ ଆଲୋଚନା ଚକ୍ର ଆରମ୍ଭ କଲେ । ଆଲୋଚନା ଚକ୍ରର ପ୍ରଭାବରେ ବନ୍ଦୀ ଭାରତୀୟ ସେନାଙ୍କର ମନୋଭାବ ଓ ଦୃଷ୍ଟିକୋଣରେ ମୌଳିକ ପରିବର୍ତ୍ତନ ଅନୁଭବ କଲେ କ୍ୟାପ୍‌ଟେନ ସିଂ । "A few lectures did the miracle and the result were beyond my expectations. In an unbelievably short time our mess began to consider themselves' Indian first and Indian last." ''ଅର୍ଥାତ୍ ସେମାନଙ୍କର ଏକମାତ୍ର ପରିଚୟ ଯେ 'ଭାରତୀୟ' ଏହା ସେମାନେ ଅନୁଭବ କଲେ । ସେଥିରେ ଉତ୍ସାହିତ ହୋଇ ସବୁଧର୍ମର ସୈନିକଙ୍କ ପାଇଁ ଗୋଟିଏ ମିଳିତ ମେସ୍ ବା ଭୋଜନଶାଳା ଆରମ୍ଭ କରିଦେଲେ । ଫଳରେ ସେମାନଙ୍କ ମଧ୍ୟରେ ଜାତୀୟ ସଂହତି ଦୃଢ଼ ହେବାକୁ ଲାଗିଲା । ଯାହାକି ଏକ ଐକ୍ୟବଦ୍ଧ ମୁକ୍ତି ବାହିନୀ ପାଇଁ ଏକାନ୍ତ ଅପରିହାର୍ଯ୍ୟ ଥିଲା ।''

୧୯୪୧ ମସିହା ଶେଷ ହୋଇ ଆସିଲା ଏବଂ କ୍ୟାପ୍‌ଟେନ୍ ମୋହନ ସିଂ ଜାପାନ ସରକାରରେ ପ୍ରତିନିଧି ଭାବରେ ଫୁଜିଆରୋଙ୍କ ସହ ପ୍ରସ୍ତାବିତ 'ଜାତୀୟ ବାହିନୀ' ଗଢ଼ିବା ପାଇଁ ସମ୍ଭାବ୍ୟ ସମସ୍ୟା ଏବଂ ସେଗୁଡ଼ିକର ସମାଧାନ ପାଇଁ ଜାପାନ ସରକାରଠାରୁ ଆବଶ୍ୟକୀୟ ସାହାଯ୍ୟ ସମ୍ପର୍କରେ ସନ୍ତୋଷଜନକ ଆଲୋଚନା କରିଥିଲେ ।

ମୁକ୍ତି ବାହିନୀ ସମ୍ପର୍କରେ ମୋହନ ସିଂ ଯେଉଁ ଯୋଜନା ଫୁଜିୟାରାଙ୍କ ନିକଟରେ ଉପସ୍ଥାପିତ କରିଥିଲେ ସେଥିରେ ଉଲ୍ଲେଖ ଥିଲା, ''ଜାତୀୟ ବାହିନୀ ଗଠନ ପାଇଁ ଜାପାନ ସରକାର ସବୁ ପ୍ରକାର ସାହାଯ୍ୟ କରିବେ ଏବଂ ସମସ୍ତ ବନ୍ଦୀ ଭାରତୀୟ ସେନାଙ୍କୁ କ୍ୟାପ୍‌ଟେନ୍ ମୋହନ ସିଂଙ୍କର ତତ୍ତ୍ୱାବଧାନରେ ଛାଡ଼ି ଦେବାକୁ ପଡ଼ିବ । ଯେଉଁ ସୈନ୍ୟ ମୁକ୍ତିବାହିନୀରେ ଯୋଗ ଦେବାକୁ ରାଜି ହେବେ ସେମାନଙ୍କୁ ସମ୍ପୂର୍ଣ୍ଣ ମୁକ୍ତ କରି ଦିଆଯିବ ଓ ଅନ୍ୟମାନଙ୍କଠାରୁ ପୃଥକ କରି ରଖାଯିବ । ଏହି ମୁକ୍ତି ବାହିନୀ ପ୍ରିତମ୍ ସିଂଙ୍କର 'ଭାରତୀୟ ସ୍ୱାଧନୀତା ସଙ୍ଘ' ଅଧୀନରେ ଏକ 'ସଶସ୍ତ୍ର ବାହିନୀ' ଭାବରେ ବିବେଚିତ ହେବ । କିନ୍ତୁ ଦୁଇଟିଯାକ ସଙ୍ଗଠନ ପୃଥକ ରହିବ । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ସର୍ତ୍ତ ଥିଲା ଯେ 'ମୁକ୍ତି ବାହିନୀ'କୁ ଜାପାନ ସରକାର ଏକ ବନ୍ଧୁ ଦେଶର ସୈନ୍ୟ ଦଳ ଭାବରେ ବିବେଚନା କରିବା । (Allied Army)

ଏଥିରେ ଫୁଜିୟାରାଙ୍କ ଦ୍ୱିମତ ହେବାର କୌଣସି କାରଣ ନଥିଲା । ବସ୍ତୁତଃ ସେ ବହୁବାର ସମାନ ଧରଣର ଯୋଜନା ପ୍ରତି ତାଙ୍କର ସ୍ୱୀକୃତି ପ୍ରଦାନ କରିଥିଲେ । ତଥାପି ମୋହନ ସିଂଙ୍କୁ ଅଧିକ ସନ୍ତୁଷ୍ଟ କରିବା ପାଇଁ ତାଙ୍କୁ ପଞ୍ଚବିଂଶ ସୈନ୍ୟ ବାହିନୀର ମୁଖ୍ୟ ମେଜର ୟାମାସିତାଙ୍କ ନିକଟକୁ ନେଇ ଯାଇଥିଲେ । ଶେଷରେ ସେ ମଧ୍ୟ ସେହି ପ୍ରସ୍ତାବକୁ ଗ୍ରହଣ କଲେ ।

ଅବଶ୍ୟ 'ମୁକ୍ତି ବାହିନୀ'ର ନାମକରଣକୁ କେନ୍ଦ୍ର କରି କିଛି ଭିନ୍ନ ମତ ରହିଥିଲା । ସେହି ବାହିନୀକୁ 'ମିତ୍ରଶକ୍ତି' ଆଖ୍ୟା ଦିଆଯିବା ବିଷୟ ଚିନ୍ତା କରି ଫୁଜିୟାରା ତାହାର ନାମ 'Volunteers for Indian Freedom' ବା 'Japanese Indian Force' J.I.F. ବା 'Indian Free forces' ଭିତରୁ କୌଣସି ଗୋଟିଏ ଦେବାକୁ ପ୍ରସ୍ତାବ ଦେଇଥିଲେ ସୁଦ୍ଧା ମୋହନ ସିଂ 'ଭାରତୀୟ ଜାତୀୟ ବାହିନୀ ବା 'Indian National Army' ନାମରେ ଅବିଚଳିତ ରହିଲେ ଏବଂ ସେହି ନାମ ମଧ୍ୟ ବନ୍ଦୀ ଭାରତୀୟ ସୈନ୍ୟମାନଙ୍କ ପାଇଁ ଖୁବ୍ ଆକର୍ଷଣୀୟ ହେଲା । ଆଜୀବନ ବ୍ରିଟେନ୍ ସ୍ୱାର୍ଥରେ ଲଢ଼ି ଆସିଥିବା ସୈନ୍ୟମାନଙ୍କ ପକ୍ଷରେ ଆନୁଗତ୍ୟ ପରିବର୍ତ୍ତନ କରି ସେହି ବ୍ରିଟେନ୍ ବିରୁଦ୍ଧରେ ଲଢ଼ିବା କିଛି କମ୍ କଷ୍ଟକର ବିଷୟ ନଥିଲା । ଯେଉଁ ନୂତନ ପିଢ଼ୀର ଭାରତୀୟ ଯୁବକମାନେ ୨ୟ ମହାଯୁଦ୍ଧ ଆରମ୍ଭ ହେବାର ଅଳ୍ପ କେତେ ମାସ ପରେ ସୈନ୍ୟବାହିନୀରେ ଯୋଗଦେଇଥିଲେ ସେମାନଙ୍କ ପକ୍ଷରେ ଅବଶ୍ୟ ଆନୁଗତ୍ୟ ପରିବର୍ତ୍ତନ କରିବା ଖୁବ୍ ଆୟାସ ସାଧ ହୋଇ ନଥିଲା । କିନ୍ତୁ ପୁରୁଣା ବୟସ୍କ ଭାରତୀୟ ସାମରିକ ଅଫିସରମାନେ ବରଂ ଅଧିକ ବିଚାର ସଙ୍କଟରେ ପଡୁଥିଲେ । ସେହିଭଳି ଦୁଇଜଣ ଭାରତୀୟ ଅଫିସର ଥିଲେ ଲେଫ୍‌ଟନାଣ୍ଟ କଲୋନେଲ ନିରଞ୍ଜନ ସିଂ ଗିଲ୍ ଓ ସାହାନ ୱାଜ ଖାଁ । ସାହାନୱାଜ ତ ପରବର୍ତ୍ତୀ ଅବସ୍ଥାରେ ନେତାଜୀଙ୍କର ଅନ୍ୟତମ ବିଶ୍ୱସ୍ତ ସେନାପତିର ଆସନ ଅଳଙ୍କୃତ କରିଥିଲେ ଏବଂ ୧୯୪୬

ମସିହାରେ 'ଲାଲକିଲ୍ଲା ବିଚାର' ବେଳେ ଜଣେ ଶ୍ରେଷ୍ଠ ବୀର ଭାବରେ ଭାରତୀୟ ଜନମାନସରେ ଅତ୍ୟନ୍ତ ଲୋକ ପ୍ରିୟ ହୋଇଥିଲେ । ଗିଲ୍ ଓ ସାହାନ୍‌ଓ୍ୱାଜ ଆଦୌ ବିଶ୍ୱସ କରୁ ନଥିଲେ ଯେ ଜାପାନ ସରକାର ସତକୁ ସତ "ଭାରତୀୟ ଜାତୀୟ ବାହିନୀ"କୁ ସାହାଯ୍ୟ କରିବ । ଜାପାନ ସରକାର ପ୍ରତି ସେ ଦୁହିଁଙ୍କର ସେହି ସନ୍ଦେହ ଭାବ କୌଣସି ବାସ୍ତବ କାରଣରୁ ଘଟିଥିଲା କିମ୍ବା ସେମାନଙ୍କର ଦୃଢ଼ ବ୍ରିଟିଶ୍ ଆନୁଗତ୍ୟର ପରମ୍ପରାରୁ ସୃଷ୍ଟି ହୋଇଥିଲା- କହିବା ସମ୍ଭବ ନୁହେଁ । କ୍ୟାପ୍‌ଟେନ୍ ମୋହନ ସିଂଙ୍କ ଅପେକ୍ଷା ସାମରିକ ଦକ୍ଷତାରେ ସେଁ ଦୁହେଁ ଅବଶ୍ୟ ଅଧିକ ପାରଙ୍ଗମ ଥିଲେ । ଅଥଚ "ଜାତୀୟ ବାହିନୀ" ଗଢ଼ିବାରେ ମୋହନ ସିଂ ଅଧିକ ଆଗେଇ ଯାଇଥିବାରୁ ପେଶାଗତ ଈର୍ଷା ହୁଏତ ସେମାନଙ୍କୁ ଆହତ କରିପାରିଥାଏ । ସେ ଦୃଷ୍ଟିରୁ ମୋହନ ସିଂ ହୁଏତ ଅଧିକ ଅଶାବାଦୀ ଥିଲେ । ସେ ପରିସ୍ଥିତିରେ ଆଶାବାଦୀ ହେବା ବରଂ ଅଧିକ ବୁଦ୍ଧିମାନର କାର୍ଯ୍ୟ ଥିଲା । ଗୋଟିଏ ବିଜିତ ବନ୍ଦୀ ସୈନ୍ୟଦଳ ପକ୍ଷରେ ବିପୁଳ ବିଜୟୋଲ୍ଲାସରେ ଉନ୍ମତ୍ତ ବିଜେତା ଦେଶଠାରୁ ଅଧିକ କିଭଳି ସାହାଯ୍ୟ ଆଶା କରାଯାଇପାରେ ?

"ଜାପାନ ବିରୁଦ୍ଧରେ ଲଢ଼ିବା ପାଇଁ ବ୍ରିଟେନ୍ ସରକାର ଯେଉଁ ଭାରତୀୟ ସୈନ୍ୟମାନଙ୍କୁ ପଠାଇଥିଲେ, ସେମାନେ ଜାପାନଦ୍ୱାରା ପରାଜିତ ହେବା ପରେ ରାତି ପାହିବା ବେଳକୁ ସେମାନଙ୍କର ଆଜୀବନ ପ୍ରଭୁ ସେହି ବ୍ରିଟେନ୍ ସରକାର ବିରୁଦ୍ଧରେ ଲଢ଼ିବେ ବୋଲି ଜାପାନ ସରକାର ଭିତରେ ଥିବା ସମସ୍ତେ ଯେ ଷୋଳ ଅଣା ବିଶ୍ୱାସ କରିଯିବେ ଏହା ଆଶା କରିବା ବୃଥା ।"

ମୋହନ ସିଂ ଭାବୁଥିଲେ ଯେ ଜାପାନ ସରକାର ଯେଉଁ ଭାଷାରେ ଯେତିକ ସାହାଯ୍ୟ ଦେବାର ପ୍ରତିଶ୍ରୁତି ଦେଉ ଅଛନ୍ତି -ତାହାକୁ ଆପାତତଃ ଗ୍ରହଣ କରି କାମ ଆରମ୍ଭ କରିଦେବା ଉଚିତ । କାରଣ 'ଭାରତର ଜାତୀୟ ବାହିନୀ' ବାସ୍ତବ କାର୍ଯ୍ୟ କରିବା- ଅର୍ଥାତ୍ ଭାରତରେ ବ୍ରିଟିଶ୍ ଶାସନ ବିରୁଦ୍ଧରେ ଲଢ଼ିବା କାର୍ଯ୍ୟ ବହୁତ ବିଳମ୍ବ ଥିଲା, ତାହା ଆରମ୍ଭ ହେବ ସମଗ୍ର ପୂର୍ବ ଏସିଆରୁ ବ୍ରିଟିଶ୍ ଶାସନ ଲୋପ ହେବା ପରେ ଯାଇ । ମାଲୟ ବା ସିଙ୍ଗାପୁର ପତନ ପରେ ତଥାପି ବହୁ ବ୍ରିଟିଶ୍ ଅଧିକୃତ ରାଜ୍ୟ ଅବଶିଷ୍ଟ ଥିଲା । ସୁତରାଂ ଭାରତ ଭିତରେ 'ଜାତୀୟ ବାହିନୀ' ଲଢ଼ିବା ବେଳେ ଜାପାନ ସରକାର କି କି ସାହାଯ୍ୟ କରିବେ- ତାହା ଏକ Hypothetical ପ୍ରଶ୍ନ ଅବାନ୍ତର ବା କଳ୍ପନା-ବିଳାସ ଥିଲା । ତାତ୍‌କାଳିକ ପରିସ୍ଥିତିରେ ଜାପାନ ସରକାରଠାରୁ ଯେତିକି ସାହାଯ୍ୟର ପ୍ରତିଶ୍ରୁତି ମିଳିଥିଲା- ସେତିକିରେ ମୋହନ ସିଂ କାମ ଆରମ୍ଭ କରିଥିଲେ- ଏହି ଆଶରେ ଯେ ଏହା ଫଳରେ ଯଦି ଖୁବ୍ କମ୍‌ରେ ବନ୍ଦୀ ଭାରତୀୟମାନଙ୍କୁ ବିଜେତା ରାଷ୍ଟ୍ରର 'ଦୁର୍ବ୍ୟବହାର'ରୁ ଅନ୍ତତଃ ରକ୍ଷା କରାଯାଇ ପାରେ କିମ୍ବା 'ସ୍ୱାଧୀନତା ସଂଗ୍ରାମ'ରେ ସେମାନେ ଅଂଶ ଗ୍ରହଣ କରିବା ପର୍ଯ୍ୟନ୍ତ ସେମାନଙ୍କର 'ସ୍ୱାସ୍ଥ୍ୟ ଓ ମନୋବଳ'କୁ ଯଦି ଅତୁଟ ରଖାଯାଇ ପାରିବ ତେବେ ତାହାହିଁ ସବୁଠାରୁ ବଡ଼ ଲାଭ ହେବ ।

କିନ୍ତୁ ଗିଲ୍ ବା ସାହାନଓ୍ୱାଜଙ୍କ ଭଳି ଭାରତୀୟ ଅଫିସରଗଣ ଜାପାନ ସରକାରଠାରୁ ସବୁ ପ୍ରକାର ସାହାଯ୍ୟ ଆଦାୟ କରିବାକୁ ଅସ୍ୱାଭାବିକ ଭାବେ ଡର ଡର ହେଉଥିଲେ । ଫଳରେ ଆରମ୍ଭରୁ ଭାରତୀୟ ଅଧିକାରୀମାନଙ୍କର ମଧ୍ୟ କିଛି କିଛି ଭୁଲ ବୁଝାମଣା ସୃଷ୍ଟି ହେଉଥିଲା ।

ସମସ୍ତ ଭୁଲ ବୁଝାମଣା ସତ୍ତ୍ୱେ ୧୯୪୧ ମସିହା ଡିସେମ୍ବର ୧୦ ତାରିଖରେ କ୍ୟାପ୍‌ଟେନ୍ ମୋହନ ସିଂଙ୍କ ନେତୃତ୍ୱରେ ମାତ୍ର ୫୪ ଜଣ ବନ୍ଦୀ ଭାରତୀୟ ସୈନ୍ୟଙ୍କ ସ୍ୱୀକୃତିରେ 'ଭାରତୀୟ ଜାତୀୟ ବାହିନୀ'ର ଶୁଭାରମ୍ଭ ହୋଇଥିଲା । କିନ୍ତୁ ସେଦିନ କଣ କେହି କେବେ କଳ୍ପନା କରିଥିବ ଯେ ସେହ କ୍ଷୁଦ୍ରାଦପି କ୍ଷୁଦ୍ର 'ମୁକ୍ତି ବାହିନୀ' ନେତାଜୀ ସୁଭାଷଙ୍କ ନେତୃତ୍ୱରେ ବ୍ରିଟିଶ୍ ଭାରତରୁ ବ୍ରିଟିଶ୍ ସୈନ୍ୟମାନଙ୍କୁ ନିପାତ କରିବା ପାଇଁ ୧୯୪୪ ମସିହାରେ ପ୍ରକୃତ ଯୁଦ୍ଧ ଆରମ୍ଭ ହେବା ବେଳକୁ ଚାଳିଶି ହଜାର ସଶସ୍ତ୍ର ଯୋଦ୍ଧାଙ୍କୁ କୋଳରେ ଧାରଣ କରି ଭାରତ ମାଟିକୁ ସ୍ପର୍ଶ କରିବେ ବୋଲି ?

ଯୁଦ୍ଧବନ୍ଦୀ ଭାରତୀୟମାନଙ୍କ ସମ୍ପର୍କରେ କ୍ୟାପ୍‌ଟେନ୍ ମୋହନ ସିଂ ଲେଖିଛନ୍ତି- "I could not convince myself that it was right for Indians to shed their blood for an end which was not applicable to them. Britain faced with the imminent danger of invasion had declared that she was fighting for freedom, democracy and other high sounding principles. She besought others to come to their help. Even at the most critical period of her national History and when she was using India to fight for her own freedom she refused to consider the question of Indian freedom. Why should we Indians fight for a thing for others the mere mention of which was considered sufficient crime for the greatest of us to be put behind bars" ? ଅର୍ଥାତ୍ ମୁଁ ମୋର ବିବେକକୁ ଏହା ଆଦୌ ବୁଝାଇ ପାରୁନାହିଁ, ଯେଉଁ ମହାନ୍ ଆଦର୍ଶ ମୋ ଦେଶ ପାଇଁ ପ୍ରଯୁଜ୍ୟ ହେଉନାହିଁ, ସେହି ଆଦର୍ଶ ବ୍ରିଟେନ୍‌କୁ ରକ୍ଷା କରିବା ପାଇଁ ଆମେ କାହିଁକି ଆମର ରକ୍ତଦାନ କରିବୁ ? ଆକ୍ରାନ୍ତ ହେବା ଆଶଙ୍କାରେ ବ୍ରିଟିଶ୍ ସରକାର ଘୋଷଣା କରିଅଛି ଯେ ସ୍ୱାଧୀନତା, ଗଣତନ୍ତ୍ର ଓ ଅନ୍ୟାନ୍ୟ ବଡ଼ ବଡ଼ ଆଦର୍ଶ ରକ୍ଷା କରିବାକୁ ସେ ଇଚ୍ଛୁଛି ଏବଂ ସେ ଇଚ୍ଛାରେ ସମସ୍ତଙ୍କର ସାହାଯ୍ୟ ସେ କାମନା କରୁଅଛି । ବ୍ରିଟେନ୍ ଇତିହାସର ସବୁଠାରୁ ଜଟିଳ ସମୟରେ ଏବଂ ନିଜର ସ୍ୱାଧୀନତାକୁ ରକ୍ଷା କରିବା କାର୍ଯ୍ୟରେ ସେ ଭାରତକୁ ବ୍ୟବହାର କରୁଅଛି । ଅଥଚ ଭାରତ ଯେତେବେଳେ 'ନିଜର ସ୍ୱାଧୀନତା' ପ୍ରଶ୍ନ ଉଠାଉଅଛି, ସେ ତାହାକୁ ପ୍ରତ୍ୟାଖ୍ୟାନ କରି ଦେଉଅଛି । ଓଲଟି 'ସ୍ୱାଧୀନତା ଦାବୀ'କୁ ଏକ ଅପରାଧ କହି

ତାହାର ଶ୍ରେଷ୍ଠ ସନ୍ତାନମାନଙ୍କୁ କାରାଗାରରେ ନିକ୍ଷେପ କରି ଦିଆଯାଉଅଛି । ଆମେ ଭାରତୀୟମାନେ କାହିଁକି ଇଂରେଜମାନଙ୍କର ଲକ୍ଷ୍ୟ ବା ଆଦର୍ଶ ପାଇଁ ଲଢ଼ିବୁ ?

''ତାହାର ଏକମାତ୍ର କାରଣ ଏହା ଯେ ଆମକୁ ପୁରା ବୋକା ବନେଇ ଦିଆଯାଇଅଛି, ଆମ୍ଭମାନଙ୍କୁ ପ୍ରତାରିତ କରାଯାଉଅଛି । ଆମ୍ଭେମାନେ ଭାରତୀୟମାନଙ୍କ ଜୀବନରେ ବିନିମୟରେ ବ୍ରିଟେନ୍‌ର ସ୍ୱାର୍ଥ ପାଇଁ ଏକ ଭଡ଼ାଟିଆ ସୈନ୍ୟ ଭାବରେ ଲଢୁଅଛୁ ଏବଂ ଏହା ଫଳରେ ଭାରତର ଜନଶକ୍ତି, ଧନବଳ ଏବଂ ଅସ୍ତ୍ରଶସ୍ତ୍ର ସାହାଯ୍ୟରେ ବ୍ରିଟେନ୍ ହିଁ ସୁରକ୍ଷିତ ରହିଅଛି ।''

ଏହିଭଳି ସ୍ୱଚ୍ଛ ଓ ଦେଶପ୍ରେମ ସୁଲଭ ବିଚାର ଧାରାରେ ଅଭିମନ୍ତିତ ହୋଇ ମୋହନ ସିଂ ''ଭାରତୀୟ ଜାତୀୟ ବାହିନୀ''ର ସର୍ବ ପ୍ରଥମ ୟୁନିଟ୍‌ଟି ଗଠନ କରିବାର ଗୌରବ ଅର୍ଜନ କରିଥିଲେ ସୁଦ୍ଧା ସେ ଏହା ମଧ୍ୟ ଜାଣିଥିଲେ ଯେ କେବଳ ସାମରିକ ଶକ୍ତି ସଙ୍ଗଠିତ କରି ସ୍ୱାଧୀନତା ସଂଗ୍ରାମ ଭଳି ଏକ ରାଜନୈତିକ ବିପ୍ଲବ ଆନ୍ଦୋଳନ ହୋଇ ନପାରେ । ସେହି ରାଜନୈତିକ ସଙ୍ଗଠନ ପାଇଁ ରାଜନୈତିକ ପ୍ରବଣତା ଓ ଦୂରଦୃଷ୍ଟି ଆବଶ୍ୟକ । ସେହି ଅପରିହାର୍ଯ୍ୟ ରାଜନୈତିକ ଶକ୍ତି ଯୋଗାଇବାକୁ ପୂର୍ବ ଏସିଆରେ ପ୍ରବୀଣ ବ୍ୟକ୍ତିମାନଙ୍କର ଅଭାବ ନଥିଲା ।

ଜାପାନ ଯୁଦ୍ଧରେ ଯୋଗ ଦେବାପରେ ସେମାନେ ଟୋକିଓରେ ଏକତ୍ର ହୋଇ ସାରିଥିଲେ । ସେଥିପାଇଁ କ୍ୟାପ୍‌ଟେନ୍ ମୋହନ ସିଂ ଆରମ୍ଭରୁ ଜ୍ଞାନୀ ପ୍ରୀତମ୍ ସିଂହଙ୍କର 'ମାଲୟ-ଭାରତୀୟ ସ୍ୱାଧୀନତା ସଙ୍ଘ' ସହ 'ଜାତୀୟ ବାହିନୀ'କୁ ଅଙ୍ଗୀଭୂତ କରିସାରିଥିଲେ । ତାହାହିଁ ପରବର୍ତ୍ତୀ ଅବସ୍ଥାରେ "Independence League of India" ବା ଭାରତୀୟ ସ୍ୱାଧୀନତା ସଙ୍ଘ' ରେ ପରିଣତ ହେଲା ।

ସିଙ୍ଗାପୁର ପତନ ପରେ ବ୍ରିଟେନ୍ ସରକାର ବଡ଼ ଦୟନୀୟ ପରିସ୍ଥିତିରେ ପଡ଼ିଗଲା । ପ୍ରାଚ୍ୟର 'ପ୍ରବେଶ ଦ୍ୱାର' ବୋଲି ବିଚାର କରାଯାଉଥିବା ସିଙ୍ଗାପୁରର ପ୍ରତିରକ୍ଷା ବ୍ୟୂହକୁ ଇଂରେଜମାନେ ଅଶେଷ ଦୃଢ଼ତା ସହକାରେ ନିର୍ମାଣ କରିଥିଲେ । କିନ୍ତୁ ଜାପାନ ଆକ୍ରମଣର ମାତ୍ର ଏକ ସପ୍ତାହ ଭିତରେ ବ୍ରିଟିଶ୍ ବ୍ୟୂହ ସେଠାରେ ଚୁରମାର ହୋଇଯାଇଥିଲା । ସେଠାରେ ବନ୍ଦୀ ହୋଇଥିବା ପଇଁଚାଳିଶି ହଜାର ଭାରତୀୟ ସୈନ୍ୟଙ୍କୁ ହସ୍ତାନ୍ତରିତ କରାଗଲା କ୍ୟାପ୍‌ଟେନ୍ ମୋହନ ସିଂଙ୍କୁ । ଆଇ. ଏନ୍. ଏ.ର ଆକାର ବଢ଼ିବା ସଙ୍ଗେ ସଙ୍ଗେ ଦାୟିତ୍ୱ ମଧ୍ୟ ବହୁଗୁଣିତ ହେଲା । ଜାପାନ ପ୍ରଧାନମନ୍ତ୍ରୀ ଟୋଜୋ ପାର୍ଲିଆମେଣ୍ଟରେ ଏକ ଭାଷଣ ପ୍ରସଙ୍ଗରେ କହିଲେ, "Japan expects that Indian will regain its proper status as India for the Indians and she will not stint herself in extending assistance to the patriotic efforts of the Indians." (ଜାପାନ ଆଶାକରେ ଯେ 'ଭାରତ ଯେ ଭାରତୀୟମାନଙ୍କର' ସେହି ଯଥାର୍ଥ ସ୍ଥାନ ଅଧିକାର

କରିବାକୁ ଭାରତ ସମର୍ଥ ହେବ ଏବଂ ଦେଶ ପ୍ରେମୀ ଭାରତୀୟମାନଙ୍କର ସକଳ ପ୍ରଚେଷ୍ଟା ପ୍ରତି ସହାୟତା ପ୍ରଦାନ କରିବାକୁ ଜାପାନ କେବେ ପରାଙ୍ମୁଖ ହେବ ନାହିଁ । ଟୋଜୋଙ୍କର ଉପରୋକ୍ତ ଭାଷଣ ସମଗ୍ର ପୂର୍ବ ଏସିଆରେ ଦେଶପ୍ରେମୀ ଭାରତୀୟମାନଙ୍କ ମନରେ ଯୁଗପତ୍ ଆନନ୍ଦ ଓ ଉତ୍ସାହ ଖେଳାଇଦେଲା । ଜାପାନରେ ରାସବିହାରୀ ପୂର୍ବ ଏସିଆର ବିଭିନ୍ନ ଦେଶରେ ବାସ କରୁଥିବା ସ୍ୱାଧୀନତା କାମୀ ବିଶିଷ୍ଟ ଭାରତୀୟ ଓ ଭାରତୀୟ ରାଜନୀତିକ ଓ ସାଂସ୍କୃତିକ ସଙ୍ଗଠନ ଗୁଡ଼ିକର ଏକ ବୈଠକ ଟୋକିଓରେ ଡାକିବାକୁ ସ୍ଥିର କଲେ । ଯେପରିକି ଆଇ.ଏନ୍.ଏ.କୁ ଅଧିକ ସୁସଂହତ ଭାବରେ ଗଢ଼ାଯିବା ସଙ୍ଗେ ସଙ୍ଗେ ତାହାର ରାଜନୈତିକ ସଙ୍ଗଠନକୁ ମଧ୍ୟ ଦୃଢ଼ତର କରାଯାଇପାରିବ ।

ରାସ ବିହାରୀଙ୍କ ଏହି ଆହ୍ୱାନରେ ପ୍ରସ୍ତାବିତ ଟୋକିଓ ସମ୍ମିଳନୀରେ ଯୋଗଦେବାକୁ ଚାରିଆଡ଼େ ପ୍ରସ୍ତୁତି ଆରମ୍ଭ ହୋଇଗଲା । ଜ୍ଞାନୀ ପ୍ରୀତମ୍ ସିଂ, କ୍ୟାପ୍ଟେନ୍ ମୋହନ ସିଂ, ଥାଇ ଭାରତ ସାଂସ୍କୃତିକ ସଙ୍ଗଠନର ସ୍ୱାମୀ ସତ୍ୟାନନ୍ଦ ପୁରୀ, ସିଙ୍ଗାପୁରର ଏସ୍.ସି. ଗୋହା, କେ.ପି.କେ. ମେନନ୍ ଓ ଏନ୍. ରାଘବନ ପ୍ରଭୃତିଙ୍କ ମଧ୍ୟରେ ଟୋକିଓ ସମ୍ମିଳନୀର କାର୍ଯ୍ୟକ୍ରମ ସମ୍ପର୍କରେ ନାନା କଳ୍ପନା ଜଳ୍ପନା ଆରମ୍ଭ ହୋଇଗଲା । ତାହା ମୁଖ୍ୟତଃ ବିପ୍ଳବୀ ରାସବିହାରୀ ଓ ଜାପାନ ସରକାରର 'ମନୋଭାବ' ନେଇ ସୃଷ୍ଟି ହୋଇଥିଲା । କେତେକ ସନ୍ଦେହ କରୁଥିଲେ ଯେ ରାସବିହାରୀ ପଚିଶ ତିରିଶ ବର୍ଷ ଧରି ଜାପାନ ନାଗରିକ ଭାବରେ ସେଠାରେ ବସବାସ କରୁଥିବାରୁ ତାଙ୍କର ମନୋଭାବ "ଜାପାନ ତୋଷଣ" (appeasment) ହୋଇପାରେ ଏବଂ ତାଙ୍କରି ମାଧ୍ୟମରେ ଜାପାନ ସରକାର ତାହାର ରାଜନୈତିକ ଅଭିସନ୍ଧି ପୂରଣ କରିବାକୁ ଉଦ୍ୟମ କରିପାରେ । ଜାପାନ ସରକାର କଥା ଯାହା ହେଉ, ରାସବିହାରୀଙ୍କ ସମ୍ପର୍କରେ ସେଭଳି ଧାରଣା ପୋଷଣ କରିବା ସମ୍ପୂର୍ଣ୍ଣ ଭିତ୍ତିହୀନ ଥିଲା ।

ରାସବିହାରୀ ଜଣେ ଅସାଧାରଣ ବିପ୍ଳବୀ ଥିଲେ । ଭାରତର ଭାଇସ୍ ରାୟ ଉପରକୁ ବୋମା ଫୋପାଡ଼ି ସେ ଦେଶ ଛାଡ଼ି ପଳାଇ ଆସିଥିଲେ ଏବଂ ସେଠାରୁ ମଧ୍ୟ ତାଙ୍କୁ ଧରିନେବା ପାଇଁ ବ୍ରିଟିଶ୍ ସରକାର କମ୍ ଉଦ୍ୟମ କରି ନଥିଲେ । ଧରା ହୋଇଥିଲେ ତାଙ୍କୁ ନିଶ୍ଚୟ ଫାଶୀ କାଠରେ ଝୁଲିବାକୁ ପଡ଼ିଥାନ୍ତା । ଜାପାନର 'ବ୍ଲାକ୍ ଡ୍ରାଗନ୍' ନାମକ ବାମପନ୍ଥୀ ଦଳ ତାଙ୍କର ଜୀବନ ରକ୍ଷା କରିବା ପାଇଁ ଜାପାନରେ ଏକ ଜନ ଆନ୍ଦୋଳନ କରିଥିଲେ । ସେମାନଙ୍କର ଯୁକ୍ତି ଥିଲା "ଜାପାନ ଏକ ସ୍ୱାଧୀନ ଦେଶ, ତାହା ବ୍ରିଟେନ୍‌ର କୌଣସି କରଦ ରାଜ୍ୟ ନୁହେଁ । ଏକ ପରାଧୀନ ଦେଶର ସ୍ୱାଧୀନତା ଅର୍ଜନ ପାଇଁ ଲଢୁଥିବା ରାସବିହାରୀଙ୍କୁ ଜାପାନ ସରକାର କଦାପି ଇଂରେଜ ସରକାର ହାତରେ ଅର୍ପଣ କରିପାରିବ ନାହିଁ । କିନ୍ତୁ ଆନ୍ତର୍ଜାତିକ ଆଇନାନୁସାରେ ଜାପାନର ନାଗରିକମାନଙ୍କ ପ୍ରତି ସେହି ବ୍ୟବସ୍ଥା ଲାଗୁ ହେଉ ନଥିଲା । ତେଣୁ ରାସବିହାରୀଙ୍କ ସମର୍ଥକମାନେ ତାଙ୍କୁ ଜାପାନର ନାଗରିକ କରିବା ପାଇଁ ଆନୁସଙ୍ଗିକ ବ୍ୟବସ୍ଥାରେ ଲାଗି ପଡ଼ିଲେ । ଦେଖାଗଲା ଯେ ନାଗରିକ ହେବାକୁ ହେଲେ ରାସବିହାରୀଙ୍କୁ

ଜାପାନରେ ବିବାହ କରିବାକୁ ପଡ଼ିବ । ''ଦେଶ ସ୍ୱାଧୀନ ନହେବା ପର୍ଯ୍ୟନ୍ତ ବିବାହ ନ କରିବା ପାଇଁ ସେ ଯୁଗରେ ଭାରତରେ ଯେଉଁ ଶହ ଶହ ଯୁବକ ଯୁବତୀ ରକ୍ତ ଶପଥ ନେଇଥିଲେ'', ତାହା ଏକ ବିଷମ ସମସ୍ୟା ସୃଷ୍ଟି କରିଥିଲା । ୨ଯତଃ ସେ ବିବାହ କରିବାକୁ ରାଜି ହେଲେ ମଧ୍ୟ ତାଙ୍କ ପାଇଁ ଜାପାନ ଦେଶର କନ୍ୟାଟିଏ ମିଳିବା ସହଜ କଥା ନ ଥିଲା । ''ମୁଣ୍ଡ ଉପରେ ଫାଶୀ ଦଉଡ଼ି ଝୁଲୁଥିବା ଓ ଗଣ୍ଡା ଗଣ୍ଡା ୱାରେଣ୍ଟ ଗୋଡ଼ାଉଥିବା ଜଣେ ଫାଶୀ ଆସାମୀକୁ କେଉଁ ଝିଅ ବା ବିବାହ କରିବ ? ଶେଷରେ ଜଣେ ଭାରତ ବନ୍ଧୁ ଓ ବୌଦ୍ଧଧର୍ମ ଅନୁଗାମୀ କୋଟିପତି ରୁଟି ବ୍ୟବସାୟୀ ସୋମା ସିଟା ଦମ୍ପତି ରାସବିହାରୀଙ୍କ ଭଳି ମହାନ୍ ତ୍ୟାଗୀ ଓ ଆଦର୍ଶବାଦୀ ଯୁବକଙ୍କର ଜୀବନ ରକ୍ଷା କରିବା ପାଇଁ ଏବଂ ଭାରତର ସ୍ୱାଧୀନତା ସଂଗ୍ରାମର ସ୍ୱାର୍ଥରେ ତାଙ୍କର ବଞ୍ଚି ରହିବାର ଆବଶ୍ୟକତା ତାଙ୍କୁ ବୁଝାଇ ସେମାନଙ୍କର ଏକମାତ୍ର କନ୍ୟା ତୋସିକୋଙ୍କ ସହ ତାଙ୍କର ବିବାହ କରାଇଥିଲେ । ଫଳରେ ରାସବିହାରୀଙ୍କୁ ଜାପାନୀ ନାଗରିକତ୍ୱ ମିଳିଲା ଓ ତାଙ୍କର ଜୀବନ ରକ୍ଷା ହେଲା । କିନ୍ତୁ ସେହିଦିନ ଠାରୁ ଦୀର୍ଘ ତିରିଶ ବର୍ଷ କାଳ ଜାପାନରେ ରହିଥିଲେ ସୁଦ୍ଧା ଦିନକ ପାଇଁ ଭାରତର ସ୍ୱାଧୀନତା ପ୍ରଶ୍ନକୁ ବିସ୍ମୃତ ହୋଇ ନାହାନ୍ତି । ଜାପାନର ନାଗରିକ ଭାବରେ ଯେତିକି ଆନୁଗତ୍ୟ ଆବଶ୍ୟକ ସେତିକି ମାତ୍ର ସେ ପ୍ରଦର୍ଶନ କରି ଆସିଛନ୍ତି । ଆଇ.ଏନ୍.ଏ. ଗଢ଼ାଯିବା ପୂର୍ବର ତିରିଶ ବର୍ଷ ସେ ଭାରତର ସଶସ୍ତ୍ର ବିପ୍ଳବୀମାନଙ୍କୁ ଯଥା ସମ୍ଭବ ସାହାଯ୍ୟ କରି ଆସିଛନ୍ତି । ଭାରତର ସ୍ୱାଧୀନତା ପ୍ରାପ୍ତି ପାଇଁ ଅସୀମ ଦୁଃଖ କଷ୍ଟ ସହିଥିବା ଏବଂ ତାହାର ବିନିମୟରେ ସବୁକିଛି ବିସର୍ଜନ କରିବାକୁ ପ୍ରସ୍ତୁତ ଥିବା ତାଙ୍କ ଭଳି ଜଣେ ଧନୁର୍ଦ୍ଧର ଭାରତ ସନ୍ତାନର 'ଆନୁଗତ୍ୟ'ରେ ସନ୍ଦେହ କରିବା ବାଳ ସୁଲଭ ଚପଳତା ଛଡ଼ା ଅନ୍ୟ କିଛି ହୋଇ ନ ପାରେ ।

ଯାହା ହେଉ ୧୯୪୧ ମାର୍ଚ୍ଚ ମାସରେ ଟୋକିଓ ଠାରେ 'ଭାରତର ସ୍ୱାଧୀନତା ସଙ୍ଘ'ର ବୈଠକ ବସିଲା । ସେ ବୈଠକରେ ବ୍ରିଟିଶ୍ ଶାସନାଧୀନ ପୂର୍ବ ଏସିଆର ଅନ୍ୟାନ୍ୟ ବ୍ରିଟିଶ୍ ଶାସନାଧୀନ ରାଜ୍ୟର ରାଜନୈତିକ ନେତୃବୃନ୍ଦ ସିଙ୍ଗାପୁରଠାରେ ଏକତ୍ରିତ ହୋଇ ଟୋକିଓ ବୈଠକ ପାଇଁ କୌଶଳ ନିର୍ଦ୍ଧାରଣ କରିଥିଲେ ।

ଟୋକିଓ ବୈଠକରେ ବହୁତ ଗୁଡ଼ିଏ ପ୍ରସ୍ତାବ ଗୃହୀତ ହୋଇଥିଲା । ସବୁ ପ୍ରସ୍ତାବରେ ଅବଶ୍ୟ ଆଶା ପ୍ରକାଶ କରାଯାଇଥିଲା ଯେ ଆଇ.ଏନ୍.ଏ. ସାହାଯ୍ୟରେ ଯେଉଁ ସ୍ୱାଧୀନତା ଯୁଦ୍ଧ ଭାରତ ମାଟିରେ ସଙ୍ଗଠିତ ହେବ, ତାହା କେବଳ ଭାରତୀୟ ମାନଙ୍କ ଦ୍ୱାରା ହେବ ଏବଂ ଜାପାନ ସରକାର ସେଥିରେ କୌଣସି ହସ୍ତକ୍ଷେପ କରିବେ ନାହିଁ ।

"That military action will be taken by the Indian National Army under the command of Indians together with such military, naval and air cooperation and assiastance as may be requested from the Japanese authourities by the council of Action of the Indian Independence league to be formed and that

the framing of the future constitution of India will be left entirely to the representatives of the people of India."

ଅର୍ଥାତ୍ ''ଭାରତର ସ୍ୱାଧୀନତା ଅର୍ଜନ ପାଇଁ ଯେଉଁ ସାମରିକ ଅଭିଯାନ ସଙ୍ଗଠିତ ହେବ, ତାହା ସମ୍ପୂର୍ଣ୍ଣ ରୂପେ ଭାରତୀୟମାନଙ୍କ ଦ୍ୱାରା ହେବ ଏବଂ ପ୍ରସ୍ତାବିତ 'କାଉନ୍‌ସିଲ୍ ଅଫ୍ ଆକ୍ସନ୍' ବା 'କ୍ରିୟାନୁଷ୍ଠାନ କମିଟି'ର ଅନୁରୋଧ ଅନୁସାରେ ଜାପାନଠାରୁ ମିଳୁଥିବା ନୌ, ଆକାଶ ଓ ପଦାତିକ ବାହିନୀ ସେଥିରେ ସହାୟତା କରିବ ଏବଂ ସ୍ୱାଧୀନ ଭାରତର ସମ୍ବିଧାନ ଭାରତୀୟମାନଙ୍କ ଦ୍ୱାରା ନିର୍ବାଚିତ ଲୋକ ପ୍ରତିନିଧିମାନଙ୍କ ଦ୍ୱାରା କରାଯିବ ।''

ଟୋକିଓ ସମ୍ମିଳନୀର ଅନ୍ୟ ଏକ ପ୍ରସ୍ତାବରେ ଜାପାନ ସରକାରଙ୍କୁ ଅନୁରୋଧ କରାଯାଇଥିଲା ଯେ ''ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କୁ ଜର୍ମାନୀରୁ ଏଠାକୁ ଆଣିବାର ବନ୍ଦୋବସ୍ତ କରାଯାଉ, ଯେପରିକି ସେ ପୂର୍ବ ଏସିଆରେ ଚାଲିଥିବା ଭାରତୀୟ ସ୍ୱାଧୀନତା ସଂଗ୍ରାମର ନେତୃତ୍ୱ ନେବାକୁ ସମର୍ଥ ହୁଅନ୍ତି ।''

ଟୋକିଓ ସମ୍ମିଳନୀରେ ଆଇ.ଏନ୍.ଏ. ଏବଂ ସ୍ୱାଧୀନତା ସଙ୍ଘର ପରିଚାଳନା ପାଇଁ ଗଢ଼ାଯାଇଥିବା ''କ୍ରିୟାନୁଷ୍ଠାନ କମିଟି ବା କାଉନ୍‌ସିଲ୍ ଅଫ୍ ଆକ୍ସନ୍'' ରେ ସ୍ୱାଭାବିକ ଭାବରେ ରାସବିହାରୀଙ୍କୁ ଅଧ୍ୟକ୍ଷ ଭାବେ ନିର୍ବାଚିତ କରାଯାଇଥିଲା । ଜଣେ ବର୍ଷିୟାନ୍ ଓ ବହୁ ଅନୁଭୂତି ସମ୍ପନ୍ନ ନିଃସ୍ୱାର୍ଥପର ଦେଶପ୍ରେମୀ ତଥା ସମ୍ମାନସ୍ପଦ ବ୍ୟକ୍ତି ଆଉ କିଏ ବା ଥିଲା ? ଅଧିକନ୍ତୁ ଆଇ.ଏନ୍.ଏ.ର ଭବିଷ୍ୟତ ମୁଖ୍ୟତଃ ଜାପାନ ସରକାର ଉପରେ ନିର୍ଭର କରୁଥିବାରୁ ରାସବିହାରୀ ହିଁ ସେହି କାର୍ଯ୍ୟ ପାଇଁ ଏକମାତ୍ର ନିର୍ଭରଯୋଗ୍ୟ ବ୍ୟକ୍ତି ଥିଲେ ।

ରାସବିହାରୀ ଠିକ୍ ବୁଝିଥିଲେ ଯେ ଏକ ବିଜେତା ସରକାର ଭାବରେ ଜାପାନ ପ୍ରଥମାବସ୍ଥାରେ କେବେ ମୁକ୍ତ ହୃଦୟରେ ଭାରତକୁ ସାହାଯ୍ୟ କରି ନପାରେ । କିନ୍ତୁ ଏହା ମଧ୍ୟ ଜାଣିଥିଲେ ଯେ ତାଙ୍କର ମାତୃଭୂମିକୁ ମୁକ୍ତ କରିବା ପାଇଁ ଏକ ଶତ୍ରୁ ବା ବିଜେତା ଦେଶଠାରୁ ଯେତିକି ସାହାଯ୍ୟ ମିଳିବ ତାକୁ ଦୁଇହାତ ବଢ଼ାଇ ଗ୍ରହଣ କରିବା ଉଚିତ । ("He believed that any chance of Independence was worth taking. He had fought a life time against the Raj, if the Japanese could help to bring it down he was willing to go along with them.") ସେ ଆଜୀବନ ବ୍ରିଟିଶ୍ ରାଜ ବିରୁଦ୍ଧରେ ଲଢ଼ି ଆସିଛନ୍ତି । ସେହି ରାଜ୍‌ର ପତନ ପାଇଁ ଯଦି ଜାପାନ ସରକାର ସାହାଯ୍ୟ କରେ ସେ ସେମାନଙ୍କ ସହ ନ ଚାଲିବେ କାହିଁକି ? ସେ କେବଳ ଗୋଟିଏ ବିଷୟରେ ଅତ୍ୟନ୍ତ ସାବଧାନ ଥିଲେ ଯେ 'କାଉନ୍‌ସିଲ୍ ଅଫ୍ ଆକ୍ସନ୍'ର ଅଧ୍ୟକ୍ଷ ଭାବରେ ଭାରତର ମାନ ମର୍ଯ୍ୟାଦାହାନୀ ହେବା ଭଳି କୌଣସି କାର୍ଯ୍ୟ ଯେପରି ସେ ନ କରନ୍ତି ।'' ତାହାହିଁ ସେ ପାଳନ କରିଥିଲେ । ପରବର୍ତ୍ତୀ କାଳରେ କ୍ୟାପ୍‌ଟେନ୍ ମୋହନ ସିଂଙ୍କର ବିବାଦୀୟ କାର୍ଯ୍ୟକଳାପ ଯୋଗୁଁ ଆଇ.ଏନ୍.ଏ.ରେ ଯେଉଁ ସଙ୍କଟଜନକ ପରିସ୍ଥିତି ସୃଷ୍ଟି ହୋଇଥିଲା- ଏପରିକି ଆଇ.ଏନ୍.ଏ. ଭାଙ୍ଗି ଚୁରମାର ହେବାର ଯେଉଁ ପରିଣତିର

ଉଦ୍‌ଭବ ହୋଇଥିଲା ରାସବିହାରୀ ନଥିଲେ ତାହା କଦାପି ରକ୍ଷା ହୋଇ ପାରିନଥାନ୍ତା କିମ୍ବା ଏହାର ବର୍ଷକ ପରେ ନେତାଜୀ ସେଠାରେ ପହଞ୍ଚିବା ବେଳକୁ ତାହାର ଅସ୍ତିତ୍ୱ ମଧ୍ୟ ନଥାନ୍ତା । ଇତିହାସର ଦୁର୍ବାର ଗତି ପଥରେ ସେହି 'ଯଦି' 'କିନ୍ତୁ'ର ଆଜି କୌଣସି ସ୍ଥାନ ନାହିଁ- ପଣ୍ଡିତ ସୁଲଭ ଯୁକ୍ତି ତର୍କ ଛଡ଼ା ।

× × ×

ଯାହାହେଉ, ଟୋକିଓ ସମ୍ମିଳନୀର ସିଦ୍ଧାନ୍ତ ଅନୁସାରେ ୧୯୪୧ ଜୁନ୍ ମାସରେ ବ୍ୟାଙ୍କକ୍ ଠାରେ ଦେଶପ୍ରେମୀ ଭାରତୀୟମାନଙ୍କର ଆଉ ଏକ ସମ୍ମିଳନୀ ବସିଲା ।

ଟୋକିଓ ବୈଠକରେ କେତେକ ଭାରତୀୟ ନେତା ଜାପାନ ସରକାରଠାରୁ ଯେଉଁଳି ପ୍ରତିଶ୍ରୁତି ଆଦାୟ କରିବାକୁ ଦାବୀ କରୁଥିଲେ ତାହାକୁ ଐତିହାସିକମାନେ 'ଔଦ୍ଧତ୍ୟ' ବୋଲି ଅଭିହିତ କରିଥିଲେ । ସେହି ପୃଷ୍ଠପଟରେ ବ୍ୟାଙ୍କକ୍ ସମ୍ମିଳନୀର ପ୍ରସ୍ତାବ ଗୁଡ଼ିକ ବିଚାର କରିବାକୁ ପଡୁଥିବାରୁ ଟୋକିଓ ପ୍ରସ୍ତାବ ଗୁଡ଼ିକ ସମ୍ପର୍କରେ ହୋଇଥିବା ସମାଲୋଚନାକୁ ଉଲ୍ଲେଖ କରିବା ଆବଶ୍ୟକ ଅଟେ ।

ଜନୈକ ଜାପାନ ବିରୋଧୀ ଐତିହାସିକ ଗେରାଡ଼କରେ ମଧ୍ୟ କହନ୍ତି, ''କେତେଗୁଡ଼ିଏ ପ୍ରସ୍ତାବର ଭାଷା ଏଭଳି ହୋଇଥିଲା ଯେ ମନେ ହେଉଥିଲା ଯେପରିକି ପ୍ରତିନିଧିମାନେ ନିଜକୁ ''ଏକ ସ୍ୱାଧୀନ ଦେଶର ନାଗରିକ ବୋଲି ଭାବୁଥିଲେ ।'' ଭାରତର ଜାତୀୟ ନେତୃବୃନ୍ଦ, ବିଭିନ୍ନ ଶ୍ରମିକ ସଙ୍ଗଠନ ଓ ତାହାର ନେତାମାନଙ୍କ ସହ ଭେଟିବା ପାଇଁ ବ୍ୟବସ୍ଥା ଯୋଗାଇ ଦେବାକୁ ମଧ୍ୟ ଜାପାନ ସରକାରକୁ କହିବାର 'ଔଦ୍ଧତ୍ୟ' (temerity) ପ୍ରସ୍ତାବ ଗୁଡ଼ିକରେ ପ୍ରକାଶ କରାଯାଇଥିଲା । ଭାରତର ସ୍ୱାଧୀନତା ତଥା ସାର୍ବଭୌମ ଅଧିକାର ଆଗତୁରା ଘୋଷଣା କରିବାକୁ, ଭାରତୀୟ ସ୍ୱାଧୀନତା ସଂଘ ପାଇଁ ଆବଶ୍ୟକୀୟ ଅର୍ଥ 'ଋଣ' ରୂପରେ ଦେବାକୁ ମଧ୍ୟ କୁହାଯାଇଥିଲା ।'' (The war of the springing Tiger- 113)

ଗିଲ୍ ପ୍ରଭୃତି ସାମରିକ ଅଫିସରମାନେ ତ ଭୁଲି ଯାଉଥିଲେ ଯେ ଜାପାନ ଏକ ବିଜୟୀ ଦେଶ ଏବଂ ସେମାନେ ତା' ନିକଟରେ ବନ୍ଦୀ ଭାରତୀୟ ସେନା ବ୍ୟତୀତ ଅନ୍ୟ କିଛି ନୁହଁନ୍ତି ।

ଟୋକିଓ ସମ୍ମିଳନୀର ଅଳ୍ପକାଳ ପୂର୍ବରୁ ପଣ୍ଡିତ ନେହେରୁ ସେହି ପରିପ୍ରେକ୍ଷୀରେ ଏକ ଅବାଞ୍ଛନୀୟ ବିବୃତ୍ତି ଦେଇ ପ୍ରବାସୀ ଭାରତୀୟମାନଙ୍କର ପ୍ରଚେଷ୍ଟାରେ ପ୍ରତିବନ୍ଧକ ସୃଷ୍ଟି କରିବାକୁ ଉଦ୍ୟମ କରିଥିଲେ । ସୁଭାଷ କଂଗ୍ରେସ ସଭାପତି ହେବା ସମୟରୁ ନେହେରୁଙ୍କର ତାଙ୍କ ପ୍ରତି ଯେଉଁ ଅସୂୟାଭାବ ଥିଲା, ତାହା କାହାରିକୁ ଅଛପା ନଥିଲା । ସୁଭାଷ ଜର୍ମାନୀରେ 'ଇଣ୍ଡିଆନ୍ ଲିଜିଅନ୍' ଗଢ଼ିବା ପରେ ନେହେରୁଙ୍କ ସମେତ ଅନ୍ୟ କଂଗ୍ରେସ ନେତାମାନଙ୍କର ଗାତ୍ର ଦାହ ଆହୁରି ବଢ଼ି ଯାଇଥିଲା । ସେ ଜାଣିଥିଲେ ଯେ ପୂର୍ବ ଏସିଆରେ 'ମୁକ୍ତିବାହିନୀ' ଗଢ଼ିବାର ଯେଉଁ ପ୍ରଚେଷ୍ଟା ଚାଲିଛି, ତାହା ପଛରେ ସେହି ସୁଭାଷଙ୍କ ଉତ୍ସାହ ଓ ପ୍ରରୋଚନା

ହିଁ କାର୍ଯ୍ୟ କରୁଛି, ସେଥିପାଇଁ ସେ ତାଙ୍କ ବିବୃତ୍ତିରେ ପ୍ରବାସୀ ଭାରତୀୟମାନଙ୍କୁ ଧମକ ଦେବା ସ୍ୱରରେ କହିଲେ, "Indians living outside India should stay out of internal Indian politics. If they did not, then they would be regarded as traitors." ଅର୍ଥାତ୍ ''ପ୍ରବାସୀ ଭାରତୀୟମାନେ ଭାରତର ଆଭ୍ୟନ୍ତରୀଣ ରାଜନୀତିରୁ ଅଲଗା ରହିବା ଦରକାର । ସେମାନେ ଯଦି ତାହା ନ କରନ୍ତି ତେବେ ସେମାନଙ୍କୁ 'ଦେଶଦ୍ରୋହୀ' ବୋଲି ମନେ କରାଯିବ ।'' ନେହେରୁ ଭାବୁଥିଲେ ଯେଉଁମାନେ ଦେଶ ଭିତରେ ରହି ଅଛନ୍ତି- କେବଳ ସେହିମାନଙ୍କର ଦେଶ ବିଷୟରେ ମୁଣ୍ଡ ଖେଳାଇବାର ଅଧିକାର ଅଛି । ଏହା ତାଙ୍କର ଏକ ଅନଧିକାର ଓ ଅସ୍ୱହଣୀୟ ମନ୍ତବ୍ୟ । ପ୍ରବାସୀ ଭାରତୀୟମାନେ ଯେଉଁ ପ୍ରତିକୂଳ ପରିସ୍ଥିତିରେ ଦେଶର ସ୍ୱାଧୀନତା ଆନ୍ଦୋଳନକୁ ତ୍ୱରାନ୍ୱିତ କରିବାକୁ ଉଦ୍ୟମ କରୁଥିଲେ– ସୁବିଧା ଜନକ ଅବସ୍ଥାରେ କାର୍ଯ୍ୟ କରୁଥିବା ନେହେରୁ ପ୍ରଭୃତିଙ୍କର ତାହା କଳ୍ପନାତୀତ ଥିଲା । ଦ୍ୱିତୀୟତଃ ଭାରତୀୟ ଓ ପ୍ରବାସୀ ଭାରତୀୟଙ୍କର ମାର୍ଗ ଥିଲା ସମ୍ପୂର୍ଣ୍ଣ ପୃଥକ । ଯୁଦ୍ଧରେ ବିପନ୍ନ ବ୍ରିଟେନ୍ ସରକାରକୁ ଅସୁବିଧାରେ ନପକାଇବା ଥିଲା ନେହେରୁ ଓ କଂଗ୍ରେସର ନୀତି । ପ୍ରବାସୀ ଭାରତୀୟମାନେ କିନ୍ତୁ ବ୍ରିଟେନ୍‌ର ପ୍ରତ୍ୟେକ ଅସୁବିଧାର ସୁଯୋଗ ନେଇ ତାହା ଉପରେ ପ୍ରହାର କରିବା ନୀତିରେ ବିଶ୍ୱାସ କରୁଥିଲେ । ନେହେରୁଙ୍କ ସଂଗ୍ରାମ ଥିଲା ଶାନ୍ତିପୂର୍ଣ୍ଣ ଆନ୍ଦୋଳନରେ ସୀମାବଦ୍ଧ । କିନ୍ତୁ ପ୍ରବାସୀ ଭାରତୀୟମାନେ ତ ସଶସ୍ତ୍ର ଅଭିଯାନରେ ଭାରତକୁ ସ୍ୱାଧୀନ କରିବାରେ ବିଶ୍ୱାସ କରୁଥିଲେ । ତଥାପି ସେମାନେ ନେହେରୁଙ୍କର ସେହି ଧମକରେ ପୁରା ଦବି ଯାଇଥିଲେ ।

ସ୍ୱାମୀ ସତ୍ୟାନନ୍ଦୀ ପୁରୀ ନେହେରୁଙ୍କର ସେହି ବିବୃତ୍ତିର ଅର୍ଥ କରି କହିଲେ,"Neheru was giving them all a warning to stay clear of the Japanese or else they might be regarded as quisling." ଅର୍ଥାତ୍ ''ନେହେରୁ ଏହି ବିବୃତ୍ତିରେ ଏକ ସାବଧାନ ବାଣୀ ଶୁଣାଇ ଅଛନ୍ତି ଯେ ଜାପାନ ସରକାରଠାରୁ ତୁମ୍ଭେମାନେ ଦୂରେଇ ରୁହ, ନଚେତ୍ ତୁମ୍ଭମାନଙ୍କୁ ଜାପାନ ସରକାରର ସଖୀ କଣ୍ଢେଇ ଭାବରେ ଗଣ୍ୟ କରାଯିବ ।''

ବ୍ୟାଙ୍କକ୍ ସମ୍ମିଳନୀର ଅଧିକାଂଶ ଆଲୋଚନାରେ ନେହେରୁଙ୍କ ଉପରୋକ୍ତ ବିବୃତ୍ତିର ପ୍ରଭାବ ପଡ଼ିଥିଲା । ନେହେରୁଙ୍କର ଅଭିସନ୍ଧି ବୁଝି ନ ପାରି ପ୍ରତିନିଧିମାନେ ଏକମାତ୍ର ସାହାଯ୍ୟକାରୀ ରାଷ୍ଟ୍ର ଜାପାନ ଠାରୁ ଅସମ୍ଭବ ଓ ଅବାନ୍ତର ଦାବୀମାନ ହାସଲ କରିବାକୁ ଚେଷ୍ଟା କଲେ ଯାହାର ଫଳ ସମ୍ପୂର୍ଣ୍ଣ ଓଲଟା ହେଲା ।

ଜାପାନ ସରକାର ବିରୋଧରେ କ୍ୟାପ୍‌ଟେନ୍ ମୋହନ ସିଂହଙ୍କର କ୍ରମ ବର୍ଦ୍ଧମାନ ଅସନ୍ତୋଷର ଅନ୍ୟତମ କାରଣ ଥିଲେ ନିରଞ୍ଜନ ସିଂହ ଗୀଲ । ମୋହନ ସିଂ ସିନା ରଣକ୍ଷେତ୍ରରେ ସମ୍ମୁଖ ଯୁଦ୍ଧ କରୁଥିଲେ, ଗୀଲ କିନ୍ତୁ ପରଦା ଉହାଡ଼ରେ ବ୍ରିଟିଶ ସରକାର ପାଇଁ ଗୋଏନ୍ଦାଗିରି କରୁଥିଲେ । ୧୯୪୧ରୁ ପୂର୍ବ ଏସିଆରେ ପ୍ରବାସୀ ଭାରତୀୟ

ବିପ୍ଳବୀମାନେ ଭାରତର ସ୍ୱାଧୀନତା ପାଇଁ ଉଦ୍ୟମ ଆରମ୍ଭ କରିବା ପରେ ସେମାନଙ୍କର ରାଜନୀତିକ କାର୍ଯ୍ୟକଳାପ ଓ ଜାପାନ ସରକାର ସହ ସେମାନଙ୍କର ସମ୍ବନ୍ଧ ସମ୍ପର୍କରେ ଗୋଇନ୍ଦା ରିପୋର୍ଟ ନେବା ପାଇଁ ଗୀଲ୍‌ଙ୍କୁ ଥାଇଲ୍ୟାଣ୍ଡରେ ନିଯୁକ୍ତି ଦିଆଯାଇଥିଲା । ତାଙ୍କର ପରିବାରର ଅଧିକାଂଶ ବହୁପୁରୁଷ ଧରି ବ୍ରିଟିଶ୍ ଶାସକମାନଙ୍କ ବିଶ୍ୱସ୍ତ ସୈନିକ ଭାବେ କାର୍ଯ୍ୟ କରି ଆସିଥିଲେ । ସେ ଯେତେବେଳେ ସିଙ୍ଗାପୁର ଠାରେ ଜାପାନ ହାତରେ ବନ୍ଦୀ ହେଲେ, ଜାପାନୀ ସୈନ୍ୟଙ୍କ ନିର୍ଯ୍ୟାତନାରୁ ରକ୍ଷା ପାଇବା ପାଇଁ ଆଇ.ଏନ୍.ଏ.ରେ ଯୋଗ ଦେବା ଛଡ଼ା ତାଙ୍କର ଅନ୍ୟ ଉପାୟ ନଥିଲା । ତଥାପି ଆଇ.ଏନ୍.ଏ. ପ୍ରତି ଆନୁଗତ୍ୟ ପ୍ରକାଶ କରିବା ପାଇଁ ଶପଥ ନେବାବେଳେ ତାଙ୍କ ଭିତରେ 'ବ୍ରିଟିଶ୍ ଆନୁଗତ୍ୟ' ଏତେ ଶକ୍ତିଶାଳୀ ଥିଲା ଯେ ସେ ତାହାକୁ ପରିବର୍ତ୍ତନ କରିବାକୁ ସହଜରେ ରାଜି ହୋଇନଥିଲେ । ଭାରତୀୟ ସୈନ୍ୟ ବାହିନୀରେ ତାଙ୍କର ପାହ୍ୟା ମୋହନ ସିଂଙ୍କ ଉପରେ ଥିଲା । କିନ୍ତୁ ଆଇ.ଏନ୍.ଏ.ରେ ମୋହନ ସିଂ G.O.C.ହୋଇଯାଇଥିଲେ ମଧ୍ୟ ବୁଦ୍ଧି, ବିଚକ୍ଷଣତା ଓ ପାଠଶାଠରେ ସେ ମୋହନ ସିଂଙ୍କ ଅପେକ୍ଷା ଅଧିକ ଉଚ୍ଚରେ ଥିଲେ ଏବଂ ସେହି କାରଣରୁ ସୈନ୍ୟମାନଙ୍କ ନିକଟରେ ତାଙ୍କର ଅଧିକ ଲୋକପ୍ରିୟତା ଥିଲା । ଆଇ.ଏନ୍.ଏ.ରେ ତାଙ୍କର ପରାମର୍ଶ ନେବା ଉଦ୍ଦେଶ୍ୟରେ ମୋହନ ସିଂ ତାଙ୍କର ପାହ୍ୟାକୁ ବଢ଼ାଇ ଦେଇ କଲୋନେଲ୍ କରି ଦେଇଥିଲେ । ସେହି ସୁଯୋଗରେ ଗୀଲ୍ ମୋହନ ସିଂଙ୍କୁ ଜାପାନ ସରକାର ବିରୋଧରେ ମତେଇବା ସଙ୍ଗେ ସଙ୍ଗେ ସାଧାରଣ ସୈନ୍ୟମାନଙ୍କ ଭିତରେ ମଧ୍ୟ ବହୁ ବିଭ୍ରାନ୍ତ ସୃଷ୍ଟି କରୁଥିଲେ । ଏହା ଫଳରେ ଜାପାନ ସରକାରଙ୍କ ସମସ୍ତ କାର୍ଯ୍ୟ କଳାପକୁ ମୋହନ ସିଂ ସର୍ବଦା ସନ୍ଦେହ କରିବାକୁ ଆରମ୍ଭ କଲେ । ଜାପାନ ସରକାରଠାରୁ ଆଇ.ଏନ୍.ଏ. ପାଇଁ ଅଧିକରୁ ଅଧିକ ସୁବିଧା ସୁଯୋଗ ପାଇବାର ଦାବୀ ସେ ବଢ଼ାଇବାକୁ ଲାଗିଲେ ଯାହାକି ଜାପାନ ପୂରଣ କରିବା ସମ୍ଭବ ନ ଥିଲା । ବସ୍ତୁତଃ ଭାରତୀୟମାନଙ୍କ ଦ୍ୱାରା ଭାରତର ସ୍ୱାଧୀନତା ହାସଲ କରିବା ଉଦ୍ଦେଶ୍ୟରେ ହିଁ ଜାପାନ ସରକାର ଆଇ.ଏନ୍.ଏ. ଗଢ଼ିବାକୁ ସାହାଯ୍ୟ କରି ଆସିଥିଲା । ''ସେତିକି ଯଥେଷ୍ଟ ନୁହେଁ'' ଏବଂ ଭାରତର ସ୍ୱାଧୀନତାରେ ଜାପାନ କୌଣସି ହସ୍ତକ୍ଷେପ କରିବ ନାହିଁ ବୋଲି ଜାପାନ ସରକାର ଏକ ଆନୁଷ୍ଠାନିକ ଘୋଷଣାନାମା ପ୍ରକାଶ କରିବାକୁ ମୋହନ ସିଂ ଦାବୀ କଲେ । ନାନା ଯୁକ୍ତିଯୁକ୍ତ କାରଣରୁ ଜାପାନ ସରକାର ସଙ୍ଗେ ସଙ୍ଗେ ତାହା କରିବା ସମ୍ଭବ ନ ଥିଲା । କାରଣ ଭାରତ ସୀମାନ୍ତରେ ପ୍ରକୃତ ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହେବାର ସମୟ ଡେରିଥିଲା ଏବଂ ଯୁଦ୍ଧର ଗତି ମଧ୍ୟ ଅନିଶ୍ଚିତତା ଭିତରେ ରହିଥିଲା । ଆଇ.ଏନ୍.ଏ.ର ଯୁଦ୍ଧ କରିବାର ଯୋଗ୍ୟତା ଓ ସାମର୍ଥ୍ୟ ଉପରେ ଜାପାନର ପୂର୍ଣ୍ଣ ବିଶ୍ୱାସ ବା ଭରସା ପ୍ରତିଷ୍ଠିତ ହୋଇ ନଥିଲା । ଜାପାନର ସାମରିକ କର୍ତ୍ତୃପକ୍ଷ ଏହା ମଧ୍ୟ ଜାଣିଥିଲେ ଯେ ଆଇ.ଏନ୍.ଏ.ର କେତେକ ବରିଷ୍ଠ ଅଫିସରଙ୍କର ପରିବର୍ତ୍ତିତ ଆନୁଗତ୍ୟ ବିଶ୍ୱାସ ଯୋଗ୍ୟ ନଥିଲା । ଅର୍ଥାତ୍ ସେମାନଙ୍କର ବ୍ରିଟିଶ୍ ଆନୁଗତ୍ୟ ମଧ୍ୟ ବେଶ୍ ଦୃଢ଼ମୂଳ ହୋଇ ଯାଇଥିଲା ।

ସାହନୱାଜଙ୍କ ଭଳି ବରିଷ୍ଠ ସାମରିକ ଅଫିସରମାନେ ମଧ୍ୟ ସେମାନଙ୍କର ବ୍ରିଟିଶ୍ ଆନୁଗତ୍ୟ ତ୍ୟାଗକରି ଆଇ.ଏନ୍.ଏ. ଆନୁଗତ୍ୟ ଗ୍ରହଣ କରିବାକୁ ପ୍ରଥମ ଅବସ୍ଥାରେ କିଭଳି ଅନିଚ୍ଛୁକ ଥିଲେ, ତାହା ଜାପାନ ସରକାର ପାଖରେ ଅଜ୍ଞାତ ନଥିଲା । ଅବଶ୍ୟ ଶେଷସୁଦ୍ଧା ସେ ବ୍ରିଟିଶ୍ ଆନୁଗତ୍ୟକୁ ଇତିହାସର ଅଳିଆଗଦାକୁ ନିକ୍ଷେପ କରି ମାତୃଭୂମି ପ୍ରତି ଗଭୀର ଆନୁଗତ୍ୟ ପ୍ରକାଶ କରିବା ସହିତ ସୁଭାଷଙ୍କ ସୈନ୍ୟ ବାହିନୀର ଚିଫ୍ ଆର୍ମି ଷ୍ଟାଫ୍ ଭାବରେ ଉନ୍ନୀତ ହୋଇ ଗଲେ, ତାହା ଭିନ୍ନ କଥା । ତେଣୁ ମୋହନ ସିଂଙ୍କ ନେତୃତ୍ୱରେ ଆଇ.ଏନ୍.ଏ.ଯେ କୌଣସି ଉଲ୍ଲେଖ ଯୋଗ୍ୟ ପ୍ରଗତି କରିପାରିବ ସେଭଳି ପରିଆରା ସେପର୍ଯ୍ୟନ୍ତ ସୃଷ୍ଟି କରି ପାରିନଥିଲେ ।

ତା' ସାଙ୍ଗକୁ ଜାପାନର କେତେକ ତଳିଆ ସାମରିକ କର୍ମଚାରୀଙ୍କର ଆଇ.ଏନ୍.ଏ. ପ୍ରତି ତୁଚ୍ଛ ତାଚ୍ଛଲ୍ୟ ବ୍ୟବହାର ଏବଂ ଜାପାନ ସରକାରର କେତେକ କାର୍ଯ୍ୟକଳାପ ମଧ୍ୟ ଆଇ.ଏନ.ଏ. ଓ 'ସ୍ୱାଧୀନତା ସଙ୍ଘ'ରୁ ଗଢ଼ାଯାଇଥିବା 'କାଉନ୍‌ସିଲ'ର କେତେକ ସଭ୍ୟଙ୍କ ପକ୍ଷରେ ଅସହନୀୟ ହୋଇଥିଲା । ଏସବୁ ଅଘଟଣ 'କାଉନସିଲ୍'ର ସଭାପତି ରାସବିହାରୀଙ୍କର ଅଯୋଗ୍ୟତା, ଜାପାନ ସରକାର ପ୍ରତିଥିବା ତାଙ୍କର ତଥାକଥିତ ଦୁର୍ବଳତା ଯୋଗୁଁ ଘଟୁଥିଲା ବୋଲି ମୋହନ ସିଂ ଓ କେତେକ ସନ୍ଦେହମନା 'କାଉନସିଲ'ର ସଭ୍ୟମାନେ ଅନୁଭବ କରିବାରୁ ସଭାପତି ରାସବିହାରୀ ଓ ରାଘବନଙ୍କ ଛାଡ଼ି ଅନ୍ୟ ସମସ୍ତ ସଭ୍ୟ କାଉନସିଲ୍‌ରୁ ଇସ୍ତଫା ପ୍ରଦାନ କରିଦେଲେ । ସେମାନଙ୍କ ମଧ୍ୟରେ ସ୍ୱୟଂ ମୋହନ ସିଂ ମଧ୍ୟ ଅନ୍ତର୍ଭୁକ୍ତ ଥିଲେ । ମୋହନ ସିଂଙ୍କର ଇସ୍ତଫା ଏକ ଗୁରୁତର ସାମ୍ବିଧାନିକ ସଙ୍କଟ ସୃଷ୍ଟି କରିଥିଲା । ସାମରିକ ଦୃଷ୍ଟିରେ ଏହା ଜଣେ ସୈନିକ ପକ୍ଷରେ 'ଶୃଙ୍ଖଳାଭଙ୍ଗ' ଭାବରେ ବିବେଚିତ ହେବା ସ୍ୱାଭାବିକ । କେବଳ କାଉନ୍‌ସିଲ୍‌ରୁ ଇସ୍ତଫା ଦେଇନଥିଲେ, ସେ ଏକ ଅଚିନ୍ତନୀୟ ଓ ବିପଦ୍‌ଜନକ କାଣ୍ଡ ଘଟାଇ ଦେଲେ । ଆଇ.ଏନ୍.ଏ.ର ସୈନ୍ୟମାନଙ୍କ ଉଦ୍ଦେଶ୍ୟରେ ସେନାଧକ୍ଷ କ୍ଷମତା ବଳରେ ଏକ ନିର୍ଦ୍ଦେଶନାମା ଜାରି କରିଦେଲେ ଯେ "ମୋତେ ଯଦି କ୍ୟାପ୍‌ଟେନ୍ ପଦରୁ ହଟାଇ ଦିଆଯାଏ, ତେବେ ତୁମ୍ଭେମାନେ ସଙ୍ଗେ ସଙ୍ଗେ ଆଇ.ଏନ୍.ଏ.ରୁ ମଧ୍ୟ ସଂପର୍କ ତୁଟାଇ ଦେବ, ଯେପରିକି ଆଇ.ଏନ୍.ଏ. ଆପଣା ଛାଏଁ ଭାଙ୍ଗିଯିବ ଏବଂ ତୁମ୍ଭେମାନେ ମୋ' ପ୍ରତି ଆନୁଗତ୍ୟ ପ୍ରକାଶ କରି ଯେଉଁ ଶପଥ ଗ୍ରହଣ କରିଛ ତାହା ମଧ୍ୟ ଶେଷ ହୋଇଯିବ । (In the event of my being separated from you before such an order issued the dissolution of the I.N.A. will take place automatically and immediately. Also at the same time the resignation of all the members of the I.N.A. and their release from all obligation and undertaking to me and the I.N.A. will be taken for granted.) ମୋହନ ସିଂଙ୍କର ଏତାଦୃଶ ଆଚରଣ କେବଳ ସ୍ୱେଚ୍ଛାଚାରିତା ନଥିଲା । ବ୍ରିଟିଶ୍ ଶାସନକୁ ସୁହାଇଲା ଭଳି

ଏକ ଉତ୍କଟ ଦେଶଦ୍ରୋହୀ କାର୍ଯ୍ୟ ଥିଲା । କାରଣ ସେ ଜାଣିଥିଲେ ଯେ ଆଇ.ଏନ୍.ଏ ଏକ ସମ୍ପୂର୍ଣ୍ଣ ସ୍ୱାଧୀନ ସଙ୍ଗଠନ ନୁହେଁ । ତାହା 'ଭାରତୀୟ ସ୍ୱାଧୀନତା ସଙ୍ଘ' ନାମଧେୟ ଏକ ରାଜନୈତିକ ସଙ୍ଗଠନ ଦ୍ୱାରା ଗଠିତ ହୋଇଥିଲା ଏବଂ ତାହା ଆଇ.ଏନ୍.ଏ.ର ସର୍ବୋଚ୍ଚ କର୍ତ୍ତୃପକ୍ଷ ଥିଲା । ସଙ୍ଘକୁ ପରିଚାଳନା କରୁଥିଲା । ତାହାଦ୍ୱାରା ମନୋନୀତ ''କାଉନ୍‌ସିଲ୍ ଅଫ୍ ଆକ୍ସନ୍' ଆଇ.ଏନ୍.ଏ. ଭାଙ୍ଗିବା ଗଢ଼ିବା ଏକମାତ୍ର କାଉନସିଲ୍ ବା ସଙ୍ଘର ଅଧିକାର ଭୁକ୍ତ । ମୋହନ ସିଂ କ୍ୟାପ୍‌ଟେନ୍ ପଦରୁ ଇସ୍ତଫା ଦେଇ ପାରିଥାନ୍ତେ, କିନ୍ତୁ ଆଇ.ଏନ୍.ଏ.କୁ ଭାଙ୍ଗି ଦେବାର ଅଧିକାର ନଥିଲା ।

ସେହି ସଙ୍କଟର ସମାଧାନ ପାଇଁ ରାସବିହାରୀ ତଥା ସଙ୍ଘ ଓ ଜାପାନ ସରକାର ଭିତରେ ଯୋଗସୂତ୍ର ବା liason କାର୍ଯ୍ୟ କରୁଥିବା ମେଜର ଇକୁଦ୍ୱାରା ମୋହନ ସିଂକୁ ଡକାଇ ବୁଝାଇବାକୁ ଚେଷ୍ଟା କଲେ । ଆଇ.ଏନ୍.ଏ. ସମ୍ପର୍କରେ ଜାପାନ ସରକାରଙ୍କର ପ୍ରକୃତ ମନୋଭାବ ସମ୍ପର୍କରେ ତାଙ୍କର ବିକୃତ ଧାରଣାକୁ ବଦଳାଇବାକୁ ଉଦ୍ୟମ କଲେ । ରାସବିହାରୀ ତାଙ୍କୁ ଏହା ମଧ୍ୟ କହିଦେଲେ ଯେ ଅନତି ବିଳମ୍ବରେ ସୁଭାଷ ଚନ୍ଦ୍ର ବୋଷ ପୂର୍ବ ଏସିଆରେ ପହଞ୍ଚି ଆଇ.ଏନ୍.ଏ. ଓ ସଙ୍ଘର ଦାୟିତ୍ୱ ଗ୍ରହଣ କରିବା ପର୍ଯ୍ୟନ୍ତ ସେ ମାରାତ୍ମକ ପଦକ୍ଷେପ ନେବାରୁ ବିରତ ରହନ୍ତୁ । କିନ୍ତୁ ମୋହନ ସିଂଙ୍କ ମନ ଏତେ ବିକ୍ଷୁବ୍ଧ ହୋଇ ଯାଇଥିଲା ଯେ ସେ ତାଙ୍କର ଅପରିଣାମ ଦର୍ଶୀ ଅବସ୍ଥାନକୁ ବଦଳାଇବାକୁ ସମର୍ଥ ହୋଇପାରିଲେ ନାହିଁ । ଅନନ୍ୟୋପାୟ ହୋଇ କାଉନ୍‌ସିଲ୍ ସଭାପତି ଭାବରେ ରାସବିହାରୀ କ୍ୟାପ୍‌ଟେନ୍ ମୋହନ ସିଂକୁ ଆଇ.ଏନ୍.ଏ.ର ସର୍ବୋଚ୍ଚ ସେନାପତି ପଦରୁ ବହିଷ୍କୃତ କଲେ ଏବଂ ବହିଷ୍କାର ପରେ ମୋହନ ସିଂଙ୍କୁ ତାଙ୍କର ପଦମର୍ଯ୍ୟାଦା ଦୃଷ୍ଟିରୁ ସାମରିକ ଅଫିସରମାନଙ୍କ ପାଇଁ ଉଦ୍ଦିଷ୍ଟ ପେନ୍‌ସନ୍ ଓ ଅନ୍ୟାନ୍ୟ ସୁବିଧା ସୁଯୋଗ ଦେବେ ବୋଲି ପ୍ରତିଶ୍ରୁତି ଦେଲେ । ମୋହନ ସିଂଙ୍କର ବହିଷ୍କାର ସମ୍ପର୍କରେ ଇତିହାସ ପୁସ୍ତକ ମାନଙ୍କରେ ଉଲ୍ଲେଖ ରହିଅଛି ଯେ "Mohan singh was declared guilty of insubordination of attempting to treat I.N.A. as his privat Army independent of Independence Movement and will fully and maliciously spreading discontent and dissatisfaction among the I.N.A. (oc-corr-p- 138) ଅର୍ଥାତ୍ କର୍ତ୍ତୃପକ୍ଷଙ୍କୁ ଅବଜ୍ଞା ଆଇ.ଏନ୍.ଏ.ର 'ସ୍ୱାଧୀନତା ଆନ୍ଦୋଳନ'ରୁ ପୃଥକ ଏକ ପ୍ରାଇଭେଟ୍ ସୈନ୍ୟବାହିନୀ କରିବାକୁ ଉଦ୍ୟମ ଏବଂ ଜାଣିଶୁଣି ଆଇ.ଏନ୍.ଏ. ଭିତରେ ଅସନ୍ତୋଷ ଓ ଘୃଣା ସୃଷ୍ଟି କରିବା ଅଭିଯୋଗ ମୋହନ ସିଂଙ୍କ ବିରୁଦ୍ଧରେ କରାଯାଇଥିଲା ଓ ବହିଷ୍କାର୍ର ଆଦେଶରେ ଉପରୋକ୍ତ ଅଭିଯୋଗ ଗୁଡ଼ିକ ଉଲ୍ଲେଖ କରାଯାଇଥିଲା ।

ମୋହନ ସିଂଙ୍କ ବହିଷ୍କାରରେ ସ୍ୱାଭାବିକ ପରିଣତି ଘଟି ଚାଲିଲା । ଏହା ପୂର୍ବରୁ ନିରଞ୍ଜନ ଗୀଲଙ୍କର ଗୋଏନ୍ଦାଗିରି ଧରାପଡ଼ି ତାଙ୍କୁ ଜାପାନ୍ ସରକାର ଗିରଫ କରି ସାରିଥିଲେ ।

ତାହା ପରେ ପାଳି ପଡ଼ିଲା ମୋହନ ସିଂଙ୍କର । ସେ ମଧ୍ୟ ଜାପାନ ସରକାରର 'ଶତ୍ରୁପକ୍ଷ' ବିବେଚିତ ହେଲେ । ସେ ଗିରଫ ହେଲେ । ପୂର୍ବରୁ 'କାଉନ୍‌ସିଲ'ର ଅଧିକାଂଶ ସଭ୍ୟ ଇସ୍ତଫା ଦେଇ ସାରିଥିଲେ । ତେଣୁ 'ଆଇ.ଏନ୍.ଏ.ର ସୈନ୍ୟମାନେ ବହୁ ସଂଖ୍ୟାରେ ଆଇ.ଏନ୍.ଏ.କୁ ପରିତ୍ୟାଗ କଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଅଫିସର ପୁନର୍ବାର ଯୁଦ୍ଧବନ୍ଦୀ (Pow) ହେବାକୁ ଇଚ୍ଛା ପ୍ରକାଶ କଲେ ଏବଂ କେତେକ ହୋଇଗଲେ ପଳାତକ ଓ ସହସ୍ରାଧିକ ପୁନର୍ବାର ବନ୍ଦୀ ଜୀବନ ଯାପନ କଲେ । ତଥାପି ପଚାଶ ହଜାରରୁ ଆଠ ହଜାର ଆଇ.ଏନ୍.ଏ. ଛାଡ଼ିଲେ ନାହିଁ ।

ସାରା ଜୀବନ ପ୍ରତିକୂଳ ପରିସ୍ଥିତି ଭିତରେ ଭାରତର ସ୍ୱାଧୀନତା ପାଇଁ ଲଢ଼ି ଆସିଥିବା ରାସବିହାରୀ କିନ୍ତୁ ଲଗାମ ଛାଡ଼ିଲେନାହିଁ । ଛାଡ଼ି ଚାଲି ଯାଇଥିବା ଆଇ.ଏନ୍.ଏ. ଅଫିସରମାନଙ୍କୁ ବୁଝାଇ ସୁଝାଇ, ସାଧାରଣ ସୈନିକମାନଙ୍କ ଉଦ୍ଦେଶ୍ୟରେ ବାରମ୍ବାର ବେତାର ଭାଷଣ ଦେଇ ସେ ଦୁଇ ମାସ ଭିତରେ ପୁନର୍ବାର ଛିଡ଼ା କରିଦେଲେ ଏକ ଦୁର୍ଦ୍ଧର୍ଷ ମୁକ୍ତି ବାହିନୀ । କାହାରି କାହାରି ପୂର୍ବ ପାହ୍ୟା ବଜାୟ ରହିଲା, କେହି ବା ପଦୋନ୍ନତି ପାଇଲେ । ଆଇ.ଏନ୍.ଏ. ମୁଖ୍ୟ ଦାୟିତ୍ୱରେ ରହିଲେ ଲେଫ୍‌ଟନାଣ୍ଟ କଲୋନେଲ ଜେ.କେ. ଭୋଁସ୍‌ଲେ । ତାଙ୍କୁ ମିଲିଟାରୀ ବ୍ୟୁରୋର ଡାଇରେକ୍ଟର ବୋଲି କୁହାଗଲା । ସେହି ପଦବୀ ସୃଷ୍ଟି କରି ସେ ସମସ୍ତଙ୍କୁ ଜଣାଇଦେବାକୁ ଚାହୁଁଥିଲେ ଯେ ଆଇ.ଏନ୍.ଏ. 'ସ୍ୱାଧୀନତା ସଙ୍ଘ' ଅଧୀନରେ ପରିଚାଳିତ । ସାହାନଓ୍ୱାଜ ଖାଁ ହେଲେ ସର୍ବୋଚ୍ଚ ସେନାପତି (Chief of Staff) ତାଙ୍କର ପୂର୍ବ ବିବୃତି ସମ୍ପୂର୍ଣ୍ଣ ବଦଳି ଯାଇଥିଲା । ମେଜର ପ୍ରେମ କୁମାର ସାହଗଲ ମିଲିଟାରୀ ସେକ୍ରେଟାରୀ, ଲେଫ୍‌ଟନାଣ୍ଟ କଲୋନେଲ ଯୁଦ୍ଧ ପରିଚାଳକ ମେଜର ହବିବୁର ରହମାନ ଟ୍ରେନିଂ ସ୍କୁଲର କମାଣ୍ଡାଣ୍ଟ ଅଫିସର ଭାବରେ ନିଯୁକ୍ତ ହେଲେ । ଲେଫ୍‌ଟନାଣ୍ଟ କଲୋନେଲ ଡକ୍ଟର ଏ.ସି. ଚାଟାର୍ଜି ବ୍ରିଟିଶ୍ ସୈନ୍ୟ ବାହିନୀରେ ସ୍ୱାସ୍ଥ୍ୟ ସେବା ବିଭାଗର ମୁଖ୍ୟ ଭାବରେ କାର୍ଯ୍ୟ କରୁଥିଲେ । ଆଇ.ଏନ୍.ଏରେ ତାଙ୍କୁ ସୈନ୍ୟ ବାହିନୀର ମନୋରଞ୍ଜନ, ସଂସ୍କୃତି ଓ ପ୍ରଚାର ସହ ସ୍ୱାସ୍ଥ୍ୟସେବାର ମୁଖ୍ୟ ଭାବରେ ନିଯୁକ୍ତି ଦିଆଗଲା ।

ପ୍ରଥମ ଆଇ.ଏନ୍.ଏ.ର ଧ୍ୱଂସ ସ୍ତୂପ ମଧ୍ୟରେ ମାତ୍ର ୪ ମାସ ଭିତରେ ରାସବିହାରୀ ଯେପରି ତାହାକୁ ସର୍ବାଙ୍ଗ ସୁନ୍ଦର, ସୁସଙ୍ଗଠିତ ଓ ସୁସଜ୍ଜିତ କରି ପୁନର୍ଗଠିତ କରି ଛିଡ଼ା କରିଦେଲେ । ତାହା ଶତ୍ରୁ ମନୋଭାବାପନ୍ନ ବହୁ ଭାରତୀୟମାନଙ୍କୁ ବିସ୍ମୟାଭୂତ କରି ଦେଇଥିଲା । (It was now that Rash Behari Bose, isolated distrusted, bewildered at the unexpected turn of events, performed his greatest service for the Independence movement.) ଏକଦା ସମସ୍ତଙ୍କ ଦ୍ୱାରା ବର୍ଜିତ, ସନ୍ଦିଗ୍ଧ, ବ୍ୟସ୍ତ ବିବ୍ରତ ଏବଂ ଅପ୍ରତ୍ୟାଶିତ ଘଟଣାବଳୀରେ ଭାରାକ୍ରାନ୍ତ ରାସବିହାରୀ ବୋଷ ଏହିଭଳି ଭାବରେ ସ୍ୱାଧୀନତା ଆନ୍ଦୋଳନ ପାଇଁ ସର୍ବଶ୍ରେଷ୍ଠ

ଅବଦାନ ରଖି ଦେଇ ଯାଇଛନ୍ତି । ତାଙ୍କର ତଥା କଥିତ ପରିଣତ ବୟସ ସତ୍ତ୍ୱେ ସେ ସେହି କଠିନ ଶ୍ରମ ସାପେକ୍ଷ ଅସାଧ ସାଧନ କାର୍ଯ୍ୟ କରିବାରେ ସମସ୍ତ ପ୍ରତି ବନ୍ଧନ ବ୍ୟର୍ଥ କରି ଦେଇଥିଲେ ।

ଆଇ.ଏନ୍.ଏ.ର ପୁନର୍ଗଠନ କାର୍ଯ୍ୟ ଶେଷ କରି ରାସବିହାରୀ ପୂର୍ବ ଏସିଆର ସ୍ୱାଧୀନତା ସଙ୍ଘର ପୁନର୍ଗଠନ କଲେ । ଏଥିରେ ପାଞ୍ଚଗୋଟି ବିଭାଗ ସୃଷ୍ଟି ହେଲା । ଯଥା- ଅର୍ଥ ଓ ସାଧାରଣ ସମସ୍ୟା, ସାମାଜିକ ଓ ସାଂସ୍କୃତିକ ସମସ୍ୟା, ଗୃହ, ପରିବହନ ଓ ସାଧାରଣ ଭଣ୍ଡାର ଏବଂ ଗୋଏନ୍ଦା ବିଭାଗ । ନିଶ୍ଚିତ ମୃତ୍ୟୁ ମୁଖରୁ ରକ୍ଷା ପାଇଥିବା 'ସ୍ୱାଧୀନତା ସଙ୍ଘ'ର ସଭ୍ୟମାନଙ୍କ ଭିତେର ନବ ଜୀବନ ସଞ୍ଚାର କରିବା ଉଦ୍ଦେଶ୍ୟରେ ସିଙ୍ଗାପୁର ଠାରେ ସଙ୍ଘର ଏକ ପୂର୍ଣ୍ଣାଙ୍ଗ ସମ୍ମିଳନୀ ଆହୂତ ହେଲା । କିନ୍ତୁ ଦେଖାଗଲା, ଅତୀତରେ ସନ୍ଦେହ ଓ ଅନିଶ୍ଚୟତାରେ ସଙ୍ଘ ଯେପରି କ୍ଷତ ବିକ୍ଷତ ଓ ମୁମୂର୍ଷ ହୋଇ ଯାଇଥିଲା ସିଙ୍ଗାପୁର ସମ୍ମିଳନୀରେ କାହାରି ଭାଷଣରେ ତାହା ପ୍ରକାଶିତ ହୋଇ ନଥିଲେ ସୁଦ୍ଧା ସାଧାରଣ ସଭ୍ୟମାନଙ୍କ ଭିତରେ ଅତୀତର 'ବ୍ୟାଙ୍କକ୍' ସମ୍ମିଳନୀର 'ଉଚ୍ଛ୍ୱସିତ ଉସାହ ଉଦ୍ଦୀପନା' ବିଶେଷ ପରିଲକ୍ଷିତ ହୋଇ ନଥିଲା । ସେହି ସମ୍ମିଳନୀରେ ସଭାପତିଙ୍କୁ କେତେକ ଜରୁରୀ କ୍ଷମତା ପ୍ରଦାନ କରିବାକୁ ସର୍ବସମ୍ମତ ପ୍ରସ୍ତାବ ଗୃହୀତ ହୋଇଥିଲା ଏବଂ ଅନ୍ୟ ଏକ ପ୍ରସ୍ତାବରେ ଦ୍ୱିଧାହୀନ ଭାଷାରେ କୁହାଯାଇଥିଲା ଯେ ଆଇ.ଏନ୍.ଏ.ର ସୈନ୍ୟ ବା ଅଫିସରମାନେ କୌଣସି ରାଜନୀତିକ କାର୍ଯ୍ୟରେ ଜଡ଼ିତ ହୋଇ ପାରିବେ ନାହିଁ ।

କିନ୍ତୁ ସମ୍ମିଳନୀର ଶେଷଦିନ ଦୁଇଗୋଟି ଘଟଣାରେ ସମ୍ମିଳନୀର ଚେହେରା ସମ୍ପୂର୍ଣ୍ଣ ବଦଳି ଗଲା । ପ୍ରଥମଟି ଥିଲା ଜାପାନ ସରକାରଙ୍କର ଜନୈକ ବରିଷ୍ଠ ଅଫିସରଙ୍କ ସମ୍ମିଳନୀରେ ଯୋଗଦାନ । କର୍ଣ୍ଣେଲ ୟାମାମୋଟୋବିକ୍ ସେ ଅଳ୍ପଦିନ ପୂର୍ବରୁ ଜର୍ମାନୀର ବର୍ଲିନରେ ଜାପାନର ପ୍ରତିନିଧି ଥିଲେ ଏବଂ ସେହି ସୂତ୍ରରେ ସୁଭାଷ ବୋଷଙ୍କ ସହ ତାଙ୍କର ଘନିଷ୍ଠ ବନ୍ଧୁତା ସୃଷ୍ଟି ହୋଇଥିଲା । ୟାମାମୋଟୋ ଜାପାନ ଯୋଗସୂତ୍ର ଅଫିସର ଇୱାକୁରାଙ୍କ ସ୍ଥଳାଭିଷିକ୍ତ ହେଲେ । ସେହି ନୂତନ ନିଯୁକ୍ତିରୁ ଭାରତର ସ୍ୱାଧୀନତା ସଂଗ୍ରାମକୁ ଜାପାନ ସରକାର ଅଧିକ ଗୁରୁତ୍ୱ ଦେଉଥିବା ସୂଚନା ମିଳୁଥିବାରୁ ଭାରତୀୟମାନଙ୍କ ଭିତରେ ଉସାହ ସୃଷ୍ଟି ହେଲା । କୁହୁକ ଦେଖାଉଥିବା ଯାଦୁକର ଯେମିତି ଭାନୁମତୀ ପେଡ଼ିରୁ ନୂଆ ନୂଆ ମ୍ୟାଜିକ୍ ଦେଖାଇ ଦେଖଣାହାରୀଙ୍କୁ ଚମକାଇ ଦିଏ, ବିପ୍ଳବୀ ରାସବିହାରୀ ସମ୍ମିଳନୀର ଶେଷ ଆଡ଼କୁ ବଜ୍ର ଗମ୍ଭୀର ସ୍ୱରରେ ଘୋଷଣା କଲେ ଯେ "ଆପଣମାନେ ଜାଣିଲେ ଖୁସି ହେବେ ଯେ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କୁ ଜର୍ମାନୀରୁ ଏଠାକୁ ଆଣିବା ପାଇଁ 'ଭାରତ ସ୍ୱାଧୀନତା ସଙ୍ଘ' ଜାପାନ ସରକାରଙ୍କୁ ଯେଉଁ ଅନୁରୋଧ କରିଥିଲା- ତାହା ଜାପାନ ସରକାର ସ୍ୱୀକାର କରିଛନ୍ତି ଏବଂ ତାଙ୍କୁ ଯଥା ଶୀଘ୍ର ପୂର୍ବ ଏସିଆରେ ପହଞ୍ଚାଇବାକୁ ଜୋରସୋର୍ କାମ ଆରମ୍ଭ ହୋଇଛି ।" ତାଙ୍କର ଭାଷଣ ଶେଷ ହେବା ପୂର୍ବରୁ ସମବେତ

ସତ୍ୟ ମାନଙ୍କ ମଧ୍ୟରେ ଆନନ୍ଦ, ଉତ୍ସାହ, ଉଲ୍ଲାସ ଓ ଉନ୍ମାଦନା ଚରମ ସୀମାରେ ପହଞ୍ଚିବା ସଙ୍ଗେ ସଙ୍ଗେ ନେତାଜୀ ସୁଭାଷ ଜିନ୍ଦାବାଦ୍, ଇନ୍‌କିଲାବ୍ ଜିନ୍ଦାବାଦ, ଆଜାଦ୍ ଭାରତ ଜିନ୍ଦାବାଦ ଧ୍ୱନି, କରତାଳି, ହର୍ଷ ଧ୍ୱନିରେ ସିଙ୍ଗାପୁର ଆକାଶ ପ୍ରତିଧ୍ୱନିତ ହେଲା ।

ସମ୍ମିଳନୀ ପରେ ପରେ ରାସବିହାରୀ ଟୋକିଓ ଗଲେ । ସେଠାରେ ନେତାଜୀଙ୍କ ଆଗମନ ଓ ଜାପାନ ସରକାର ସହ ତାଙ୍କର କାର୍ଯ୍ୟକ୍ରମର ପ୍ରସ୍ତୁତି ଆରମ୍ଭ କରିଦେଲେ । ସେ ଯେତେବେଳେ ସିଙ୍ଗପୁର ଫେରିଲେ ତାଙ୍କ ସହ ଥିଲେ ଆଇ.ଏନ୍.ଏ. ସୁପ୍ରିମ୍ କମାଣ୍ଡର ନେତାଜୀ ସୁଭାଷ ଚନ୍ଦ୍ର ବୋଷ ।

-୩-

ପୂର୍ବ ଏସିଆରେ ଗଠିତ ଆଜାଦ୍ ହିନ୍ଦ୍ ବାହିନୀର ନେତୃତ୍ୱ ନେବାପାଇଁ ନେତାଜୀଙ୍କୁ ନିବେଦନ କରାଯାଇଥିଲେ ସୁଦ୍ଧା ଯୁଦ୍ଧର ପ୍ରବଳ ଘନଘଟା ଭିତରେ ଜର୍ମାନୀରୁ ଆଟଲାଣ୍ଟିକ୍ ଓ ପ୍ରଶାନ୍ତ ମହାସାଗରକୁ ଅତିକ୍ରମ କରି ସଙ୍ଗେ ସଙ୍ଗେ ଆସିବା ତାଙ୍କ ପକ୍ଷରେ ସମ୍ଭବ ନଥିଲା । କାରଣ ତାଙ୍କୁ ଜୀବନ୍ତ ବା ମୃତ ଅବସ୍ଥାରେ ଧରିଦେବା ପାଇଁ ବ୍ରିଟିଶ ଶାସକ ମାନେ ଲକ୍ଷ ଲକ୍ଷ ଟଙ୍କାର ପୁରସ୍କାର ଘୋଷଣା କରିଥିଲେ । ଦ୍ୱିତୀୟତଃ ଜର୍ମାନୀରୁ ପୂର୍ବ ଏସିଆ ପର୍ଯ୍ୟନ୍ତ ଜଳପଥ ଓ ଆକାଶ ପଥ ବ୍ରିଟିଶ୍ ଆମେରିକା ସାମରିକ ବାହିନୀ ଦ୍ୱାରା ଏଭଳି ବିପଦ ଶଙ୍କୁଳ ହୋଇଥିଲା ଯେ ତାକୁ ଭେଦ କରି ଆସିବା ସହଜ କଥା ନଥିଲା । ସେଥିରେ ପୁଣି ଜର୍ମାନୀ କର୍ତ୍ତୃପକ୍ଷ ନେତାଜୀଙ୍କ ଜୀବନକୁ ବିପନ୍ନ କରି ପଠାଇବା ପାଇଁ ପ୍ରଥମ ଅବସ୍ଥାରେ ଆଦୌ ରାଜି ହେଉ ନଥିଲେ । କିନ୍ତୁ ନେତାଜୀଙ୍କ ଦ୍ୱାରା ଚିଠା କରାଯାଇଥିବା 'ଭାରତର ସ୍ୱାଧୀନତା ଘୋଷଣା ପତ୍ର'ରେ ହିଟଲର ସ୍ୱୀକୃତି ଦେବାରେ ଅହେତୁକ ବିଳମ୍ବ କରିବାରୁ ସେ ଘୋର ଅସନ୍ତୋଷ ପ୍ରକାଶ କରିଥିଲେ ।

ଯାହାହେଉ ନବେ ଦିନକାଳ ବିପୁଳ ସାଗର ବକ୍ଷରେ ବୁଡ଼ା ଜାହାଜରେ ଯାତ୍ରା କରି ଓ ୧୯୪୩ ମସିହା ଏପ୍ରିଲ ୨୮ ତାରିଖରେ ନେତାଜୀ ମାଡ଼ାଗାସ୍କାରରେ ପହଞ୍ଚି ମଇ ୧୬ ତାରିଖ ଟୋକିଓରେ ପହଞ୍ଚିଲେ । ସେ ପୂର୍ବ ଏସିଆରେ ପହଞ୍ଚିଥିବା ସମ୍ବାଦ ବିଦ୍ୟୁତ୍ ଗତିରେ ଚାରିଆଡ଼େ ପ୍ରଚାରିତ ହୋଇଗଲା ଏବଂ ତିରିଶ ହଜାର ମୁକ୍ତି ସେନିକଙ୍କ ସମେତ ତିରିଶ ଲକ୍ଷ ପ୍ରବାସୀ ଭାରତୀୟଙ୍କ ମଧ୍ୟରେ ବିପୁଳ ଉତ୍ସାହ ଉନ୍ମାଦନା ସୃଷ୍ଟି ହେଲା ।

ଭାରତର ଜାତୀୟ ଆନ୍ଦୋଳନରେ ନେତାଜୀଙ୍କର ବିଶେଷ ଭୂମିକା ଥିଲା ଏବଂ ସମ୍ଭବତଃ ସେ ସମସ୍ତଙ୍କଠାରୁ ଅଧିକ ଲୋକପ୍ରିୟ ନେତା ଥିଲେ । ଗାନ୍ଧିଜୀଙ୍କର ଅହିଂସା ବା କଂଗ୍ରେସର ଆପୋଷ-ମିଳାମିଶା ନୀତିକୁ ପରିହାର କରି ପ୍ରତ୍ୟକ୍ଷ ସଂଗ୍ରାମ ଅସ୍ତ୍ରରେ ସ୍ୱାଧୀନତା ଅର୍ଜନ କରିବାକୁ ନେତାଜୀଙ୍କ ଆହ୍ୱାନ ଦେଶ ବିଦେଶର ଯୁବପ୍ରାଣରେ ଅପୂର୍ବ ପ୍ରାଣ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ଦ୍ୱିତୀୟତଃ ବହୁ ଭାରତୀୟଙ୍କ ଦୃଢ଼ ଧାରଣା ସୃଷ୍ଟି ହୋଇଥିଲା

ଯେ ୧୯୨୮ ମସିହା କଲିକତା କଂଗ୍ରେସ ଅଧିବେଶନ ସମୟରେ ସେ କଂଗ୍ରେସ ସେବାଦଳକୁ ଏକ ସୁସଙ୍ଗଠିତ ଓ ସୁଶିକ୍ଷିତ ସାମରିକ ବାହିନୀ ଢାଞ୍ଚାରେ ଗଢ଼ିବା ଦିନୁ ସେ ଭବିଷତରେ ଏକ 'ମୁକ୍ତିବାହିନୀ' ଗଢ଼ିବାର ସ୍ୱପ୍ନ ଦେଖିଥିଲେ । ସେଥିପାଇଁ କେତେକ ତାହାକୁ ଭବିଷ୍ୟତର ଆଜାଦ-ହିନ୍ଦ ଫୌଜରେ ''ଡ୍ରେସ ରିହାରସାଲ'' ବୋଲି ମଧ ମନେ କରୁଥିଲେ । ଭାରତରୁ ତାଙ୍କର ରହସ୍ୟ ଜନକ ଅନ୍ତର୍ଦ୍ଧାନ ଏବଂ ଘୋର ପ୍ରତିକୂଳ ପରିସ୍ଥିତିରେ ଜର୍ମାନୀରେ ''ଆଜାଦ-ହିନ୍ଦ ବାହିନୀ'' ଗଠନ ପ୍ରଭୃତି ଘଟଣା ତାଙ୍କ ପ୍ରତି କୋଟି କୋଟି ଭାରତୀୟଙ୍କ ସ୍ନେହ, ଶ୍ରଦ୍ଧା ଓ ସମର୍ଥନ ଅର୍ଜନ କରିବାର କାରଣ ହୋଇଥିଲା । ନେତାଜୀ ମଧ ପ୍ରବାସୀ ଭାରତୀୟମାନଙ୍କର ସେହି ସମର୍ଥନକୁ ପାଥେୟ କରି ଜାପାନରେ ପହଞ୍ଚିବା ସଙ୍ଗେ ସଙ୍ଗେ କାର୍ଯ୍ୟ ଆରମ୍ଭ କରି ଦେଇଥିଲେ ।

ସୁଭାଷ ଠିକ୍ ବୁଝିଥିଲେ ଯେ ଗୋଟିଏ 'ଜାତୀୟ ମୁକ୍ତି ବାହିନୀ' ବା 'ନ୍ୟାସ୍‌ନାଲ ଲିବେରସନ୍ ଆର୍ମି' ପଛରେ ଆବାଳ ବୃଦ୍ଧ ବନିତା ଜନତାର ସକ୍ରିୟ ସମର୍ଥନ ନ ରହିଲେ ''ମୁକ୍ତି ଆନ୍ଦୋଳନ'' କଦାପି ବିଜୟଶ୍ରୀ ମଣ୍ଡିତ ହୋଇପାରିବ ନାହିଁ । ସେଥିପାଇଁ ସେ ''ଆଜାଦ-ହିନ୍ଦ ବାହିନୀ'' କୁ ପୁନର୍ଗଠିତ କରିବା ସଙ୍ଗେ ସଙ୍ଗେ ସମଗ୍ର ପୂର୍ବ ଏସିଆର ବିଭିନ୍ନ ଉପନିବେଶରେ ସ୍ଥାୟୀଭାବେ ବାସ କରୁଥିବା ଭାରତୀୟ ମାନଙ୍କୁ ଧନ, ଜନ ଓ ମନ ବଳ ଦେଇ ସାହାଯ୍ୟ କରିବାକୁ ସଙ୍ଗଠିତ କରିଥିଲେ । ସେହି ଅଭିଯାନକୁ ସେ ''ଟୋଟାଲ ମୋବିଲାଇଜେସନ୍ ଫର୍ ଟୋଟାଲ ଓ୍ୱାର'' ଅର୍ଥାତ ''ସମ୍ପୂର୍ଣ୍ଣ ଯୁଦ୍ଧ ପାଇଁ ସମ୍ପୂର୍ଣ୍ଣ ପ୍ରସ୍ତୁତି'' ବୋଲି କହୁଥିଲେ । ଟୋକିଓ ଠାରେ ଜାପାନ ସରକାର ସହ ଆନୁଷ୍ଠାନିକ ଆଲୋଚନା ଯଥାଶୀଘ୍ର ସମାପ୍ତ କରି ସେ ସିଙ୍ଗାପୁର ପଳାଇ ଆସିଲେ । ସେହିଦିନ ଠାରୁ ତାଙ୍କର ରହସ୍ୟଜନକ ଅନ୍ତର୍ଦ୍ଧାନ ପର୍ଯ୍ୟନ୍ତ ସେ ଆଉ ଗୋଟିଏ ମୁହୂର୍ତ୍ତ ସୁଦ୍ଧା ବିଶ୍ରାମ ନେଇନାହାନ୍ତି । ଟୋକିଓ ରେଡ଼ିଓରେ ତାଙ୍କର ପ୍ରଥମ ଭାଷଣ ବନ୍ଦୀ ଭାରତୀୟ ସୈନ୍ୟ ଏବଂ ପ୍ରବାସୀ ଭାରତୀୟମାନଙ୍କର ମଧ ଅଭୁତ ପୂର୍ବ ଉତ୍ସାହ ଉଦ୍ଦୀପନା ସୃଷ୍ଟି କରିଥିଲା । ଦେଶ ଭିତରେ ରହି ଇଂରେଜ ମାନଙ୍କର ଆଧୁନିକ ଅସ୍ତ୍ର ସହ ଲଢ଼ିବା ସମ୍ଭବ ନୁହେଁ, ସୁତରାଂ ସେ ଦାୟିତ୍ୱ ଆଜି ପଡ଼ିଛି ପ୍ରବାସୀ ଭାରତୀୟମାନଙ୍କ ଉପରେ ।

''ସେ ମାହେନ୍ଦ୍ର କ୍ଷଣ ଆଜି ଉପସ୍ଥିତ । ଦେଶ ପ୍ରେମୀ ପ୍ରତ୍ୟେକ ଭାରତୀୟ ପକ୍ଷରେ ବର୍ତ୍ତମାନ ଯୁଦ୍ଧ କ୍ଷେତ୍ରକୁ ଯିବା ସମୟ । ଯେତେବେଳେ ଲକ୍ଷ ଲକ୍ଷ ଭାରତୀୟଙ୍କ ରକ୍ତ ପ୍ରବାହିତ ହେବ, ସେତେବେଳେ ଯାଇ ମାତୃଭୂମିକୁ ମିଳିବ ସ୍ୱାଧୀନତା'' । ୧୯୪୩ ମସିହା ଜୁଲାଇ ଦୁଇ ତାରିଖରେ ସୁଭାଷ ସିଙ୍ଗାପୁର ଠାରେ ରାସବିହାରୀଙ୍କ ଠାରୁ ଜାତୀୟ ବାହିନୀର ଦାୟିତ୍ୱ ଗ୍ରହଣ କଲେ ଏବଂ ସେହିଠାରେ ସୈନ୍ୟମାନଙ୍କ ପକ୍ଷରୁ ତାଙ୍କୁ ଦିଆଗଲା ସାମରିକ ଅଭିବାଦନ ଗାର୍ଡ ଅଫ୍ ଅନର୍ ।

ସିଙ୍ଗାପୁର ଟାଉନହଲ ସମ୍ମୁଖସ୍ଥ ବିରାଟ ପଡ଼ିଆରେ ଆଜାଦ୍ ହିନ୍ଦ ଫୌଜକୁ ଜନ

ସାଧାରଣଙ୍କ ସହ ସାମିଲ କରିବା ପାଇଁ ପ୍ରଥମ ଗଣ ସମାବେଶ ଅନୁଷ୍ଠିତ ହୋଇଥିଲା । ସୁଭାଷ କହୁଥିଲେ, ''ଆଜାଦ୍ ହିନ୍ଦ୍ ଫୌଜ'' କୁ ଜନମୁକ୍ତି ଆନ୍ଦୋଳନର ''ଛାମୁଆ'' ସଙ୍ଗଠନ କରିବାକୁ ହେଲେ ଏହାର ଉତ୍ତରୋତ୍ତର ବିକାଶର ପ୍ରତ୍ୟେକ ପର୍ଯ୍ୟାୟରେ ଜନସାଧାରଣଙ୍କୁ ସାମିଲ କରିବାକୁ ପଡ଼ିବ । ସେନାବାହିନୀ ହୃଦସ୍ପନ୍ଦନ ଜନଗଣଙ୍କ ହୃଦୟରେ ପ୍ରତିଧ୍ୱନିତ ନହେଲେ ସେମାନେ ଜନମୁକ୍ତି ବିପ୍ଳବରେ କଦାପି କାୟମନୋବାକ୍ୟରେ ସାମିଲ ହୋଇ ପାରିବେ ନାହିଁ ।'' ସେ ଦୃଷ୍ଟିରୁ ସେହି ପ୍ରଥମ ଗଣ ସମାବେଶ ଏକ ବିରାଟ ସାଫଲ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଆଜାଦ୍ ହିନ୍ଦ ଫୌଜର ବୀର ଜବାନମାନଙ୍କ ଠାରୁ ସାଲ୍ୟୁଟ୍ ଗ୍ରହଣ କରି ଯେଉଁ ଆଗ୍ନେୟ ଭାଷଣ ଦେଇଥିଲେ ତାହା ଭାରତର ଅଗଣିତ ମୁକ୍ତି ସେନାନୀଙ୍କ କଣ୍ଠରେ ଦେଇଥିଲା ଏକ ଶାଶ୍ୱତ ସ୍ଲୋଗାନ ।

''ବନ୍ଧୁଗଣ ଏବେ ମୋ'ର ପ୍ରାଣପ୍ରିୟ ମୁକ୍ତିସେନାନୀର କମ୍ରେଡ୍ ଗଣ ! ଆପଣମାନଙ୍କର ଯୁଦ୍ଧ ଡାକରା ହେଉ, ''ଚଲୋ ଦିଲ୍ଲୀ'' । ମୁଁ ଜାଣେନା, ଆମ୍ଭମାନଙ୍କ ଭିତରୁ କିଏ ଏହି ସ୍ୱାଧୀନତା ସଂଗ୍ରାମରେ ଶେଷ ପର୍ଯ୍ୟନ୍ତ ବଞ୍ଚି ରହିବ । କିନ୍ତୁ ମୁଁ ଏହା ଭଲ ରୂପେ ଜାଣେ ଯେ ଆମେ ଶେଷରେ ନିଶ୍ଚୟ ଜିତିବୁ ଏବଂ ବ୍ରିଟିଶ ଶକ୍ତିର ଅନ୍ୟତମ କବରଖାନା ଲାଲକିଲ୍ଲାରେ ଆମର ବିଜୟ ପତାକା ନ ଉଡ଼ିବା ଯାଏ ଆମ କାର୍ଯ୍ୟ ଶେଷ ହେବ ନାହିଁ । ମୁଁ ଆପଣମାନଙ୍କ ନିକଟରେ ପ୍ରତିଜ୍ଞା କରୁଅଛି ଯେ ''ଅନ୍ଧକାର ଓ ଆଲୋକରେ, ଆନନ୍ଦ ଓ ଦୁଃଖରେ ଏବଂ ପରାଜୟ ଓ ବିଜୟ ମଧ୍ୟରେ ମୁଁ ସର୍ବଦା ଆପଣମାନଙ୍କ ସମ୍ମୁଖରେ ରହିବି । ବର୍ତ୍ତମାନ ମୁଁ ଆପଣମାନଙ୍କୁ କ୍ଷୁଧା, ତୃଷା, ଯନ୍ତ୍ରଣା, ବାଧତାମୂଳକ ଯାତ୍ରା ଓ ମୃତ୍ୟୁ ବ୍ୟତୀତ ଅନ୍ୟ କିଛି ଦେଇ ପାରୁନାହିଁ । ଆମ୍ଭ ମାନଙ୍କ ଭିତରୁ କିଏ କିଏ ସ୍ୱାଧୀନ ଭାରତ ଦେଖିବାକୁ ବଞ୍ଚି ରହିବ ସେଥିରେ କିଛି ଯାଏ ଆସେ ନାହିଁ । ଭାରତ ସ୍ୱାଧୀନ ହେବ ଏବଂ ଆମେ ସେଥିପାଇଁ ସର୍ବସ୍ୱ ଦାନ କରିବା ସେତିକି ଆମ ପାଇଁ ଯଥେଷ୍ଟ ।''

''ଆମ୍ଭମାନଙ୍କ ଶେଷ ଯାତ୍ରାରେ ଆମ୍ଭେମାନେ ଚୁମ୍ବନ କରିବା ସେହି ପଥକୁ ଯେଉଁ ପଥ ଆମର ସେନାବାହିନୀକୁ ଦିଲ୍ଲୀରେ ପହଞ୍ଚାଇବ । ଦିଲ୍ଲୀର ପଥ-ସ୍ୱାଧୀନତାର ପଥ- ''ଚଲୋ ଦିଲ୍ଲୀ'' ।

ଜନସାଧାରଣଙ୍କୁ ତାଙ୍କର ଆହ୍ୱାନ ଥିଲା- ''ମୋତେ ରକ୍ତ ଦିଅ, ମୁଁ ତୁମକୁ ସ୍ୱାଧୀନତା ଦେବି । ମୁଝେ ଖୁନ୍ ଦେ, ମୈଁ ତୁଝେ ଆଜାଦ୍ ଦୁଙ୍ଗା ।'' ''କରୋସବ୍ ନିଛାବର, ବନୋ ସବ୍ ଫକୀର'' ଅର୍ଥାତ୍ ଦେଶପାଇଁ ସର୍ବସ୍ୱ ତ୍ୟାଗ କରି ସନ୍ନ୍ୟାସୀ ହୁଅ । ଚରମ ତ୍ୟାଗ ନ କଲେ ଚରମ ବିଜୟ ସମ୍ଭବ ନୁହେଁ । ନିଜକୁ ତିଳ ତିଳ କରି, ଖଣ୍ଡ ଖଣ୍ଡ କରି ସେହି ମହାଯଜ୍ଞରେ ଆହୁତି ନ ଦେଲେ ''ଜନ ମୁକ୍ତି ମହାଯଜ୍ଞର ସାଫଲ୍ୟ ମିଳେନା ।''

ସୈନ୍ୟ ବାହିନୀ ଏବଂ ଜନ ସାଧାରଣଙ୍କୁ ସୁସଙ୍ଗଠିତ କରି ସାରିବା ପରେ ସୁଭାଷ ଆଉ ଏକ ଗୁରୁତ୍ୱ ପୂର୍ଣ୍ଣ କୃତିତ୍ୱ ହାସଲ କଲେ ଯାହା କି ତାଙ୍କୁ ଜଣେ ବିଚକ୍ଷଣ ଓ ଦୂରଦର୍ଶୀ ରାଜନୀତିଜ୍ଞ ଭାବେ ବିଶେଷ ପ୍ରତିଷ୍ଠା ପ୍ରଦାନ କରିଅଛି । ସେ ପୂର୍ବ ଏସିଆର ଏକ ଅସ୍ଥାୟୀ ସ୍ୱାଧୀନ ସରକାର ପ୍ରତିଷ୍ଠା କଲେ ଯାହାକି ଇତିହାସରେ ''ଆଜାଦ୍ ହିନ୍ଦ୍ ସରକାର'' ନାମରେ ପରିଚିତ । ୧୯୪୩ ମସିହା ଅକ୍ଟୋବର ୨୩ ତାରିଖରେ ଶପଥ ଗ୍ରହଣ କରିଥିଲା । ସେହି ସରକାରରେ ନେତାଜୀ ସୁଭାଷ ଚନ୍ଦ୍ର ରାଷ୍ଟ୍ରପତି ଓ ଅନ୍ୟ ସାତ ଜଣ ମନ୍ତ୍ରୀ ରହିଲେ ।

ସିଙ୍ଗାପୁରର କାଥେ ସିନେମା ହଲ୍‌ରେ ଶପଥ ଗ୍ରହଣ ଉତ୍ସବ ଏକ ଯୁଗାନ୍ତକାରୀ ଘଟଣା ଥିଲା । ଆଜାଦ୍ ହିନ୍ଦ ବାହିନୀକୁ ଆଜାଦ୍ ହିନ୍ଦ ସରକାର ଅଧୀନସ୍ଥ ଏକ ନିୟମିତ ସୈନ୍ୟବାହିନୀ ସ୍ୱୀକୃତି ଦେବା ଫଳରେ ଭାରତର ସ୍ୱାଧୀନତା ସଂଗ୍ରାମରେ ଏହା ସୁଦୂର ପ୍ରସାରୀ ପ୍ରଭାବ ପକାଇଥିଲା ।

କୋଡ଼ିଏ ହଜାର ବନ୍ଦୀ ଭାରତୀୟ ସୈନ୍ୟଙ୍କୁ ନେଇ ଗଠିତ 'ଆଜାଦ୍ ହିନ୍ଦ ଫୌଜ' ର ସୁଭାଷ ଏକ ସହାୟିକା ନାରୀ ବାହିନୀ ମଧ୍ୟ ଗଠନ କରିଥିଲେ । ପ୍ରବାସୀ ଭାରତୀୟ ପରିବାରର ତିନିଶହ ତରୁଣୀଙ୍କୁ ନେଇ ସେହି ସୈନ୍ୟବାହିନୀ ଗଠିତ ହୋଇଥିଲା ଏବଂ ପ୍ରଥମ ସ୍ୱାଧୀନତା ଯୁଦ୍ଧର ଅନ୍ୟତମ ମହାନ୍ ନେତ୍ରୀ ଝାନ୍‌ସୀ ରାଣୀ ଲକ୍ଷ୍ମୀବାଈଙ୍କ ନାମାନୁସାରେ ସେହି ନାରୀ ବାହିନୀର ନାମ ଦିଆଯାଇଥିଲା ''ଝାନ୍‌ସୀ ରାଣୀ ରେଜିମେଣ୍ଟ'' । ଐତିହାସିକ ଯୋଗାଯୋଗ ବଶତଃ 'ଲକ୍ଷ୍ମୀ' ନାମ୍ନୀ ଜଣେ ଭାରତୀୟ ଚିକିତ୍ସିକା ଲକ୍ଷ୍ମୀ ସ୍ୱାମୀନାଥନ୍ ସେହି ରେଜିମେଣ୍ଟର ନେତୃତ୍ୱ ନେବାକୁ ମିଳି ଯାଇଥିଲେ । ଲକ୍ଷ୍ମୀଙ୍କର ଆଦି ବାସସ୍ଥାନ ମାଡ୍ରାଜ ସହରରେ ଅବସ୍ଥିତ । ସେ ସିଙ୍ଗାପୁର ଠାରେ ଘରୋଇ ଚିକିତ୍ସା ବ୍ୟବସାୟ କରୁଥିଲେ । ତାଙ୍କର ପିତାମାତା ଓ ଭାଇ ଭଉଣୀ ପ୍ରଭୃତି ସମସ୍ତଙ୍କର ଜାତୀୟ ଆନ୍ଦୋଳନ ପ୍ରତି ବିଶେଷ ଅନୁରାଗ ଥିଲା । ନେତାଜୀଙ୍କ ଆହ୍ୱାନରେ ଶହ ଶହ ତରୁଣୀ ଯେତେବେଳେ ଗୃହକୋଣରୁ ବାହାରି ଆସି ''ସଶସ୍ତ୍ର ମୁକ୍ତି ସଂଗ୍ରାମ'' ଇମ୍ପ ପ୍ରଦାନ କଲେ, ସେତେବେଳେ ଜାପାନୀମାନଙ୍କୁ ସ୍ତମ୍ଭୀତ କରିଦେଇଥିଲା ଏବଂ କେତେକ ଏହାକୁ ଏକ ଅସମ୍ଭବ ବ୍ୟାପାର ବୋଲି ମନେ କରୁଥିଲେ । କିନ୍ତୁ ଅଳ୍ପ କେଇ ମାସ ଭିତରେ ଏହି 'ନାରୀବାହିନୀ' ଯେତେବେଳେ ଯୁଦ୍ଧ କୌଶଳ ଓ ରାଇଫଲ୍ ଚାଳନାରେ ଦକ୍ଷତା ଅର୍ଜନ କରି ପ୍ୟାରେଡ଼ ପ୍ରଦର୍ଶନ କଲେ ତାହ ସମସ୍ତଙ୍କୁ ବିସ୍ମିତ କରିଦେଇ ଥିଲା । ''ଝାନ୍‌ସୀ ରାଣୀ ରେଜିମେଣ୍ଟ'' ଭଳି 'ଆଜାଦ ହିନ୍ଦ୍ ଫୌଜ' ରେ ସୁଭାଷ, ଗାନ୍ଧି, ନେହେରୁ ଓ ଆଜାଦଙ୍କ ନାମାନୁସାରେ ମଧ୍ୟ ବିଭିନ୍ନ ରେଜିମେଣ୍ଟ ଗଠିତ ହୋଇଥିଲା । ଜାପାନ ସରକାରଙ୍କ ଠାରୁ ଅସ୍ତ୍ରଶସ୍ତ୍ର ଆଦି ସମସ୍ତ ସାହାଯ୍ୟ ମିଳିଥିଲେ ସୁଦ୍ଧା ଏହା ଆପାଦ ମସ୍ତକ ଏକ ଭାରତୀୟ ସୈନ୍ୟ ବାହିନୀ ଥିଲା । ତଥାପି ଏକ ସରକାରୀ ସୈନ୍ୟ ବାହିନୀର ରୂପ ଦେବା ପାଇଁ ସୁଭାଷଙ୍କ ନେତୃତ୍ୱରେ ୧୯୪୩ ମସିହା ଅକ୍ଟୋବର ୨୩/୨୪ ତାରିଖ ଅର୍ଦ୍ଧରାତ୍ରୀରେ

ସିଙ୍ଗାପୁରଠାରେ 'ଆଜାଦ୍ ହିନ୍ଦ୍ ସରକାର' ନାମରେ ଏକ ବିପ୍ଳବୀ ଭାରତୀୟ ସରକାର ଗଠିତ ହୋଇଥିଲା । ସୁଭାଷ ଏହି ସରକାରର ରାଷ୍ଟ୍ରପତି ଓ ସୁପ୍ରିମ୍ କମାଣ୍ଡାର ଏବଂ ଆଜାଦ୍ ହିନ୍ଦ୍ ଫୌଜର ପ୍ରାଣ ପ୍ରତିଷ୍ଠାତା ବର୍ଷିୟାନ୍ ବିପ୍ଳବୀ ରାସବିହାରୀ ସୁପ୍ରିମ୍ ଆଡ୍‌ଭାଇଜର ଭାବରେ ନିଯୁକ୍ତ ହୋଇଥିଲେ । ''ଆଜାଦ୍ ହିନ୍ଦ୍ ସରକାର''ର ଶପଥ ଗ୍ରହଣ ଉତ୍ସବ ଏକ ଅତିଶୟ ରୋମାଞ୍ଚକର ପରିସ୍ଥିତି ସୃଷ୍ଟି କରିଥିଲା । ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଏକ ସଶସ୍ତ୍ର ମୁକ୍ତି ବାହିନୀ ଭାରତର ଭୌଗୋଳିକ ସୀମା ବାହାରେ ପ୍ରତିଷ୍ଠିତ ଓ ପରିଚାଳିତ ହେଉଥିବାରୁ ଏହା ଏକ ବିଧି ସମ୍ମତ ସରକାରର ଅଙ୍ଗ ନ ହେଲେ ଆନ୍ତର୍ଜାତିକ କୂଟନୈତିକ କ୍ଷେତ୍ରରେ ଏହା ନାନା ଜଟିଳତା ସୃଷ୍ଟି କରିବାର ଆଶଙ୍କା ଥିଲା ଏବଂ ଭବିଷ୍ୟତରେ ଏହି 'ମୁକ୍ତି ବାହୀନ'କୁ ଏକ ବିଦେଶୀ ଶକ୍ତିର 'ସଖୀ କଣ୍ଢେଇ' ସରକାର ବୋଲି ଅପପ୍ରଚାର କରିବାର ସମ୍ଭାବନା ମଧ୍ୟ ରହିଥିଲା । କିନ୍ତୁ ଆଜାଦ୍ ହିନ୍ଦ ସରକାରକୁ ଜାପାନ, ଜର୍ମାନୀ, ଇଟାଲୀ, କ୍ରୋସିଆ, ଚୀନ, ମାଞ୍ଚୁରିଆ ଓ ଥାଇଲ୍ୟାଣ୍ଡ ପ୍ରଭୃତି ରାଷ୍ଟ୍ର କୂଟନୈତିକ ସ୍ୱୀକୃତି ଦେଇଥିଲା । ସିଙ୍ଗାପୁର ଠାରେ 'ଆଜାଦ୍ ହିନ୍ଦ୍ ରେଡିଓ ଷ୍ଟେସନ୍' ପ୍ରତିଷ୍ଠିତ ହେଇ ବିଭିନ୍ନ ବାର ଗୋଟି ଭାରତୀୟ ଭାଷାରେ ମୁକ୍ତି ସଂଗ୍ରାମ ପାଇଁ ଆହ୍ୱାନ ଦିଆଗଲା । ଯୁଦ୍ଧପାଇଁ ସମସ୍ତ ପ୍ରସ୍ତୁତି ଶେଷ ହେବାପରେ ୧୯୪୪ ମସିହା ଜାନୁୟାରୀ ମାସରେ ସରକାରର ମୁଖ୍ୟ ଦପ୍ତରକୁ ସିଙ୍ଗାପୁର ଠାରୁ ବର୍ମାର ରେଙ୍ଗୁନ ସହରକୁ ସ୍ଥାନାନ୍ତରିତ କରାଗଲା । ତା' ପରେ ଚାଲିଲା ବର୍ମାର ପଶ୍ଚିମ ଓ ଉତ୍ତର ପଶ୍ଚିମ ସୀମାନ୍ତ ଅତିକ୍ରମ କରି ଆସାମ ଭିତରେ ପ୍ରବେଶ କରିବା ପାଇଁ ପ୍ରସ୍ତୁତି ।

ଏହା ସ୍ମରଣ ରଖିବା ପ୍ରୟୋଜନ ଯେ ଏକ ବିଦେଶୀ ରାଷ୍ଟ୍ରର ସାହାଯ୍ୟ ପୁଷ୍ଟ ମୁକ୍ତି ବାହିନୀ ଦ୍ୱାରା ସାମରିକ ଅଭିଯାନ ପରିଚାଳନା ତଥା ମୁକ୍ତାଞ୍ଚଳର ପ୍ରଶାସନ ପରିଚାଳନା ଏକ ସ୍ପର୍ଶକାତର ବିଷୟ ଥିଲା । ଜାପାନ ଭଳି ଏକ ଫାସିଷ୍ଟ ରାଷ୍ଟ୍ରର ବିଜୟ ଅହଙ୍କାର ଓ ଏକ ମୁକ୍ତି ବାହିନୀର ଦେଶପ୍ରାଣତା ଭିତରେ ଭାବଗତ ସଂଘାତର ଯେପରି କୌଣସି ଅବକାଶ ନରହେ ସେଥିପାଇଁ ସୁଭାଷ ସତର୍କ ଦୃଷ୍ଟି ରଖିଥିଲେ । ଆଜାଦ୍ ହିନ୍ଦ୍ ଫୌଜର ବିଭିନ୍ନ ରେଜିମେଣ୍ଟ ଜାପାନୀ ସୈନ୍ୟମାନଙ୍କ ସହ ଏକତ୍ର ଯୁଦ୍ଧ କଲେ ମଧ୍ୟ 'ଫୌଜ' ସର୍ବଦା ଭାରତୀୟ ସୈନ୍ୟମାନଙ୍କ ଦ୍ୱାରା ପରିଚାଳିତ ହେବ । ମୁକ୍ତାଞ୍ଚଳ ସମ୍ପୂର୍ଣ୍ଣ ରୂପେ ମୁକ୍ତି ବାହିନୀର ବେସାମରିକ ପ୍ରଶାସକ ମାନଙ୍କ ଦ୍ୱାରା ଶାସିତ ହେବ । ମୁକ୍ତ ଅଞ୍ଚଳରେ 'ଆଜାଦ୍ ହିନ୍ଦ ବ୍ୟାଙ୍କର ମୁଦ୍ରା ପ୍ରଚଳିତ ହେବ' ପ୍ରଭୃତି ଗୁରୁତ୍ୱ ପୂର୍ଣ୍ଣ ବିଷୟଗୁଡ଼ିକ ନେତାଜୀ ଜାପାନ ସରକାର ସହ ସ୍ଥିର କରି ସାରିଥିଲେ । ସେ ଜାପାନ ସରକାରକୁ ସ୍ପଷ୍ଟ ଭାବରେ କହି ଦେଇ ଥିଲେ ଯେ ''ଭାରତ ମାଟିରେ ଯେଉଁ ପ୍ରଥମ ରକ୍ତବିନ୍ଦୁ ପଡ଼ିବ, ତାହା ହେବ ଆଜାଦ୍ ହିନ୍ଦ୍ ଫୌଜର ରକ୍ତ ।'' (The first drop of blood to be shed on Indian soil should be that of a member of the Indian National Army.)ଜାପାନ ସରକାର ଏହାକୁ ସ୍ୱୀକାର କରିଥିଲେ ।

ଅବଶ୍ୟ ଜାପାନୀ ସେନାପତିମାନଙ୍କର ମନରେ ଥିଲା ଯେ ''ଆଜାଦ୍ ହିନ୍ଦ୍ ଫୌଜ''ର ସମସ୍ତ ସୈନ୍ୟ ଏକଦା ବ୍ରିଟିଶର ବେତନ ଭୋଗି ଅନୁଗତ୍ତ ସେବକ ଥିଲେ । ସେମାନେ ଆଜି ମୁକ୍ତି ବାହିନୀରେ ଯୋଗ ଦେଇଥିଲେ ସୁଦ୍ଧା ବ୍ରିଟିଶ୍ ଗୁପ୍ତଚର ମାନଙ୍କର ପ୍ରଲୋଭନରେ ପଡ଼ି ସେମାନେ ଯେ କୌଣସି ମୁହୂର୍ତ୍ତରେ ପୁଣି ବଦଳି ଯାଇ ପାରନ୍ତି । ଅପର ପକ୍ଷରେ ଜାପାନୀମାନେ ଏକ ସ୍ୱାଧୀନ ଦେଶର ସୈନିକ । ସେମାନଙ୍କର ଦେଶର ଗୌରବ ରକ୍ଷା କରିବାକୁ ସେମାନେ ଯୁଦ୍ଧ କରୁ ଅଛନ୍ତି । ସୁତରାଂ ସେମାନେ ଆଜାଦ୍ ହିନ୍ଦ୍ ଫୌଜଠାରୁ ଉତ୍କୃଷ୍ଟତର ।''

କିନ୍ତୁ ସୁଭାଷ ଜାପାନୀମାନଙ୍କର ଉପରୋକ୍ତ ଅଭିମତକୁ ସମ୍ପୂର୍ଣ୍ଣ ପ୍ରତ୍ୟାଖ୍ୟାନ କରି ଦେଇଥିଲେ । ସେ କହୁଥିଲେ, ''ଏହା କୌଣସି ସାମ୍ରାଜ୍ୟବାଦୀ ଦେଶ ଜୟ ଯୁଦ୍ଧ ନୁହେଁ । ଏହା ଏକ ଜାତୀୟ ମୁକ୍ତି ସଂଗ୍ରାମ । ଭାରତର ମୁକ୍ତି ପାଇଁ ଏହି ସଶସ୍ତ୍ର ଅଭିଯାନ ଅଭିପ୍ରେତ । ସୁତରାଂ ଭାରତୀୟମାନେ ହିଁ ଏହାର ନେତୃତ୍ୱ ନେବେ । ବାହାରର କୌଣସି ଶକ୍ତି ଆମ ପାଇଁ ଯୁଦ୍ଧ କରି ଆମକୁ ସ୍ୱାଧୀନତା ଦେଇ ନପାରେ କିମ୍ବା ଅନ୍ୟ କୌଣସି ଦେଶର କମାଣ୍ଡରଙ୍କ ଅଧୀନରେ ରହି ମୁକ୍ତି ବାହିନୀ ଯୁଦ୍ଧ କରିବେ, ଏହା ମଧ ଚଳିବ ନାହିଁ । ଆମେ ଜାପାନଠାରୁ ବୈଷୟିକ ସାହାଯ୍ୟ ପାଉଥିଲେ ସୁଦ୍ଧା ଆମ ମୁକ୍ତିବାହିନୀର ପ୍ରଧାନ ଯୁଦ୍ଧ ପୁଞ୍ଜି ହେଉଛି ''ଦେଶ ପ୍ରାଣତା'' । ଦେଶାତ୍ମବୋଧର ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇଥିବାରୁ ଆଜାଦ୍ ହିନ୍ଦ୍ ଫୌଜ ଏକ ଦୁର୍ଦ୍ଧର୍ଷ ସୈନ୍ୟବାହିନୀ । ଏହା ଯୁଦ୍ଧ କ୍ଷେତ୍ରରେ କେତେବେଳେ ହୁଏତ ପରାଜିତ ହୋଇପାରେ, କିନ୍ତୁ ଆତ୍ମ ସମର୍ପଣ କରିବ ନାହିଁ । ଏହାହିଁ ଏହାର ଶ୍ରେଷ୍ଠ ଆଦର୍ଶ । 'ଆଜାଦ୍ ହିନ୍ଦ ସରକାର' ଭଳି ୧୯୧୫ ମସିହାରେ କାବୁଲ ଠାରେ ମଧ ପୂର୍ବରୁ ଏକ ବିପ୍ଳବୀ ଭାରତ ସରକାର ଗଠିତ ହୋଇଥିଲା । ତାହାର ପ୍ରଧାନ ଉଦ୍ଦେଶ୍ୟ ଥିଲା- ସେତେବେଳେ ଦେଶ ଭିତରେ ଚାଲିଥିବା 'ସଶସ୍ତ୍ର ବିପ୍ଳବ'କୁ ଏକ ନିଷ୍ପତ୍ତି ମୂଳକ ଭୂମିକାରେ ପହଞ୍ଚାଇବା ପାଇଁ ସାହାଯ୍ୟ କରିବା । ସେ 'ସରକାର'କୁ ମଧ ଜର୍ମାନୀ ପ୍ରଭୃତି ରାଷ୍ଟ୍ର ସ୍ୱୀକୃତି ଦେଇଥିଲେ । କିନ୍ତୁ ତାହାର କୌଣସି ଭୌଗୋଳିକ ସ୍ଥିତି ନଥିଲା । ସେଥିପାଇଁ ପରବର୍ତ୍ତୀ ଯୁଗରେ ଇତିହାସକାର ମାନେ ସେଥିପ୍ରତି ଯଥୋପଯୁକ୍ତ ଗୁରୁତ୍ୱ ଦେଲେ ନାହିଁ । 'ଆଜାଦ୍ ହିନ୍ଦ୍ ସର୍‌କାର'ର ମଧ ସେହି ଭୌଗୋଳିକ ଅବସ୍ଥିତିର ଅଭାବ ରହିଥିଲା । ଅର୍ଥାତ୍ ଇଂରେଜ ଅଧିକୃତ କୌଣସି ଭୌଗୋଳିକ ଅଂଶରେ ତାହାର ଅସ୍ତିତ୍ୱ ନଥିଲା ବା ବିରାଟ ଭାରତ ବର୍ଷର ଭୂଖଣ୍ଡ ମଧରେ ସେହି ସରକାରର ଗୋଟିଏ ବର୍ଗଇଞ୍ଚ ମାଟି ମଧ ଅଧିକାରରେ ନଥିଲା । କାରଣ ସେ ପର୍ଯ୍ୟନ୍ତ ଏକ ବର୍ଗ ଇଞ୍ଚ ସ୍ଥାନର ମଧ ବ୍ରିଟିଶ୍ ଶାସନ ବିତାଡ଼ିତ ହୋଇ ନଥିଲା । ସେହି ଶୂନ୍ୟତାକୁ ପୂରଣ କରିବା ପାଇଁ ବ୍ରିଟିଶ୍ ଶାସନ ମୁକ୍ତ ଆଣ୍ଡାମାନ ନିକୋବର ଦ୍ୱିପପୁଞ୍ଜକୁ ଜାପାନ ସରକାର ''ଆଜାଦ୍ ହିନ୍ଦ୍ ସରକାର'' କୁ ହସ୍ତାନ୍ତରିତ କରିଥିଲେ । ଅବଶ୍ୟ ଭାରତ ମହାସାଗରରେ ଅବସ୍ଥିତ ସେହି ଗୁରୁତ୍ୱପର୍ଣ୍ଣ ସାମରିକ ଘାଟିକୁ ବ୍ରିଟିଶ ଶାସନରୁ ମୁକ୍ତ କରିବା ପାଇଁ ଭାରତୀୟମାନେ କୌଣସି ତ୍ୟାଗ କରିନଥିଲେ । ତାହା

ଥିଲା ସମ୍ପୂର୍ଣ୍ଣ ଭାବେ ଜାପାନୀମାନଙ୍କର କୃତିତ୍ୱ । ଭାରତର ସ୍ୱାଧୀନତା ପାଇଁ ଜାପାନ ସରକାରର ସଦିଚ୍ଛା ଓ ନିସ୍ୱାର୍ଥପରତାର ପ୍ରତୀକ ସ୍ୱରପ ଏହାର ଶାସନ ଭାର "ଅଜାଦ୍ ହିନ୍ଦ୍ ସରକାର"ଙ୍କ ହାତରେ ସମର୍ପଣ କରିବାକୁ ପ୍ରଧାନ ମନ୍ତ୍ରୀ ଟୋଜୋ ଯେଉଁ ପ୍ରସ୍ତାବ ଦେଇଥିଲେ, ସୁଭାଷ ତାହାକୁ ସାଦରେ ଗ୍ରହଣ କରି ନେଇଥିଲେ । କାରଣ ଏକ ଭୌଗୋଳିକ ଭୂଖଣ୍ଡର ଅଧିକାରୀ ହୋଇ ନଥିବାରୁ 'ଆଜାଦ୍ ହିନ୍ଦ ସରକାର'ର ବୈଧତା ଉପରେ ଭବିଷ୍ୟତରେ ପ୍ରଶ୍ନ ଉଠିପାରେ ବୋଲି ଯେଉଁ ପ୍ରଚ୍ଛନ୍ନ ଆଶଙ୍କା ତାଙ୍କ ମନରେ ଉଦୟ ହୋଇଥିଲା, ଏହି ହସ୍ତାନ୍ତର ଫଳରେ ସେହି ଆଶଙ୍କା ଦୂରୀଭୂତ ହୋଇ ଯାଇଥିଲା । ସେହି ହସ୍ତାନ୍ତର ଉତ୍ସବରେ ଉପସ୍ଥିତ ରହିବାକୁ ସ୍ୱୟଂ ସୁଭାଷ ପୋର୍ଟ ବ୍ଲେୟାରଠାରେ ପହଞ୍ଚି ଥିଲେ ୧୯୪୩ ମସିହା ଡିସେମ୍ବର ୩୦ ତାରିଖରେ । ସ୍ୱାଧୀନତା ସଂଗ୍ରାମର ଇତିହାସରେ ଆଣ୍ଡାମାନର ଦ୍ୱୀପପୁଞ୍ଜର ଏକ ସ୍ୱତନ୍ତ୍ର ଗୁରୁତ୍ୱ ରହିଅଛି । କାରଣ ଭାରତର ପ୍ରଥମ ସ୍ୱାଧୀନତା ଯୁଦ୍ଧ ୧୮୫୭ ସମୟରୁ ହଜାର ହଜାର ସଶସ୍ତ୍ର ବିଦ୍ରୋହୀମାନଙ୍କୁ ଏହି ନିର୍ଜନ ଦ୍ୱୀପରେ ନିର୍ବାସନ ଦଣ୍ଡ ଦିଆଯାଉଥିଲା । ପୋର୍ଟ ବ୍ଲେୟାରରେ ନିର୍ମିତ "ସେଲ୍ୟୁଲାର ଜେଲ୍" ରେ ସେମାନଙ୍କ ଉପରେ ହେଉଥିଲା ଅକଥନୀୟ ଅତ୍ୟାଚାର । ଏହିଭଳି ଭାବରେ ଆଣ୍ଡାମାନ ସହ ଜଡ଼ିତ ହୋଇ ରହିଥିଲା ଏକ ରକ୍ତରଞ୍ଜିତ ଇତିହାସ । ସେ ଦୃଷ୍ଟିରୁ ପ୍ରତ୍ୟେକ ସ୍ୱାଧୀନତା ପ୍ରେମୀ ଭାରତୀୟ ପକ୍ଷରେ ଆଣ୍ଡାମାନ ଥିଲା ଏକ ମହାନ ତୀର୍ଥ ସ୍ଥାନ ।

ସୁଭାଷ ଆଣ୍ଡାମାନର ପ୍ରଶାସନକୁ ହାତକୁ ନେବା ଅବସରରେ ସେହି କୁଖ୍ୟାତ ସେଲ୍ୟୁଲାର ଜେଲକୁ ଦେଖି ବାଷ୍ପାକୁଳ କଣ୍ଠରେ କହିଥିଲେ-

"ଏହି ଅଞ୍ଚଳଟି ଲାଭ କରି ଅସ୍ଥାୟୀ ଭାରତ ସରକାରର ଏକ ଜାତୀୟ ସ୍ଥିତି ଉଦ୍‌ଭବ ହୋଇଅଛି । ଆଣ୍ଡାମାନ ମୁକ୍ତିରେ ଏକ ଐତିହାସିକ ତାତ୍ପର୍ଯ୍ୟ ରହିଅଛି । କାରଣ ଏହା ଆଜିଯାଏ ବ୍ରିଟିଶ୍ ଶାସକମାନଙ୍କ ଦ୍ୱାରା ଏକ ରାଜନୈତିକ ବନ୍ଦୀ ଶିବିର ରୂପେ ବ୍ୟବହୃତ ହୋଇ ଆସିଅଛି । ଫରାସୀ ବିପ୍ଲବରେ ସର୍ବ ପ୍ରଥମେ ପ୍ୟାରିସ୍‌ର ବାସ୍ତାଇଲ ଦୁର୍ଗକୁ ଦଖଲ କରାଯାଇ ସେଠାରେ ବନ୍ଦୀ ହୋଇ ରହିଥିବା ରାଜନୈତିକ ବିଦ୍ରୋହୀ ମାନଙ୍କୁ ମୁକ୍ତ କରାଯାଇଥିଲା । ଆମର ସ୍ୱାଧୀନତା ସଂଗ୍ରାମରେ ସର୍ବପ୍ରଥମେ ଆଣ୍ଡାମାନକୁ ମୁକ୍ତ କରାଯାଇଅଛି । କାରଣ ସେଲ୍ୟୁଲାର ଜେଲ ହିଁ ଯଥାର୍ଥରେ ଭାରତର "ବାସ୍ତାଇଲ୍ ଦୁର୍ଗ" । ଅଞ୍ଚଳ ପରେ ଅଞ୍ଚଳ ଦଖଲ କରି ଆମକୁ ସମଗ୍ର ଭାରତକୁ ମୁକ୍ତ କରିବାକୁ ହେବ । କିନ୍ତୁ ଯେଉଁ ଅଞ୍ଚଳଟି ସର୍ବପ୍ରଥମେ ମୁକ୍ତ ହେବ ତାହା ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ।"

ସେନାପତି ଲୋକନାଥନ୍‌ଙ୍କ ଉପରେ ଏହି ମୁକ୍ତ ଭୂଖଣ୍ଡର ପ୍ରଶାସନ ଦାୟିତ୍ୱ ଅର୍ପଣ କରାଯାଇଥିଲା । ଆଣ୍ଡାମାନ୍ ଠାରେ ପ୍ରାଣଦାନ କରିଥିବା ଶହିଦ୍‌ମାନଙ୍କର ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ଆଣ୍ଡାମାନ ଓ ନିକୋବର ଦ୍ୱୀପପୁଞ୍ଜର ନାମ ଦିଆଯାଇଥିଲା ଯଥାକ୍ରମେ ଶହିଦ୍ ଓ ସ୍ୱରାଜ୍ୟ ।

ପୋର୍ଟ ବ୍ଲେୟାରରୁ ଫେରି ଭାରତର ଭୂଖଣ୍ଡରେ ପ୍ରବେଶ କରିବା ପାଇଁ ପୁରାଦମ୍‌ରେ ପ୍ରସ୍ତୁତି ଆରମ୍ଭ କଲେ ସୁପ୍ରିମ୍ କମାଣ୍ଡର ନେତାଜୀ ସୁଭାଷ ।

-୪-

## ଏ ଯୁଦ୍ଧ, ସେ ଯୁଦ୍ଧ ନୁହେଁ

ଏହି ପରିଚ୍ଛେଦଟି ପାଠ କରିବା ବେଳେ ପାଠକମାନଙ୍କୁ ପୂର୍ବବର୍ତ୍ତୀ ପରିଚ୍ଛେଦରେ ଥିବା ମୁଖ୍ୟ ବିଷୟଟି ମନ ଭିତରେ ରଖିବାକୁ ପଡ଼ିବ । ସେହି ମୁଖ୍ୟ ବିଷୟଟି ହେଉଛି ''ଭାରତର ସ୍ୱାଧୀନତା ଯୁଦ୍ଧରେ ସୈନ୍ୟ ବାହିନୀର ଅବଦାନ ।''

ଆଇ. ଏନ୍. ଏ. ବା ଆଜାଦ୍ ହିନ୍ଦ୍ ଫୌଜ ଯେଉଁ ଯୁଦ୍ଧ ପାଇଁ ପ୍ରସ୍ତୁତ ହେଉଥିଲା, ତାହା ଥିଲା ଏକାବେଳକେ ଅଭିନବ ଓ ଅସାଧାରଣ ଏବଂ ବିଶ୍ୱର ଯୁଦ୍ଧ ଇତିହାସରେ ଅଦ୍ୱିତୀୟ । କାରଣ ଏ ଯୁଦ୍ଧ ସ୍ୱାଧୀନ ରାଷ୍ଟ୍ରମାନଙ୍କ ଭିତରେ ହୋଇନଥିଲା । ଏହା ହୋଇଥିଲା ଭାରତକୁ ଶହ ଶହ ବର୍ଷ କାଳ ଶୋଷିତ ଓ ନିର୍ଯ୍ୟାତିତ କରି ରଖିଥିବା ସ୍ୱାଧୀନ ବ୍ରିଟିଶ ସରକାର ବିରୁଦ୍ଧରେ ପରାଧୀନ ଭାରତବାସୀଙ୍କ ଯୁଦ୍ଧ । ଅନ୍ୟ ସାଧାରଣ ଯୁଦ୍ଧରେ ଯୁଦ୍ଧରତ ଦେଶମାନେ ସ୍ୱ ସ୍ୱ ସୈନ୍ୟବାହିନୀକୁ ନେଇ ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥାନ୍ତି । କିନ୍ତୁ ଏ ଯୁଦ୍ଧରେ ଏକ ପକ୍ଷରେ ଲଢୁଥିଲେ ବ୍ରିଟିଶ ସୈନ୍ୟ ଓ ବ୍ରିଟିଶ୍ ଅନୁଗତ ଭାରତୀୟ ସୈନ୍ୟଙ୍କର ମିଳିତ ବାହିନୀ ଓ ଅନ୍ୟ ପକ୍ଷରେ ବ୍ରିଟିଶ ଆନୁଗତ୍ୟକୁ ବିସର୍ଜନ ଦେଇ ଓ ମାତୃଭୂମି ପ୍ରତି ଦୃଢ଼ ଅନୁରକ୍ତି ପାଇଁ ରକ୍ତ ଶପଥ ନେଇ ଲଢୁଥିବା କୋଡ଼ିଏ ହଜାର ପୂର୍ବତନ ବ୍ରିଟିଶ ଭାରତୀୟ ସୈନ୍ୟ ଏବଂ ସେମାନଙ୍କ ସହ ମିଳିତ ହୋଇଥିଲେ ପୂର୍ବ ଏସିଆର ତିରିଶ ଲକ୍ଷ ପ୍ରବାସୀ ଭାରତୀୟଙ୍କ ଭିତରୁ ମନୋନୀତ ସୈନ୍ୟବାହିନୀ । ଗୋଟିଏ ପକ୍ଷରେ ଉଡୁଥିଲା ଶୋଷଣର ପ୍ରତୀକ ବ୍ରିଟିଶ ୟୁନିୟନ୍ ଜ୍ୟାକ ପତାକା ଓ ଅନ୍ୟ ପକ୍ଷରେ ଉଡ୍ଡିୟମାନ ହେଉଥିଲା ମୁକ୍ତି ସଂଗ୍ରାମର ବାର୍ତ୍ତାବହ ଜାତୀୟ ତ୍ରିରଙ୍ଗା ପତାକା । ଗୋଟିଏ ପକ୍ଷର ସେନାପତି ଥିଲା ବ୍ରିଟିଶ ଶାସନର ପ୍ରତିଭୂ ଓ ଭାରତ ବିଭାଜନର ଅସଲ ଖଳନାୟକ କୁଖ୍ୟାତ ମାଉଣ୍ଟବ୍ୟାଟେନ ଓ ତାହା ବିରୁଦ୍ଧରେ ସେନାପତିତ୍ୱ କରୁଥିଲେ ଚାଳିଶ କୋଟି ପରାଧୀନ ଭାରତ ବାସୀଙ୍କ ହୃଦୟ ସମ୍ରାଟ ସାମ୍ରାଜ୍ୟବାଦର ଏକ ନମ୍ବର ଦୁସ୍‌ମନ୍ ନେତାଜୀ ସୁଭାଷ ଚନ୍ଦ୍ର ବୋଷ । ବ୍ରିଟିଶ୍ ପକ୍ଷର ଏକମାତ୍ର ସ୍ଲୋଗାନ୍ ଥିଲା - Long live our king of England (ବ୍ରିଟିଶ୍ ସମ୍ରାଟ ଦୀର୍ଘଜୀବୀ ହୁଅନ୍ତୁ) କିନ୍ତୁ ବିଦ୍ରୋହୀ ଭାରତ ସୈନ୍ୟ ବା ଆଜାଦ୍ ହିନ୍ଦ୍ ଫୌଜର ସ୍ଲୋଗାନ୍ ଥିଲା, ''ବ୍ରିଟିଶ ରାଜ- ମୁର୍ଦ୍ଦାବାଦ, ଆଜାଦ୍ ଭାରତ- ଜିନ୍ଦାବାଦ୍, ଚଲୋ ଦିଲ୍ଲୀ, ଜୟହିନ୍ଦ୍'' ।

ଆଜାଦ୍ ହିନ୍ଦ୍ ସରକାରର ଅନ୍ୟତମ ମନ୍ତ୍ରୀ ଏମ୍: ଏ: ଆୟାରଙ୍କ ଭାଷାରେ-Born

in the storm of world war -II the I.N.A. was a Revolutionary Army, Unique in its way and unlike many other armies engaged in the global war, it was an army organised on foreign soil, hundreds of miles from its mother land dependent on foreign power for planes, tanks, artiallary, rifles ammunition even lorries for the transport of soldiers to the front. It depended upon patriotic fervour of its nationals scattered over East Asia from Burma to Japan for men, money, clothing, food and other civilian supplies. Its greatest asset was the spirit of self sacrifice of the men who enthusiastically volunteered to Lay down their lives with "Chalo Delhi" on their lips." (The Story of The I.N.A., page-57)

ଦ୍ୱିତୀୟ ମହାଯୁଦ୍ଧ ଜନିତ ବାତ୍ୟା ଗଭଜାତ ଏବଂ ମାତୃଭୂମି ଠାରୁ ହଜାର ହଜାର ମାଇଲ ଦୂରରେ ବିଦେଶୀ ମାଟି ଉପରେ ଗଢ଼ା ଯାଇଥିଲା ସେହି ମୁକ୍ତି ବାହିନୀ- ଆଜାଦ୍ ହିନ୍ଦ୍ ଫୌଜ । ବିମାନ ଠାରୁ ଆରମ୍ଭ କରି ଗୁଳିଗୁଳା ଓ ପରିବହନ ଗାଡ଼ି ପାଇଁ ନିର୍ଭର କରିବାକୁ ପଡ଼ିଥିଲା ଯୁଦ୍ଧରତ ଜାପାନ ସରକାର ଉପରେ । ସୈନିକମାନଙ୍କ ପାଇଁ ଆବଶ୍ୟକ ଖାଦ୍ୟ ରସଦ, ପୋଷାକ ପତ୍ର ଓ ଅଧିକ ସୈନ୍ୟ ସଂଗୃହୀତ ହୋଇଥିଲା ବର୍ମାରୁ ବ୍ୟାଙ୍କକ୍ ପର୍ଯ୍ୟନ୍ତ ସର୍ବତ୍ର ପରିବ୍ୟାପ୍ତ ତିରିଶ ଲକ୍ଷ ପ୍ରବାସୀ ଭାରତୀୟଙ୍କ ମଧ୍ୟରୁ । ଯୁଦ୍ଧ ପାଇଁ ଆବଶ୍ୟକ ଶହ ଶହ କୋଟି ଟଙ୍କା ଯୋଗାଇ ଦେଇଥିଲେ ସେହ ପ୍ରବାସୀ ଭାରତୀୟ ଗଣ । ଆଜାଦ୍ ହିନ୍ଦ ସରକାରଙ୍କ ନାମରେ ଜାପାନଠାରୁ ଅବଶିଷ୍ଟ ଟଙ୍କା ଋଣ ଆକାରରେ ଅଣାଯାଇଥିଲା । କିନ୍ତୁ ଏହି ଯୁଦ୍ଧର ମୁଖ୍ୟ ପୁଞ୍ଜି ଥିଲା ମୁକ୍ତିବାହିନୀ ଓ ପ୍ରବାସୀ ଭାରତୀୟଙ୍କ ଅବର୍ଣ୍ଣନୀୟ ଦେଶପ୍ରେମ, ମାତୃଭୂମିକୁ ମୁକ୍ତ କରିବା ପାଇଁ କୃତ ସଂକଳ୍ପ ଆତ୍ମୋତ୍ସର୍ଗର ବଜ୍ର ଶପଥ । ଯେ କୌଣସି ଦେଶର ମୁକ୍ତି ସଂଗ୍ରାମରେ ସେହି ଦେଶପ୍ରେମ ହିଁ ବିବେଚିତ ହୋଇଥାଏ ପ୍ରଧାନ ପୁଞ୍ଜି ଭାବରେ । ମୁହଁରେ 'ଚଲୋ ଦିଲ୍ଲୀ'ର ବଜ୍ର ଆହ୍ୱାନ ଏବଂ ସ୍ୱଦେଶ ପାଇଁ ଆତ୍ମବଳୀ ଦେବାର ଭୀଷ୍ମ ପ୍ରତିଜ୍ଞା ।

କିନ୍ତୁ ତଥାପି ତାହା କିଛି ସହଜ କଥା ନଥିଲା । କାରଣ ଆଜାଦ୍ ହିନ୍ଦ୍ ଫୌଜର ମୁଖ୍ୟ ପିଣ୍ଡ ଥିଲେ ପୂର୍ବତନ ବ୍ରିଟିଶ୍ ଭାରତୀୟ ସୈନ୍ୟବାହିନୀ । ଆଇ. ଏନ୍. ଏ. ଆରମ୍ଭ ହେବା ଦିନୁ ସେମାନଙ୍କୁ ରାଜନୀତିକ ଶିକ୍ଷା ଦିଆଯାଇଥିଲେ ମଧ ତାହାକୁ ଅଧିକ ଶାଣିତ କରିବା ଆବଶ୍ୟକ ଥଲା । କାରଣ ସେମାନେ ଦୀର୍ଘ ଦିନ ଧରି ବ୍ରିଟିଶ୍ ଅଧୀନରେ କାର୍ଯ୍ୟ କରିଥିବାରୁ ସେମାନଙ୍କର ପୁରା 'ବ୍ରେନ୍‌ୱାସ' କରି ଦିଆଯାଇଥିଲା । ଦେଶ ପରାଧୀନ ରହିଥିବାରୁ ଦୁଃଖ, ଦାରିଦ୍ର୍ୟ, ଅଶିକ୍ଷା ଓ ବେକାରୀ ଚରମ ସୀମାରେ ପହଞ୍ଚିଛି ବୋଲି ସେମାନେ ବୁଝି ପାରୁ ନଥିଲେ । ଦେଶରୁ ବିଦେଶୀ ଶାସନର ଅବସାନ ନ ହେଲେ ସେହି ଦୁଃଖ ଦାରିଦ୍ର୍ୟ ବଢ଼ି ବଢ଼ି ଚାଲିବ ବୋଲି ସେମାନେ ବିଶ୍ୱାସ କରୁନଥିଲେ । ଓଲଟା ସେମାନଙ୍କୁ ବୁଝାଇ

ଦିଆଯାଇଥିଲା ଯେ ସ୍ୱାଧୀନତା ଆନ୍ଦୋଳନ ଚଳାଉଥିବା ସଙ୍ଗଠନ ବା ଦଳଗୁଡ଼ିକ ଦେଶର କ୍ଷତି ସାଧନ କରୁଅଛନ୍ତି । ସେମାନେ ତାହା ନ କରି ଯଦି ବ୍ରିଟିଶ ଶାସନକୁ ସମର୍ଥନ ଓ ସାହାଯ୍ୟ କରନ୍ତେ ଦେଶର ପ୍ରକୃତ ଉପକାର ଓ ମଙ୍ଗଳ ସାଧିତ ହୋଇ ପାରନ୍ତା । ଭାରତୀୟ ସୈନ୍ୟମାନଙ୍କ ମଧ୍ୟରେ ସୃଷ୍ଟି ହୋଇଥିବା ସେହି ବିକୃତ ଧାରଣା ଯେପରି ନ ବଦଳେ ସେଥିପାଇଁ ସୈନ୍ୟମାନଙ୍କୁ ରାଜନୈତିକ ସଂକ୍ରମଣରୁ ସମ୍ପୂର୍ଣ୍ଣ ମୁକ୍ତ ରଖିବାକୁ ବ୍ରିଟିଶ୍ ପ୍ରଶାସକମାନେ ଯତ୍‌ପରୋନାସ୍ତି ଉଦ୍ୟମ କରୁଥିଲେ । ଫଳରେ ଭାରତରେ ହେଉଥିବା ରାଜନୀତିକ ଉତ୍‌ଥାନ ପତନର ଉତ୍ତାପ ସେମାନଙ୍କୁ ଆଦୌ ସ୍ପର୍ଶ କରୁନଥିଲା । କ୍ରମେ ସୈନ୍ୟମାନେ ଏକ ସୁବିଧା ବାଦୀ ଶ୍ରେଣୀରେ ପରିଣତ ହୋଇଗଲେ । ସେମାନେ ନିଜକୁ ଅନ୍ୟ ଭାରତୀୟମାନଙ୍କ ଅପେକ୍ଷା ଉଚ୍ଚତର ବୋଲି ଭାବୁଥିଲେ । ନିଶ୍ଚିତ ଖାଦ୍ୟପେୟ, ପୋଷାକ ଓ ବେତନ ପାଇବା ସଙ୍ଗେ ସଙ୍ଗେ ଅବସର ପରେ ମଧ୍ୟ କିଛି କିଛି ସରକାରୀ ସାହାଯ୍ୟ ପାଉଥିଲେ । ତେଣୁ ସେମାନେ ନିଜକୁ ଏକ ସ୍ୱତନ୍ତ୍ର ସମ୍ମାନସ୍ପଦ ଶ୍ରେଣୀର ବୋଲି ଭାବିବା ଅତ୍ୟନ୍ତ ସ୍ୱାଭାବିକ ଥିଲା । ''ସରକାରଙ୍କ ବିଶ୍ୱସ୍ତ'' ବ୍ୟକ୍ତି ଭାବରେ ସେମାନେ ରାଜନୀତିକ ସଚେତନତା ନଥିବା ସମାଜରେ ସମ୍ମାନସ୍ପଦ ବ୍ୟକ୍ତି ଭାବରେ ବିବେଚିତ ହେଉଥିଲେ ।

କିନ୍ତୁ ସେମାନଙ୍କର ମନର ଅନ୍ଧକାର ଆଜାଦ୍ ହିନ୍ଦ୍ ଫୌଜର ସଙ୍ଗଠକ ତଥା ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କର ଧାରାବାହିକ ଶିକ୍ଷା ଦାନ ଫଳରେ ଦୂରୀଭୂତ ହୋଇଗଲା । ବିଶେଷତଃ ନେତାଜୀ ସୁଭାଷଙ୍କର ଯୋଗଦାନ ଫଳରେ ସେମାନଙ୍କ ମନରୁ ସମସ୍ତ ଗ୍ଲାନି କୁସଂସ୍କାର ଲୋପ ପାଇ ସେମାନେ ପାଲଟିଗଲେ ଦେଶ ପାଇଁ ଚରମ ତ୍ୟାଗ ବରଣ କରିବାକୁ ପ୍ରସ୍ତୁତ ଥିବା ଦୁର୍ଦ୍ଧର୍ଷ ଅପରାଜେୟ ମୁକ୍ତି ସେନାନୀ । ୧୮୫୭ର ମହାବିଦ୍ରୋହ ବା ପ୍ରଥମ ସ୍ୱାଧୀନତା ସଂଗ୍ରାମରେ କିପରି ହଜାର ହଜାର ସିପାହୀ ବିଦ୍ରୋହ କରି ଗୋରା ସୈନ୍ୟ ସେନାପତିଙ୍କୁ ନିହତ କରି ଓ ହସି ହସି ବ୍ରିଟିଶ୍ ସୈନ୍ୟ ଗୁଳିରେ ମୃତ୍ୟୁ ବରଣ କରି ଶହିଦ ହୋଇଥିଲେ, ତାହାର ରୋମାଞ୍ଚକର, ବିବରଣୀ ସେମାନଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଥିଲା । ସେହିପରି ୧୯୧୫ର ସାମରିକ ବିଦ୍ରୋହ କିପରି ଲାହୋର, ଆଗ୍ରା ଓ ଲକ୍ଷ୍ନୌ କାଣ୍ଟନମେଣ୍ଟରେ ଗୋରା ପଲଟନମାନଙ୍କୁ ହତ୍ୟା କରି ଫାଶୀ ଖୁଣ୍ଟରେ ପ୍ରାଣଦାନ କରି ଶହିଦ ହୋଇଛନ୍ତ, ସେହି ସିଙ୍ଗାପୁରରେ ମଧ୍ୟ ୧୯୧୫ରେ ଭାରତୀୟ ସୈନ୍ୟମାନେ ବ୍ରିଟିଶ୍ ସୈନ୍ୟ ସେନାପତିଙ୍କୁ ନିହତ କରି ଚାରିଦିନ ପାଇଁ ହେଉ ପଛେ ସିଙ୍ଗାପୁରକୁ ବ୍ରିଟିଶ୍ ଶାସନରୁ ମୁକ୍ତ କରିପାରିଥିଲେ, ତାହା ସେମାନଙ୍କ ମଧ୍ୟରେ ବିପୁଳ ରୋମାଞ୍ଚ ସୃଷ୍ଟି କରିଥିଲା ।

ନେତାଜୀ ସୁଭାଷ ଚନ୍ଦ୍ର ଫୌଜର କେବଳ ସୁପ୍ରିମ୍ କମାଣ୍ଡର ନଥିଲେ; ସେ ଥିଲେ ମୁକ୍ତି ସେନାନୀର (Friend, Philosopher and Guide) ଅନ୍ତରଙ୍ଗ ବନ୍ଧୁ, ବୁଦ୍ଧିଦାତା ଦାର୍ଶନିକ ଓ ଦିଗ ନିର୍ଦ୍ଦେଶକ; କଥାରେ ନୁହେଁ, କାର୍ଯ୍ୟରେ । ଆଜାଦ୍ ହିନ୍ଦ୍ ଫୌଜରେ ଜାତି

ଧର୍ମ ନିର୍ବିଶେଷରେ ସମସ୍ତ ସୈନ୍ୟ ଯେ ଏକତ୍ର ରନ୍ଧନ ଓ ଭୋଜନ କରୁଥିଲେ ସେତିକି ନୁହେଁ, ସ୍ୱୟଂ ସର୍ବୋଚ୍ଚ ସେନାପତି ମଧ୍ୟ ବ୍ରିଟିଶ୍ ଆର୍ମିର ଆଭିଜାତ୍ୟକୁ ଚୁର୍ମାର କରି ବେଳେ ବେଳେ ସାଧାରଣ ସୈନିକମାନଙ୍କ ସାଙ୍ଗରେ ଏକତ୍ର ଭୋଜନ କରନ୍ତି । ବ୍ରିଟିଶ୍ ମିଲିଟାରୀରେ ସେ ଦୃଶ୍ୟ ଅବିକଳ୍ପନୀୟ ଥିଲା । ଏକ ବିପ୍ଳବୀ ମୁକ୍ତି ବାହିନୀରେ ତାହା ହିଁ ଆବଶ୍ୟକ । କାରଣ 'ଏ ଯୁଦ୍ଧ ସେ ଯୁଦ୍ଧ ନୁହେଁ'।

ସୁପ୍ରିମ୍ କମାଣ୍ଡରଙ୍କ ଅଧୀନରେ ରହିଲେ ଚିଫ୍ ଅଫ୍ ଷ୍ଟାଫ୍ ଡେପୁଟି ଓ ଆସିଷ୍ଟାଣ୍ଟ ଚିଫ୍ ଅଫ୍ ଷ୍ଟାଫ୍ । ଆର୍ମି ହେଡ୍ କ୍ୱାର୍ଟର ମଧ୍ୟ ବିଭିନ୍ନ ବିଭାଗରେ ବିଭକ୍ତ କରାଗଲା । ଯଥା:- ଜେନେରାଲ ଡିପାର୍ଟମେଣ୍ଟ, ଆଡ୍‌ଜୁଟାଣ୍ଟ ଓ କ୍ୱାର୍ଟର ମାଷ୍ଟର, ଜୁଡ଼ିସିଆଲ ଓ ଆଡ୍‌ଭୋକେଟ ଜେନେରାଲ, ଡାଇରେକ୍ଟର ଅଫ୍ ମେଡିକାଲ୍ ସର୍ଭିସେସ୍ ଓ ତାଙ୍କ ଅଧୀନରେ ଆସିଷ୍ଟାଣ୍ଟ ଡାଇରେକ୍ଟର, ଆକାଉଣ୍ଟସ୍ ବ୍ରାଞ୍ଚ, ପୋଲିସ୍ ଗୋଏନ୍ଦା (Police Intelligence, Special_service Group) ମନୋରଞ୍ଜନ, ସଂସ୍କୃତି ଓ ପ୍ରଚାର ବିଭାଗ ।

ସୁପ୍ରିମ୍ ହେଡ୍‌କ୍ୱାର୍ଟର ପକ୍ଷରୁ ଯୁଦ୍ଧର ଶୃଙ୍ଖଳିତ ପରିଚାଳନା ପାଇଁ ଯୁଦ୍ଧ କ୍ଷେତ୍ରରେ ଫରୱାର୍ଡ଼ ହେଡ୍‌କ୍ୱାର୍ଟର ଓ ସବା ପଛରେ ରିଅର ହେଡ୍‌କ୍ୱାର୍ଟର ମଧ୍ୟ ଅବସ୍ଥାପିତ ହେଲା । ପ୍ରତି ଡିଭିଜନରେ ମଧ୍ୟ ହେଡ୍ କ୍ୱାର୍ଟର ରହିଲା । ସେହି ହେଡ୍ କ୍ୱାର୍ଟର ମାନଙ୍କ ଅଧୀନରେ ବିଭିନ୍ନ ବିଭାଗ ମଧ୍ୟ ରହିଥିଲା । ସଫଳ ଯୁଦ୍ଧ ଅଭିଯାନ ପାଇଁ ଆବଶ୍ୟକୀୟ ସମସ୍ତ ସାହାଯ୍ୟକାରୀ ବା ସେବା ସଂସ୍ଥାର ଟିକିନିଖି ବ୍ୟବସ୍ଥା କରିବା ଥିଲା ଅପରିହାର୍ଯ୍ୟ । ସେ ସବୁ ବ୍ୟବସ୍ଥାରେ ସାମାନ୍ୟ ତ୍ରୁଟି ନଥିଲା । ଯୋଗାଣ (ଖାଦ୍ୟ, ଅସ୍ତ୍ରଶସ୍ତ୍ର ଓ ଅନ୍ୟାନ୍ୟ), ମୋଟର ପରିବହନ, କାରଖାନା ବା ୱାର୍କସପ୍, ଅସ୍ତ୍ର ଶସ୍ତ୍ର ଭଣ୍ଡାର, ମିଲିଟାରୀ ଇଞ୍ଜିନିୟରିଂ ସେବା, ଫିଲ୍ଡ ପାର୍କ ସର୍ଭିସ୍; ଯୁଦ୍ଧ ଅଭିଯାନ, ପଶ୍ଚାଦ୍ ଦିଗରେ ରାସ୍ତା ଓ ପୋଲ ପ୍ରଭୃତିର ମରାମତ । ଏତଦ୍ ବ୍ୟତୀତ ଗରିଲା ରେଜିମେଣ୍ଟରେ ଟ୍ୟାଙ୍କ, କମାଣ ବାହୀ ଗାଡ଼ି ଇତ୍ୟାଦି ।

ଯୁଦ୍ଧ ପରିଚାଳନା କରୁଥିବା ମଧ୍ୟବର୍ତ୍ତୀକାଳୀନ ଆଜାଦ୍ ହିନ୍ଦ୍ ସରକାର ପକ୍ଷରୁ ଏକ ସଙ୍ଗେ ଆମେରିକା ଓ ଇଂଲାଣ୍ଡ ବିରୁଦ୍ଧରେ ଆନୁଷ୍ଠାନିକ ଯୁଦ୍ଧ ଘୋଷଣା ମଧ୍ୟ କରାଯାଇଥିଲା ଏବଂ ତାହା ଆଜାଦ୍ ହିନ୍ଦ୍ ରେଡିଓରେ ଘୋଷଣା କରାଯାଇଥିଲା । ଆଜାଦ୍ ହିନ୍ଦ୍ ରେଡିଓରୁ ଘୋଷଣା ପରେ ଆମେରିକାର ସାନ୍‌ଫ୍ରାନ୍‌ସିସ୍କୋ ରେଡିଓରୁ ମଧ୍ୟ ତାହା ପ୍ରକାଶ କରାଯାଇଥିଲା ।

ଏସବୁ ସରିବା ପରେ ଯୁଦ୍ଧ ଅଭିଯାନର ଚୂଡ଼ାନ୍ତ ପ୍ରସ୍ତୁତି ମଧ୍ୟ ଶେଷ ହୋଇଥିଲା ।

## ମୁହାଁ ମୁହିଁ ଲଢ଼େଇ:

ପ୍ରକୃତ ଯୁଦ୍ଧ ଆରମ୍ଭ ହେବା ପୂର୍ବରୁ ଆଜାଦ୍ ହିନ୍ଦ୍ ଫୌଜର ବ୍ୟୂହ ରଚନାର ସ୍ଥୂଳ ରୂପରେଖ ନିମ୍ନ ମତେ ହୋଇଥିଲା ।


ସୁପ୍ରିମ୍ କମାଣ୍ଡର ସୁଭାଷ ଚନ୍ଦ୍ର ବୋଷ
ଚିଫ୍ ଅଫ ଆର୍ମି ଷ୍ଟାଫ୍ କଲୋନେଲ ଜେ. କେ. ଭୋନ୍‌ସଲେ
୧ନଂ ଡିଭିଜନ କଲୋନେଲ୍ ଏମ୍. ଜେଡ୍. କିଆନି
୨ନଂ ଡିଭିଜନ ମେଜର ଜେନେରାଲ ସାନୱାଜ ଖାଁନ୍
୩ନଂ ଡିଭିଜନ କଲୋନେଲ୍ ଜି. ଆର. ନାଗର
୧ନଂ ଗରିଲା ରେଜିମେଣ୍ଟ ଲେଫ୍ଟନାଣ୍ଟ କର୍ଣ୍ଣେଲ୍ ଏସ୍. ଏନ୍. ଖାନ୍
୧ମ ଇନ୍‌ଫାଣ୍ଟ୍ରି ରେଜିମେଣ୍ଟ ଲେଫ୍ଟନାଣ୍ଟ କର୍ଣ୍ଣେଲ୍ ଏସ୍. ଏମ୍. ହୁସେନ୍
୬ଷ୍ଠ ଇନ୍‌ଫାଣ୍ଟ୍ରି ରେଜିମେଣ୍ଟ ଲେଫ୍ଟନାଣ୍ଟ କର୍ଣ୍ଣେଲ୍ ଏ. ଆଇ. ଏସ୍. ଦାରା
୨ନଂ ଗରିଲା ରେଜିମେଣ୍ଟ ଲେଫ୍ଟନାଣ୍ଟ କର୍ଣ୍ଣେଲ୍ ଆଇ. ଜେ କିଆଜି
୨ୟ ଇନ୍‌ଫାଣ୍ଟ୍ରି ରେଜିମେଣ୍ଟ ଲେଫ୍ଟନାଣ୍ଟ କର୍ଣ୍ଣେଲ୍ ପି. କେ ସାହଗଲ୍
୭ମ ଇନ୍‌ଫାଣ୍ଟ୍ରି ରେଜିମେଣ୍ଟ ଲେଫ୍ଟନାଣ୍ଟ କର୍ଣ୍ଣେଲ୍ ଗୁରୁମିଟ୍ ସିଂହ
୩ନଂ ଗରିଲା ରେଜିମେଣ୍ଟ ଲେଫ୍ଟନାଣ୍ଟ କର୍ଣ୍ଣେଲ୍ ଗୁଲଜାର ସିଂହ
୪ନଂ ଗରିଲା ରେଜିମେଣ୍ଟ ଲେଫ୍ଟନାଣ୍ଟ କର୍ଣ୍ଣେଲ୍ ମେଜର ଜି. ଏସ୍. ଧୀଲନ୍
୮ମ ଇନ୍‌ଫାଣ୍ଟ୍ରି ରେଜିମେଣ୍ଟ ଲେଫ୍ଟନାଣ୍ଟ କର୍ଣ୍ଣେଲ୍ ବିସନ୍ ସିଂହ

ଏତଦ୍ ବ୍ୟତୀତ ଆର୍ମି ହେଡ୍ କ୍ୱାର୍ଟରର ଥିଲା- (୧) ଜାପାନିଜ୍ ଇମ୍ପେରିଆଲ୍ ଜେନେରାଲ୍ ହେଡ୍‌କ୍ୱାର୍ଟର, (୨) ସଦର୍ଣ୍ଣ ଆର୍ମି ଫିଲ୍ଡ ମାର୍ଶାଲ ଜେନେରାଲ ଟେରାଉଚି, (୩) ବର୍ମା ଏରିଆ ଆର୍ମି ସହ ସିଧା ସମ୍ପର୍କ ରହିଥିଲା ଏବଂ ସୁପ୍ରିମ୍ କମାଣ୍ଡରଙ୍କ ପ୍ରତ୍ୟକ୍ଷ କର୍ତ୍ତୃତ୍ୱରେ (୧) କମାଣ୍ଡ ଗ୍ରୁପ, (୨) ଇଣ୍ଟେଲିଜେନ୍ସ ଗ୍ରୁପ୍ ଓ ଟ୍ରେନିଂ ୟୁନିଟ୍ ମଧ ରହିଲା ।

ଯୁଦ୍ଧ କ୍ଷେତ୍ରକୁ ଯିବା ପୂର୍ବରୁ ନେତାଜୀ ମୁକ୍ତି ବାହିନୀକୁ ଯେଉଁ ଆହ୍ୱାନ ଦେଇଥିଲେ, ପୃଥିବୀ ଇତିହାସରେ ଅନ୍ୟ କୌଣସି ସେନାପତି ସେଭଳି ଅପ୍ରିୟ ସତ୍ୟ ଓ ସ୍ପଷ୍ଟୋକ୍ତି କରିଥିବାର ଉଦାହରଣ ବିରଳ ଅଟେ ।

''ଆଦର୍ଶ ପାଇଁ ଆପଣମାନେ ଆତ୍ମୋତ୍ସର୍ଗ କରିପାରିବେ କି ନା ସେ ବିଷୟରେ ସିଦ୍ଧାନ୍ତ ଗ୍ରହଣ କରିନେବା ପାଇଁ ସମର ପ୍ରାଙ୍ଗଣକୁ ଯିବା ପୂର୍ବରୁ ଏହି ଶେଷ ମୁହୂର୍ତ୍ତରେ ମୁଁ ଆପଣମାନଙ୍କୁ ସମ୍ପୂର୍ଣ୍ଣ ସ୍ୱାଧୀନତା ପ୍ରଦାନ କରୁଅଛି । ଆମର ମହାନ୍ ଆଦର୍ଶର ପବିତ୍ରତା ସମ୍ପର୍କରେ ଆପଣ ମାନଙ୍କ ଭିତରୁ କାହାରି ମନରେ ଯଦି ସାମାନ୍ୟ ସନ୍ଦେହ ଥାଏ, ତେବେ ସେମାନେ ଏହି ମୁହୂର୍ତ୍ତରେ ବାହିନୀରୁ ଓହରି ଯାଇପାରନ୍ତି ବା ପଛକୁ ରହି ଯାଇ ପାରନ୍ତି । ଏହା କରିବାରେ ସେମାନେ ଇତସ୍ତତଃ ହୁଅନ୍ତୁ ନାହିଁ । ମୁଁ ସେମାନଙ୍କୁ ଅନ୍ୟ ଦାୟିତ୍ୱ ଦେବାର ବ୍ୟବସ୍ଥା କରିବି । ସଂଖ୍ୟାକୁ ମୁଁ ଖାତିର କରି ନାହିଁ । ଆଦର୍ଶ ପ୍ରତି ଉଦାସୀନ ଓ ସଂଗ୍ରାମର ଚରମ ଲକ୍ଷ୍ୟ ବିଷୟରେ ସନ୍ଦିହାନ ଥିବା ବିପୁଳ ସଂଖ୍ୟକ ସୈନିକ ଅପେକ୍ଷା ଆଦର୍ଶ ନିଷ୍ଠ ଓ ଆତ୍ମ ନିବେଦିତ ଅଳ୍ପ ସଂଖ୍ୟକ ସୈନିକ ବହୁଗୁଣରେ ଉତ୍କୃଷ୍ଟତର । ମୁଁ ଆପଣମାନଙ୍କୁ କ୍ଷୁଧା, ତୃଷା ଓ ମୃତ୍ୟୁ ବ୍ୟତୀତ ଅନ୍ୟ କିଛି ଦେଇ ପାରିବାର ପ୍ରତିଶ୍ରୁତି ଦେଇ ପାରିବି ନାହିଁ । ଆପଣମାନେ ଆପଣମାନଙ୍କର ରାସ୍ତା ସ୍ଥିର କରିବାକୁ ସମ୍ପୂର୍ଣ୍ଣ ସ୍ୱାଧୀନ ଅଟନ୍ତି । ଏହିଠାରୁ ହିଁ ଅଟକି ଯିବାରେ ଲଜ୍ଜାର କଥା କିଛି ନାହିଁ । ସେଥିପାଇଁ ମୁଁ ଆପଣମାନଙ୍କୁ ଦୋଷ ଦେବି ନାହିଁ । ବରଂ ଆପଣମାନଙ୍କର ସାଧୁତା ପାଇଁ ମୁଁ ଆପଣମାନଙ୍କୁ ପ୍ରଶଂସା କରିବି ଏବଂ ଆପଣମାନଙ୍କ ଦକ୍ଷତାକୁ ଅନ୍ୟ କାର୍ଯ୍ୟରେ ଯୁଦ୍ଧକ୍ଷେତ୍ର ବାହାରେ ପ୍ରୟୋଗ କରିବି ।''

ବିସ୍ମୟର କଥା ଯେ ସୁଭାଷଙ୍କର ସେହି ସ୍ପଷ୍ଟ ଆହ୍ୱାନ ସତ୍ତ୍ୱେ ଜଣେ ହେଲେ ସୈନିକ ମୁକ୍ତି ବାହିନୀରୁ ବାହାରି ଯାଇନଥିଲେ । 'ଚଲୋ ଦିଲ୍ଲୀ'ର ରଣ ହୁଙ୍କାରରେ ମୁକ୍ତି ବାହିନୀର ଚାଳିଶି ହଜାର ସୈନ୍ୟ ଯୁଦ୍ଧ କ୍ଷେତ୍ରରେ ଲମ୍ଫପ୍ରଦାନ କଲେ ।

ବର୍ମା-ଭାରତ ସୀମାନ୍ତରେ ଦଣ୍ଡାୟମାନ ହୋଇ ମାତୃଭୂମି ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି ୧୯୪୪ ଜାନୁୟାରୀ ୭ ତାରିଖରେ ନେତାଜୀ ମୁକ୍ତିବାହିନୀ ଉଦ୍ଦେଶ୍ୟରେ ଭାବପ୍ରବଣ କଣ୍ଠରେ କହିଲେ, ''ଅଦୂରରେ ସେହି ନଦୀର ଅପର ପାର୍ଶ୍ୱରେ ଆମର ପ୍ରାଣର ମାତୃଭୂମି ଭାରତ, ଯେଉଁ ମାଟିରୁ ଆମ୍ଭମାନଙ୍କର ଜନ୍ମ ଓ ଯେଉଁ ମାଟିକୁ ଆମକୁ ରାହୁମୁକ୍ତ କରିବାକୁ ପଡ଼ିବ । କାନ ଡେରି ଶୁଣ- ଭାରତ ମା' ଆମ୍ଭମାନଙ୍କୁ ଆହ୍ୱାନ ଦେଉଅଛି । ରକ୍ତ ରକ୍ତକୁ ଆହ୍ୱାନ ଦେଉଅଛି । ଜାଗ୍ରତ ହୁଅ, ଆଉ ମୁହୂର୍ତ୍ତେ ସମୟ ନଷ୍ଟ କର ନାହିଁ । ଅସ୍ତ୍ରଧର,

ଶତ୍ରୁବ୍ୟୂହକୁ ଭେଦକରି ଆମର ପଥ ପରିଷ୍କୃତ ହେଉ ଏବଂ ଭଗବାନ ଯଦି ଚାହାନ୍ତି ଆମ ଭାଗ୍ୟରେ ଆସିବ ଶହିଦର ମୃତ୍ୟୁ । ଆମର ଅନ୍ତିମ ଶୟନ ହେବ ଦିଲ୍ଲୀ ପଥକୁ ଚୁମ୍ବନ କରି । ଦିଲ୍ଲୀର ପଥ ସ୍ୱାଧୀନତାର ପଥ- 'ଚଲୋ ଦିଲ୍ଲୀ' ।

Netaji watched trains move away and could not restrain his tears as the officers took leave. ରେଙ୍ଗୁନ୍‌ର ଆଜାଦ୍ ହିନ୍ଦ୍ ଫୌଜକୁ ଧରି ଟ୍ରେନ୍ ଭାରତ ସୀମାନ୍ତକୁ ଯିବା ବେଳେ ବିଶେଷତଃ ଫୌଜର ଅଫିସରମାନେ ତାଙ୍କଠାରୁ ବିଦାୟ ନେବାବେଳେ ନେତାଜୀ ଅଶ୍ରୁ ସମ୍ବରଣ କରିପାରି ନଥିଲେ । (Hugh Toye-The springing Tiger, page-106) କିନ୍ତୁ ଖୁବ୍ ଶୀଘ୍ର ଯୁଦ୍ଧକ୍ଷେତ୍ରରୁ ସୁସମ୍ବାଦ ମାନ ପହଞ୍ଚିବାକୁ ଲାଗିଲା ।

ମୁକ୍ତି ବାହିନୀର ସେହି ବିପୁଳ ଯୁଦ୍ଧାୟୋଜନରେ ଭାରତରେ ବ୍ରିଟିଶ୍ ଶାସକ ବୃନ୍ଦ ଆତଙ୍କିତ ହୋଇ ଯିବା ସଙ୍ଗେ ସଙ୍ଗେ ବ୍ରିଟିଶ୍ ସାମ୍ରାଜ୍ୟ ବାଦର ପୁଞ୍ଜିବାଦୀ ପୃଷ୍ଠପୋଷକ ଆମେରିକାର ମଧ୍ୟ ହୃତ୍‌କମ୍ପ ସୃଷ୍ଟି ହୋଇଥିଲା । ଆମେରିକା ରାଷ୍ଟ୍ରପତି ରୁଜ୍ ଭେଲ୍‌ଟ ପରିବର୍ତ୍ତିତ ପରିସ୍ଥିତିରେ ବ୍ରିଟିଶ୍ ସାମରିକ ଶକ୍ତିର ଅଟକଳ କରିବା ପାଇଁ ଭାରତକୁ ବିଶେଷ ଦୂତ ପ୍ରେରଣ କଲେ । କଲୋନେଲ୍ ଜନ୍‌ସନ୍ ଓ ହେରିଙ୍ଗଟନ୍ ଭାରତର ଯୁଦ୍ଧ ପରିସ୍ଥିତିରେ ଭାଇସ୍‌ରାୟ ଡ୍ୟାଭେଲ୍ ଓ ସେନାପତି ମାଉଣ୍ଟବ୍ୟାଟେନ୍‌ର ଦୟନୀୟ ଅବସ୍ଥା ଅବଲୋକନ କରି ରାଷ୍ଟ୍ରପତିଙ୍କୁ ଯେଉଁ ଆତଙ୍କ ଜନକ ରିପୋର୍ଟ ପ୍ରେରଣ କରିଥିଲେ, ସେଥିରେ ସେ ଶେଷ ପାରାରେ ଉଲ୍ଲେଖ କରିଥିଲେ- ''ଜାପାନ ଓ ଇଣ୍ଡିୟାନ୍ ନ୍ୟାସନାଲ ଆର୍ମି'' ର ଆକ୍ରମଣରୁ ବ୍ରିଟିଶ ଭାରତକୁ ରକ୍ଷା କରିବାକୁ ହେଲେ ବହୁ ସଂଖ୍ୟକ ଆମେରିକାନ୍ ସୈନ୍ୟ, ବିପୁଳ ଯୁଦ୍ଧ ସମ୍ଭାର ଏବଂ ଅନ୍ୟୁନ ପାଞ୍ଚଶହ ଯୁଦ୍ଧ ବିମାନ ତୁରନ୍ତ ପଠାଇବାକୁ ହେବ, ନଚେତ୍ ଭାରତର ଆଶା ଚିରଦିନ ପାଇଁ ତ୍ୟାଗ କରିବାକୁ ପଡ଼ିବ ।''

କଲୋନେଲ ଜନ୍‌ସନ୍ ଆଜାଦ୍ ହିନ୍ଦ୍ ଫୌଜର ଯୁଦ୍ଧ ଆୟୋଜନ ସଂକ୍ରାନ୍ତୀୟ ଗୋଇନ୍ଦା ରିପୋର୍ଟ ଅନୁଧ୍ୟାନ କରି ଏହି ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଯେ ''ଫୌଜ'' ଉତ୍ତରପୂର୍ବ ଦିଗରୁ ପ୍ରଥମେ ଆକ୍ରମଣ ଆରମ୍ଭ କରିବାର ସମ୍ଭାବନା ରହିଛି । ତତ୍ ପରେ ଆସାମ୍, ବଙ୍ଗଳା ଓ ଓଡ଼ିଶା ଦଖଲ କରି ଗାଙ୍ଗେୟ ଉପତ୍ୟକା ବାଟେ ଦିଲ୍ଲୀ ଅଧିକାର କରିବାର ''ବ୍ଲୁପ୍ରିଣ୍ଟ'' ହୋଇଥିବାର ଜଣାଯାଇଛି । କେବଳ ସାମରିକ ଶକ୍ତି ବଳରେ 'ମୁକ୍ତିବାହିନୀ' ର ସମ୍ମୁଖୀନ ହେବା ଯେ ଯଥେଷ୍ଟ ନୁହେଁ- ଏହା ଧୂର୍ତ୍ତ ଇଙ୍ଗ-ଆମେରିକା ଗୋଷ୍ଠୀ ମଧ୍ୟ ଉତ୍ତମ ରୂପେ ଉପଲବ୍ଧି କରିଥିଲେ । ସେଥିପାଇଁ ସାମରିକ ଆୟୋଜନ ସଙ୍ଗେ ସଙ୍ଗେ ଭାରତ ଭିତରେ କିଛି କିଛି ରାଜନୈତିକ ପଦକ୍ଷେପ ନେବା ଏବଂ 'ମୁକ୍ତି ବାହିନୀ'ର ସର୍ବପ୍ରଧାନ ସହାୟକ ଘାଟି ଜାପାନ ଉପରେ ତଥା ପ୍ରଶାନ୍ତ ମହାସାଗରରେ ବିମାନ ଆକ୍ରମଣ ବୃଦ୍ଧି କରିବା ପାଇଁ ମଧ୍ୟ ସିଦ୍ଧାନ୍ତ ନିଆଗଲା । ରାଜନୈତିକ ପଦକ୍ଷେପ ଗୁଡ଼ିକ ମଧ୍ୟରେ ପ୍ରଧାନ ସିଦ୍ଧାନ୍ତ ଥିଲା ଗାନ୍ଧିଜୀ ଓ ଅନ୍ୟାନ୍ୟ କଂଗ୍ରେସ ନେତାମାନଙ୍କୁ ଜେଲ୍‌ରୁ ଖଲାସ କରିବା ଏବଂ

''ଯୁଦ୍ଧ ପରେ ଭାରତକୁ ସ୍ୱାଧୀନତା ଦିଆଯିବ'' ଭଳି ପୁରୁଣା ଘସରା ରେକର୍ଡକୁ ପୁଣି ଉଚ୍ଚସ୍ୱରରେ ବଜାଇବା । ଏହାଦ୍ୱାରା ବ୍ରିଟିଶ୍ ଶାସକମାନଙ୍କ ପ୍ରତି ଭାରତୀୟମାନଙ୍କର ଆସ୍ଥା ସୃଷ୍ଟି ହେବ ଏବଂ ସ୍ୱାଧୀନତା ପାଇଁ 'ବ୍ରିଟିଶ୍ ଆମେରିକା' ପ୍ରତିଶ୍ରୁତି ଉପରେ ଅଛିଣ୍ଡା ଓ ଅସୀମ ଆଲୋଚନା ଏବଂ ଯୁକ୍ତିତର୍କ ଚାଲିବ । ଫଳରେ ସାଧାରଣ ଭାରତୀୟ ଜନତାର ଦୃଷ୍ଟି ସୁଭାଷ ବା 'ମୁକ୍ତି ବାହିନୀ' ଉପରେ ଆବଦ୍ଧ ନ ରହି ସେହି ''ଚର୍ବିତ ଚର୍ବଣ'' ଖାଦ୍ୟ ଉପରେ ନିବଦ୍ଧ ରହିବ । କିନ୍ତୁ ବ୍ରିଟିଶ ଶାସନର ସେହି କଣ୍ଠାଗ୍ରତ ଅବସ୍ଥାରେ ମଧ୍ୟ ପ୍ରଧାନ ମନ୍ତ୍ରୀ ଚର୍ଚ୍ଚିଲ୍ ''ଭାରତକୁ ସ୍ୱାଧୀନତା ଦେବା କଥା ଶୁଣିଲେ ତଥାପି ଚିହିଁକି ଉଠୁଥିଲେ ।''

୧୯୪୪ ମସିହା ଫେବୃୟାରୀ ୨୪ ତାରିଖରେ ବର୍ମା-ଆସାମ ସୀମାନ୍ତରେ ପ୍ରଥମ ଥର ପାଇଁ ''ମୁକ୍ତି ବାହିନୀ'' ସହ ବ୍ରିଟିଶ୍ ଗୋଲାମୀ ସୈନ୍ୟଙ୍କର ମୁକାବିଲା ହେଲା । ଏହି ଆକ୍ରମଣରେ ସୀମାନ୍ତରେ ଅବସ୍ଥିତ ତଙ୍ଗ ବଜାର ମୁକ୍ତିବାହିନୀର ଅଧୀନକୁ ଆସିଲା । ମାର୍ଚ୍ଚ ପହିଲାରେ ସୈତାବିନ୍ । ତା ପରେ ପରେ କାଲାଦାନ, ଫୋର୍ଟ ୱାଇଟ୍ ଲାନା କୋଟ, କେନେଡ଼ି ପିକ୍ ପ୍ରଭୃତି ଘାଟିରୁ ଇଂରେଜ ଶାସନ ଲୋପ ପାଇଲା । ମାର୍ଚ୍ଚ ୧୮ ତାରିଖରେ ।

'କେନେଡ଼ି ପିକ୍' ଦଖଲ ହେବା ପରେ ଆସାମର ସମତଳ ଅଞ୍ଚଳ ''ଆଜାଦ୍ ହିନ୍ଦ୍ ଫୌଜ''ର ମୁକ୍ତି ସେନାନୀ ମାନଙ୍କର ଦୃଷ୍ଟି ପଥାରୂଢ଼ ହେଲା । ସବୁଜ ଭାରତ ମାତାର ଦୃଶ୍ୟପଟ ମୁକ୍ତି ସେନାମାନଙ୍କୁ ଉନ୍ମାଦ ପ୍ରାୟ କରିଦେଲା । କିଏ ଆଗ ସେହି ପବିତ୍ର ମାଟିକୁ ପ୍ରଥମେ ସ୍ପର୍ଶ କରିବ, ସେଥିପାଇଁ ସେମାନଙ୍କ ମନରେ ପ୍ରତିଯୋଗିତା ଆରମ୍ଭ ହୋଇଗଲା । "Our valient troops were rushing to be the first to kiss Mother India and fall prostrate" [ଜନ୍ ଏ. ଥିଭିଙ୍କର ପ୍ରତ୍ୟକ୍ଷଦର୍ଶୀ ବିବରଣୀ - A struggle in East Asia page-66] ଭାରତର ସେହି ସ୍ୱାଧୀନତା ଯୋଦ୍ଧାମାନେ ଭାରତ ଜାତୀୟ ସଙ୍ଗୀତ ଗାଇ ଗାଇ ସେହି ମାଟି ଉପରେ ତ୍ରିରଙ୍ଗା ପତାକାକୁ ଉଡ଼ାଇବା ପାଇଁ ଯେଉଁ ଅଦମନୀୟ ଉଦ୍ଦୀପନା ପ୍ରଦର୍ଶନ କଲେ, ଭାଷାରେ ତାହା କିଏ ବର୍ଣ୍ଣନା କରି ପାରିବ ?

ଅନମନୀୟ ଉତ୍କଣ୍ଠାରେ ଅପେକ୍ଷା କରାଯାଇଥିବା ସେହି ସମ୍ବାଦଟି ''ଭାରତୀୟ ସ୍ୱାଧୀନତା ସଂଘ''ର ସମସ୍ତ ପ୍ରାଦେଶିକ ଶାଖା ଉଦ୍ଦେଶ୍ୟରେ ଆଜାଦ୍ ହିନ୍ଦ୍ ରେଡିଓରେ ପ୍ରଚାରିତ ହେବା ସଙ୍ଗେ ସଙ୍ଗେ ପ୍ରବାସୀ ଭାରତୀୟମାନଙ୍କ ମନରେ ଅନିର୍ବଚନୀୟ ଆନନ୍ଦ ଉଲ୍ଲାସରେ ଉଚ୍ଛ୍ୱସିତ ହୋଇଗଲା । ବର୍ମାରୁ ବ୍ୟାଙ୍କକ୍ ପର୍ଯ୍ୟନ୍ତ ସର୍ବତ୍ର ଭାରତୀୟମାନେ ବିଜୟ ଉତ୍ସବ ପାଳନ  କଲେ । ସ୍ୱୟଂ ନେତାଜୀ ସୁଭାଷ ସେହି ଘୋଷଣା କରିଥିଲେ । ଦେଶ ଭିତରର ଭାରତୀୟମାନଙ୍କ ଉଦ୍ଦେଶ୍ୟରେ ସେ କହିଲେ (The army  of India's Liberation are now fighting on Indian soil, all my country-men are called upon to give every assistance to and fully co-operative with the army so that Brittish Imperialism in India

is over-thrown.") ଭାରତୀୟଙ୍କ ଉଦ୍ଦେଶ୍ୟରେ କହୁଅଛି ଯେ ବର୍ତ୍ତମାନ ଆଜାଦ୍ ହିନ୍ଦ୍ ଫୌଜ ଭାରତ ମାଟିରୁ ବ୍ରିଟିଶ୍ ସାମ୍ରାଜ୍ୟବାଦ ମୂଳପୋଛ କରିଦେବା ପାଇଁ ପ୍ରତ୍ୟେକ ଭାରତବାସୀ 'ଫୌଜ'କୁ ସର୍ବବିଧ ସାହାଯ୍ୟ କରିବା ଏକମାତ୍ର କର୍ତ୍ତବ୍ୟ ।

ଜାତୀୟ ବାହିନୀ ପଛେ ପଛେ ଜାପାନ ସୈନ୍ୟମାନେ ସେଠାରେ ପହଞ୍ଚିଗଲେ । ସର୍ବାଗ୍ରେ ଜାତୀୟ ବାହିନୀ ଓ ପଛରେ ତାହାର ଦୁଇପାଖରେ ଜାପାନୀ ସୈନ୍ୟ ମଧ କିଛି ଅଂଶ ଦଖଲ କରୁଥାନ୍ତି । ଜାପାନ ପ୍ରଧାନ ମନ୍ତ୍ରୀ ଟୋଜୋ ଓ ନେତାଜୀଙ୍କ ଭିତରେ ମୂଳରୁ ବୁଝାମଣା ହୋଇଥିଲା ଯେ ଅଧିକୃତ ଭୂଖଣ୍ଡରେ ଏକମାତ୍ର ନିୟାମକ ହେବ ଭାରତ । ଜାପାନର ସେହି ପ୍ରତିଶ୍ରୁତି ଉପରେ ସୁଭାଷଙ୍କ ବିରୋଧୀ ଭାରତୀୟମାନଙ୍କର ଆଦୌ ଆସ୍ଥା ନଥିଲା । ସେହି ସଂଶୟ ବାଦୀମାନଙ୍କର ସନ୍ଦେହକୁ ମିଥ୍ୟା ପ୍ରମାଣିତ କରି ଟୋଜୋ ମାର୍ଚ୍ଚ ୨୨ ତାରିଖ ଜାପାନ ପାର୍ଲିଆମେଣ୍ଟରେ ଘୋଷଣା କଲେ, "It is natural that all areas over which Indian National Army marches within India must be placed completely under the Administration of the Provisional Govt. ଅର୍ଥାତ୍ ''ଏହା ଅତ୍ୟନ୍ତ ସ୍ୱାଭାବିକ ଯେ ଭାରତୀୟ ଜାତୀୟ ବାହିନୀ ଉପରେ ଭାରତର ମୁକ୍ତାଞ୍ଚଳର ପ୍ରଶାସନ ନ୍ୟସ୍ତ ।'' ତଦନୁଯାୟୀ ଜାପାନ ଅଧିକୃତ ଅଞ୍ଚଳ ଗୁଡ଼ିକ ସଙ୍ଗେ ସଙ୍ଗେ ଜାତୀୟ ବାହିନୀକୁ ହସ୍ତାନ୍ତରୀତ ହୋଇଥିଲା ।

ମାର୍ଚ୍ଚ ୨୧ ତାରିଖରେ ରେଙ୍ଗୁନ୍‌ଠାରେ ଅନୁଷ୍ଠିତ ସାମ୍ବାଦିକ ସମ୍ମିଳନୀରେ ନେତାଜୀ ଘୋଷଣା କଲେ ଯେ ''ଆଜାଦ୍ ହିନ୍ଦ୍ ବାହିନୀ'' ଇଂରେଜୀ ସୈନ୍ୟମାନଙ୍କୁ ପରାଜିତ କରି ଭାରତ ଭୂଖଣ୍ଡରେ ପାଞ୍ଚଗୋଟି ସୈନ୍ୟଘାଟୀ ଦଖଲ କରି ଅଛନ୍ତି । ଆସାମର ତଙ୍ଗଜନ ଓ ଅକ୍ରୁର ଯୁଦ୍ଧଘାଟୀ ଦଖଲ ହେଲା ତାହାର ଠିକ୍ ପରଦିନ । ଆସାମର ସମ୍ପୂର୍ଣ୍ଣ ଅଭ୍ୟନ୍ତରରେ ଅବସ୍ଥିତ ଟିଡିକ ଓ ମଲାନ୍ ମୁକ୍ତି ବାହିନୀର ଦଖଲକୁ ଆସିଲା । ଏପ୍ରିଲ୍ ପ୍ରଥମ ସପ୍ତାହରେ ଆହୁରି କେତେଗୋଟି ବ୍ରିଟିଶ୍ ଘାଟି ଯଥା:- ସଙ୍ଗକ, ମୋରସ, ଟାମୁ, କାବୁ ଓ ହେଙ୍ଗଟାନ୍ ନାମକ ଯୁଦ୍ଧ ଘାଟିରୁ ଇଂରେଜ ସୈନ୍ୟ ପଛଘୁଞ୍ଚା ଦେଇ ପଳାଇ ଗଲେ । ସେହିଦିନ ନେତାଜୀ ଝାନ୍‌ସୀ ରାଣୀ ରେଜିମେଣ୍ଟର ଗୋଟିଏ ଆଗୁଆ ଦଳକୁ ସାଙ୍ଗରେ ଧରି ଯୁଦ୍ଧକ୍ଷେତ୍ରକୁ ବାହାରିଗଲେ । ମଣିପୁରର କୋହିମା ଦୁର୍ଗ ଦିନାପୁର ଓ ମଇରାଙ୍ଗ ପ୍ରଭୃତି ସହର ଦଖଲ ପାଇଁ ପ୍ରାଣମୂର୍ଚ୍ଛା ଓ ରକ୍ତାକ୍ତ ହାତାହାତି ଯୁଦ୍ଧ ହୋଇଥିଲା । କୋହିମା ଦୁର୍ଗର ପତନ ଫଳରେ ଆଜାଦ୍ ହିନ୍ଦ୍ ବାହିନୀର ଶକ୍ତି ଓ ସାମର୍ଥ୍ୟ ସମ୍ପର୍କରେ ବିଶ୍ୱବାସୀଙ୍କର ଆଉ ସନ୍ଦେହ ରହିଲା ନାହିଁ ଏବଂ ସେଥିପାଇଁ ବ୍ରିଟିଶ୍ ଆମେରିକା ମିଳିତ ସୈନ୍ୟବାହିନୀ ଇମ୍ଫାଲକୁ ରକ୍ଷା କରିବାକୁ ପ୍ରାଣ ପଣେ ଉଦ୍ୟମ ଆରମ୍ଭ କରିଦେଲେ । ବର୍ଷା ଋତୁରେ ପରିବହନ ବ୍ୟବସ୍ଥା ବିପର୍ଯ୍ୟସ୍ତ ହେବା ପୂର୍ବରୁ ଇମ୍ଫାଲ ରଣାଙ୍ଗନକୁ ସମ୍ପୂର୍ଣ୍ଣ ପ୍ରସ୍ତୁତ କରି ରଖିବାକୁ ବ୍ରିଟିଶ୍ ଶାସକମାନେ ଅସୁମାରୀ ସୈନ୍ୟ ସାମନ୍ତ, ଯୁଦ୍ଧ ସରଞ୍ଜାମ ଓ ଯୁଦ୍ଧ ବିମାନ ସେଠାରେ ଜମା କରିବାକୁ ଲାଗିଲେ ।

ଏପ୍ରିଲ୍ ୧୮ ତାରିଖଠାରୁ ଆଜାଦ୍ ହିନ୍ଦ୍ ସୈନ୍ୟବାହିନୀ ପକ୍ଷରୁ ଇମ୍ଫାଲ ଦୁର୍ଗ ଅବରୋଧ ଆରମ୍ଭ ହେଲା । ଏକ ଦିଗରେ ସାନଓ୍ୱାଜ- ସାହଗଲ-ଧୀଲନ୍ଙ୍କ ନେତୃତ୍ୱରେ ମୁକ୍ତି ବାହିନୀ ଅନ୍ୟ ଦିଗରେ ମିଳିତ ଶତ୍ରୁ ସୈନ୍ୟର ସେନାପତି ମାଉଣ୍ଟବ୍ୟାଟେନ୍ ନେତୃତ୍ୱରେ ବିପୁଳ ଯୁଦ୍ଧ ସମ୍ଭାର । ତଥାପି ଇଂରେଜମାନେ ତ୍ରସ୍ତ ଓ ଆତଙ୍କିତ । କେବଳ ସାମରିକ ଶକ୍ତି ବଳରେ ସେ ଯୁଦ୍ଧରେ ଜିତିବା ଅସମ୍ଭବ ମନେ କରି ଆରମ୍ଭ କଲେ ରାଜନୈତିକ ନେତାମାନଙ୍କ ସହ ଦର କଷାକଷି । ଉଦ୍ଦେଶ୍ୟ କଂଗ୍ରେସ ନେତୃବୃନ୍ଦଙ୍କ ପ୍ରତି ଉଦାର ମନୋଭାବ ପ୍ରଦର୍ଶନ କରି ଭାରତର ଜନମତକୁ ନିଜ ସପକ୍ଷରେ ସଙ୍ଗଠିତ କରିବା । ସେହି ଲକ୍ଷ୍ୟରେ ୫ମ ମଇ ପାଞ୍ଚ ତାରିଖରେ ବନ୍ଦୀଶାଳାରୁ ମୁକ୍ତ କରାଗଲା ଗାନ୍ଧିଜୀ ଓ ଅନ୍ୟାନ୍ୟ କଂଗ୍ରେସ ନେତୃବୃନ୍ଦଙ୍କୁ । କଂଗ୍ରେସ ମୂଳରୁ ନେତାଜୀ ଓ ଆଜାଦ୍ ହିନ୍ଦ୍ ଫୌଜକୁ କେବଳ ବିରୋଧ କରୁନଥିଲା, ସେମାନଙ୍କୁ 'ଦେଶଦ୍ରୋହୀ' ଓ ଶତ୍ରୁପକ୍ଷର (ଜାପାନର) 'ଦଲାଲ' ବୋଲି ଚିତ୍ରିତ କରୁଥିଲା । ଇତିହାସର ଏହା ଚରମ ବିଡ଼ମ୍ବନା ଯେ ଯେତେବେଳେ ଆଜାଦ୍ ହିନ୍ଦ୍ ଫୌଜ ଆସାମର ପାହାଡ଼ିଆ ଅଞ୍ଚଳର ଶହ ଶହ ମାଇଲ ଦଖଲ କରି ସ୍ୱାଧୀନ ସରକାର ଦ୍ୱାରା ତାହାକୁ ଶାସନ କରିବା ଆରମ୍ଭ କରିଥିଲା, ସେତେବେଳେ କଂଗ୍ରେସ ଓ ତାହାର ନେତୃମଣ୍ଡଳୀ ସେଥିରେ ସାହାଯ୍ୟ ନ କରି ଓଲଟି ଇଂରେଜମାନଙ୍କୁ ସାହାଯ୍ୟ କରିବାକୁ ଆରମ୍ଭ କରିଦେଲେ । ତଥାପି ସବିନୟ ଆଇନ୍ ଅମାନ୍ୟ ଅପେକ୍ଷା ସୁଭାଷ ନିର୍ଦ୍ଦେଶିତ ପ୍ରତ୍ୟକ୍ଷ ସଂଗ୍ରାମର ଆଦର୍ଶ ମଧ୍ୟ ଭାରତୀୟ ଜନମନକୁ ଗଭୀର ଭାବରେ ସ୍ପର୍ଶ କରିବାକୁ ଆରମ୍ଭ କରିଥିଲା ।

ଇମ୍ଫାଲରେ ବ୍ରିଟିଶ୍ ସୈନ୍ୟ ପରାଜିତ ହେବା ଅର୍ଥ ଥିଲା ସମଗ୍ର ଆସାମରେ ମୁକ୍ତିବାହିନୀର ବିଜୟ ଏବଂ ତା'ର ଅର୍ଥ ସମଗ୍ର ପୂର୍ବ ଭାରତ ହେବ ମୁକ୍ତିବାହିନୀ ପକ୍ଷରେ ଏକ ମୁକ୍ତାଞ୍ଚଳ । ସେଥିପାଇଁ ମାଉଣ୍ଟବ୍ୟାଟେନ୍ ବ୍ରିଟିଶ୍‌ର ସମସ୍ତ ଶକ୍ତି ସେଠାରେ ଏକତ୍ରିତ କରିଥିଲା । ତା' ସଙ୍ଗେ ସଙ୍ଗେ ଜାପାନ ଯେପରି କୌଣସି ସାହାଯ୍ୟ ମୁକ୍ତିବାହିନୀକୁ ଯୋଗାଇ ନପାରେ ସେଥିପାଇଁ ପ୍ରଶାନ୍ତ ମହାସାଗର ଭିତରେ ଅବସ୍ଥିତ ଜାପାନର ଘାଟିମାନଙ୍କ ଉପରେ ହେଲା ପ୍ରଚଣ୍ଡ ଆକ୍ରମଣ । ସର୍ବୋପରି ମଇ-ଜୁନ୍ ମାସରୁ ଆସାମ ଉପରେ ଆରମ୍ଭ ହୋଇଗଲା ମୌସୁମୀ ବର୍ଷାର ପ୍ରବଳ ଅଭିଯାନ । ଫଳରେ ଆସାମର ଗିରିପଥ ହୋଇଗଲା ଆହୁରି ଦୁର୍ଗମ ଓ ଦୁର୍ଭେଦ୍ୟ । କ୍ରମେ ରୁଦ୍ଧ ହୋଇଗଲା ସମସ୍ତ ସରବରାହ ପଥ । ରେଙ୍ଗୁନ୍ ସହ ଥିବା ଏକମାତ୍ର ଯୋଗସୂତ୍ର ରାସ୍ତା ବନ୍ୟା ପ୍ଳାବିତ ହୋଇଗଲା । ଫଳରେ ମୁକ୍ତିବାହିନୀ ପାଇଁ ଖାଦ୍ୟ, ରସଦ, ଗୁଳା ବାରୁଦ ଓ ସୈନ୍ୟ ସାମନ୍ତ ପଠାଇବା ଅସମ୍ଭବ ହୋଇ ପଡ଼ିଲା ।

ସପ୍ତାହ ସପ୍ତାହ ଧରି ସୂର୍ଯ୍ୟ ଦିଶିଲେ ନାହିଁ । ଯୁଦ୍ଧକ୍ଷେତ୍ରରେ ଖାଦ୍ୟ ପଦାର୍ଥର ଅଭାବ ହେଲା । ତଥାପି ମୁକ୍ତିବାହିନୀ ଇମ୍ଫାଲ୍‌ର ଅବରୋଧକୁ ବଞ୍ଚାଇ ରଖିଲେ । କିନ୍ତୁ ଶତ୍ରୁପକ୍ଷର ସେ ଅସୁବିଧା ନଥିଲା । ମୁକ୍ତି ବାହିନୀ ଚରମ ବିଜୟର ମାତ୍ର କେଇ ଇଞ୍ଚ ଦୂରରେ ସେମାନେ ଲଢୁଥିଲେ; କିନ୍ତୁ ଖାଦ୍ୟ, ଗୁଳିଗୁଳାର ଅଭାବ । ଜାପାନ ଉପରେ କ୍ରମବର୍ଦ୍ଧମାନ ଆକ୍ରମଣ

ଏବଂ ଭାରତରେ କଂଗ୍ରେସ ନେତୃମଣ୍ଡଳର ତୀବ୍ର ବିରୋଧ ସବୁ ମିଶି ମୁକ୍ତିବାହିନୀ ପାଇଁ ସୃଷ୍ଟି କଲା ଅଲଂଘନୀୟ ପ୍ରତିବନ୍ଧକ । ଯୁଦ୍ଧ ଚଳାଇ ରଖିବା ସେମାନଙ୍କ ପକ୍ଷରେ ଅସମ୍ଭବ ହୋଇ ପଡ଼ିଲା ।

ଏସବୁ ଅସୁବିଧାକୁ ବିଚାର କରି ନେତାଜୀ ଅନୁଭବ କଲେ ଯେ ଅନୁକୂଳ ପରିସ୍ଥିତି ନ ଆସିବା ପର୍ଯ୍ୟନ୍ତ ଇମ୍ଫାଲର ଅବରୋଧକୁ ଚଳାଇ ରଖିବା ସାମରିକ ବୁଦ୍ଧିମତାର କାର୍ଯ୍ୟ ହେବ ନାହିଁ ।

ଜନ ଥିଭିଙ୍କ ଭାଷାରେ "What the British troops could not do, monsoons succeeded in effecting." (ବ୍ରିଟିଶ୍ ସୈନ୍ୟମାନେ ଯାହା କରିପାରିନଥିଲେ ମୌସୁମୀ ବର୍ଷା ତାହା କରିବାରେ ସଫଳ ହୋଇଥିଲା ।) ବାସ୍ତବରେ ତାହାହିଁ ଘଟିଥିଲା । ଏପ୍ରିଲ୍ ୧୬ ତାରିଖରୁ ଜୁଲାଇ ୧୮ ତାରିଖ ପର୍ଯ୍ୟନ୍ତ ପକ୍କା ତିନିମାସ କାଳ ବ୍ରିଟିଶ୍ ସୈନ୍ୟମାନେ ମୁକ୍ତ ଫୌଜର ଅଗ୍ରଗତିକୁ ପ୍ରତିରୋଧ କରିବା ସଙ୍ଗେ ସଙ୍ଗେ ଇମ୍ଫାଲ୍‌କୁ ତିନି ପାଖରୁ ଅବରୋଧ କରି ରଖିଥିଲେ । ମୁକ୍ତିଫୌଜକୁ ପଛକୁ ମଧ ଠେଲି ପାରିଲେ ନାହିଁ । ପରାଜିତ କରି ଆଗେଇ ଆସିବା ଦୂରର କଥା । ମନେ ରଖିବାକୁ ହେବ ଯେ ଗୋଟିଏ ପକ୍ଷରେ ଲଢୁଥିଲେ ବ୍ରିଟିଶ୍ ଟ୍ରେନିଂ ପ୍ରାପ୍ତ ସୁଦକ୍ଷ ସୈନ୍ୟ ବାହିନୀ ଓ ସେମାନଙ୍କୁ ଯୋଗାଇ ଦିଆଯାଇଥିଲା ପ୍ରଚୁର ଖାଦ୍ୟ ରସଦ ଆନନ୍ତ ଓ ଭାରୀ କମାଣ ବନ୍ଧୁକ । କିନ୍ତୁ ସେହି ସୈନ୍ୟମାନେ ଥିଲେ ବ୍ରିଟିଶ୍‌ର ଦରମାଖିଆ ଭଡ଼ାଟିଆ । ଅପରପକ୍ଷରେ ଥିବା କମାଣ୍ଡର ଓ ସୈନ୍ୟମାନେ ମଧ ଥିଲେ ମିଲିଟାରୀ କଲେଜ ଡେରାଡୁନ୍ ଓ ଇଂଲାଣ୍ଡର ସ୍ୟାଣ୍ଡହର୍ଗଟ ଉଚ୍ଚତର ଟ୍ରେନିଂ ପ୍ରାପ୍ତ । କିନ୍ତୁ ସେମାନେ ନଥିଲେ ବେତନ ଭୋଗୀ ବା ବିଦେଶୀ ରାଷ୍ଟ୍ରର ଦଲାଲ । ସେମାନେ ଥିଲେ ଦୃଢ଼ ମନୋବଳ ଓ ଦେଶପ୍ରେମ ସମ୍ପନ୍ନ ସ୍ୱାଧୀନତା ସଂଗ୍ରାମୀ । ଓ ଭାରତରୁ ବ୍ରିଟିଶ ଶାସନ ଲୋପ କରିବାକୁ ଦୃଢ଼ ପ୍ରତିଜ୍ଞ ମୁକ୍ତି ସେନାନୀ । ବ୍ରିଟିଶ୍ ପକ୍ଷରୁ ଯେଉଁମାନେ ଲଢୁଥିଲେ ସେମାନେ ନିଜ ଚାକିରୀକୁ ରକ୍ଷା କରିବାକୁ ବାଧ ହୋଇ ହାଣ ମୁହଁକୁ ଆସିଥିଲେ । କିନ୍ତୁ ବ୍ରିଟିଶ୍ ବିରୁଦ୍ଧରେ ଲଢୁଥିବା ମୁକ୍ତି ସେନାନୀ ବିନା ବାଧ ବାଧକତାରେ ସ୍ୱେଚ୍ଛାରେ ବ୍ରିଟିଶ୍ ଅଧୀନ ଚାକିରୀ ଓ ବ୍ରିଟିଶ ରାଜାର ଆନୁଗତ୍ୟକୁ ପଦାଘାତ କରିଥିଲେ ସ୍ୱାଧୀନତା ପାଇଁ ପ୍ରାଣ ବିସର୍ଜନ କରି ଶହିଦ ହେବାକୁ ଲମ୍ଫ ପ୍ରଦାନ କରିଥିଲେ । ସ୍ୱାଧୀନତା ସଂଗ୍ରାମର ସେହି ଜ୍ୱଳନ୍ତ ଅଗ୍ନିକୁଣ୍ଡ ଭିତରକୁ ।

ବନ୍ୟା ପ୍ଲାବିତ ରାସ୍ତାଘାଟ ଯୋଗୁଁ ଖାଦ୍ୟ ଅସ୍ତ୍ରଶସ୍ତ୍ର ସରବରାହ ଅସମ୍ଭବ ହେବାରୁ ଭୋକ ଉପାସ ଅଯଥା ମୃତ୍ୟୁ ବରଣ ନକରି ଓ ସସମ୍ମାନେ ଅସ୍ଥାୟୀ ଭାବରେ ଯୁଦ୍ଧ ଅଭିଯାନକୁ ପ୍ରତ୍ୟାହାର କରି ନିରାପଦ ମୂଳ ଯୁଦ୍ଧ ଘାଟିକୁ ଫେରି ଆସିଲେ । ଶତ୍ରୁପକ୍ଷ ସେମାନଙ୍କର ଅନୁଧାବନ କରି ଯୁଦ୍ଧ କରିବା ମଧ ଦେଖାଗଲା ନାହିଁ । ମୁକ୍ତି ସେନାନୀ ବହୁ କ୍ଲେଶ ଦାୟକ ପରିସ୍ଥିତିରେ ପ୍ରତ୍ୟାବର୍ତ୍ତନ କରୁଥିଲେ ମଧ ସେମାନଙ୍କ ମଧ୍ୟରେ କୌଣସି ନୈରାଶ୍ୟ,

ହତାଶା, କିମ୍ବା ପରାଜୟ ମନୋଭାବର ସାମାନ୍ୟ ସୂଚନା ମଧ ନଥିଲା । "Despite all these untold hardship their morale never broke, the discipline remained high. In a word, the retretat was orderly." ସେମାନଙ୍କର ମନୋବଳ ଟିକିଏ ବି ଦୁର୍ବଳ ହୋଇଯାଇ ନଥିଲା ବା ସୈନ୍ୟବାହିନୀର ଶୃଙ୍ଖଳା ଭାଙ୍ଗି ନଥିଲା । ସେମାନେ ସାମାନ୍ୟ ବିଶୃଙ୍ଖଳିତ ମଧ ହୋଇନଥିଲେ । ଜଣେ ଜଣେ ନିଷ୍ଠାପର ସ୍ୱାଧୀନତା ସଂଗ୍ରାମୀ ଭାବରେ ଭାରତ ଭୂଖଣ୍ଡ ଭିତରକୁ ପ୍ରବେଶ କରିବା ଏବଂ ପୁରାତନ ବ୍ରିଟିଶ ପ୍ରଭୁମାନଙ୍କ ସହ ଲଢ଼ିବାର ଗୌରବ ଅର୍ଜନ କରିଥିବାରୁ ସେମାନଙ୍କର ଆନନ୍ଦ ଓ ଗର୍ବର ସୀମା ନଥିଲା । ସେମାନେ ଏହା ଉତ୍ତମ ରୂପେ ବୁଝି ସାରିଥିଲେ ଯେ ଶତ୍ରୁ ପକ୍ଷର ସଂଖ୍ୟା ଓ ଅସ୍ତ୍ରଶସ୍ତ୍ର ଦୃଷ୍ଟିରୁ ସେମାନଙ୍କ ଅପେକ୍ଷା ଯଥେଷ୍ଟ ଉତ୍କୃଷ୍ଟ ହୋଇଥିଲେ ମଧ ସେମାନେ ଯେ ମୁକ୍ତି ଫୌଜ ହାତରେ ପରାଭୂତ ହୋଇଥିଲେ, ତାହା କମ୍ ଉତ୍ସାହ ଜନକ ନଥିଲା । ସେ ବର୍ଷ ଆଗତୁରା ମୌସୁମୀ ବର୍ଷା ଆରମ୍ଭ ହୋଇଯିବାରୁ ସେମାନେ ବାଧ ହୋଇ ଯୁଦ୍ଧ ସ୍ଥଗିତ ରଖିଛନ୍ତି ବୋଲି ସେମାନେ ଉତ୍ତମ ରୂପେ ଉପଲବ୍ଧି କରିଥିବାରୁ ସେମାନଙ୍କ ମଧରେ ପରାଜୟ ମନୋଭାବ ସୃଷ୍ଟି ହେବାର କୌଣସି କାରଣ ନଥିଲା ।

ଅଗଷ୍ଟ ୧୪ ତାରିଖରେ ମୁକ୍ତି ବାହିନୀର ସୁପ୍ରିମ୍ କମାଣ୍ଡର ନେତାଜୀ ସୈନ୍ୟମାନଙ୍କ ଉଦ୍ଦେଶ୍ୟରେ ଏକ ନିର୍ଦ୍ଦେଶନାମା ଜାରୀ କରି କହିଥିଲେ, ''ଶତାବ୍ଦୀ ଶତାବ୍ଦୀ ଧରି ଭାରତକୁ ନିର୍ମମ ଭାବେ ଶୋଷଣ କରି ଏବଂ ସେମାନଙ୍କ ପାଇଁ ଯୁଦ୍ଧ କରିବାକୁ ବିଦେଶରୁ ବହୁସଂଖ୍ୟକ ସୈନ୍ୟ ଆଣି ଇଂରେଜମାନେ ଆମ୍ଭମାନଙ୍କ ବିରୁଦ୍ଧରେ ଅଧିକ ଶକ୍ତିଶାଳୀ ସୈନ୍ୟ ପ୍ରୟୋଗ କରିବାକୁ ସମର୍ଥ ହୋଇଅଛନ୍ତି । ଭାରତ-ବର୍ମା ସୀମାନ୍ତ ଅତିକ୍ରମ କରି ଆମ୍ଭେମାନେ ଆମ ଅପେକ୍ଷା ଅଧିକ ସଂଖ୍ୟକ ଓ ଅଧିକ ସଶସ୍ତ୍ର କିନ୍ତୁ ବିଭେଦଗ୍ରସ୍ତ ସୈନ୍ୟବାହିନୀର ସମ୍ମୁଖୀନ ହୋଇଥିଲେ ଏବଂ ପ୍ରତ୍ୟେକ ଯୁଦ୍ଧ କ୍ଷେତ୍ରରେ ସେମାନଙ୍କୁ ପରାଜିତ କରିବାକୁ ସମର୍ଥ ହୋଇଥିଲେ । କାରଣ ଆମର ସୈନ୍ୟବାହିନୀ ଉତ୍କୃଷ୍ଟତର ଟ୍ରେନିଂ ଓ ଶୃଙ୍ଖଳା ଜ୍ଞାନ ଏବଂ 'କର ଅବା ମର' ଆଦର୍ଶ ପ୍ରତି ଅକୁଣ୍ଠ ନିଷ୍ଠା ଯୋଗୁଁ ଅନତି ବିଳମ୍ବରେ ଶତ୍ରୁପକ୍ଷ ଉପରେ ସେମାନଙ୍କର କର୍ତ୍ତୃତ୍ୱ ପ୍ରତିଷ୍ଠା କରିପାରିଛନ୍ତି । ଘୋର ଅସୁବିଧା ଜନକ ପରିସ୍ଥିତିରେ ଯୁଦ୍ଧ କରି ଆମର ସାମରିକ ଅଫିସର ଓ ସୈନ୍ୟଗଣ ଏଭଳି ସାହସିକତା ଓ ବୀରତ୍ୱ ପ୍ରଦର୍ଶନ କରି ଅଛନ୍ତି ଯେ ତାହା ସମସ୍ତଙ୍କର ପ୍ରଶଂସନୀୟ ହୋଇପାରିଛି । ନିଜର ରକ୍ତଦାନ କରି ସେହି ବୀରଗଣ ଏଭଳି ମହନୀୟ ପରମ୍ପରା ସୃଷ୍ଟି କରିଅଛନ୍ତି ଯାହାକୁ ଭବିଷ୍ୟତରେ ଭାରତୀୟ ସୈନ୍ୟମାନେ ସ୍ମରଣ ରଖିବେ । ଇମ୍ଫାଲ ଉପରେ ଶେଷ ଆକ୍ରମଣ ପାଇଁ ସମସ୍ତ ପ୍ରସ୍ତୁତି ଶେଷ ହୋଇଥିଲା, ଯେତେବେଳେ ନିରବଚ୍ଛିନ୍ନ ମୂଷଳଧାରା ବର୍ଷା ଯୋଗୁଁ ଇମ୍ଫାଲ ଅଧିକାର କରିବା ସମ୍ପୂର୍ଣ୍ଣ ଅସମ୍ଭବ ହୋଇ ଉଠିଛି । ଏହି ଅସୁବିଧା ଦୃଷ୍ଟିରୁ ଆମ୍ଭେମାନେ ବର୍ତ୍ତମାନ ଆକ୍ରମଣରୁ ବିରତ ରହିବାକୁ ସ୍ଥିର କରିଅଛୁ । ଆଉ ଏକ ଅନୁକୂଳ ପରିସ୍ଥିତିରେ ଆକ୍ରମଣର ପ୍ରସ୍ତୁତି ପାଇଁ ଆମ୍ଭମାନଙ୍କୁ ଏହି ଯୁଦ୍ଧ ବିରତି ସମୟର ଉପଯୋଗ କରିବାକୁ

ପଡ଼ିବ ଏବଂ ପାଗ ଓ ଆବହାୱା ଅନୁକୂଳ ହେଲେ ଆମ୍ଭେମାନେ ପୁନର୍ବାର ଆକ୍ରମଣ କରିବା । ବିଭିନ୍ନ ଯୁଦ୍ଧ ଘାଟିରେ ଶତ୍ରୁପକ୍ଷକୁ ବହୁବାର ପରାଜିତ କରିବା ଫଳରେ ଆଙ୍ଗ୍ଲୋ ଆମେରିକାନ୍ ଶକ୍ତି ବିରୁଦ୍ଧରେ ଚରମ ବିଜୟ ହାସଲ କରିବା ସମ୍ପର୍କରେ ଆମ୍ଭେମାନେ ନିଶ୍ଚିନ୍ତ ହୋଇ ପାରିଛନ୍ତି । ଆମର ସମର ପ୍ରସ୍ତୁତି ଶେଷ ହେବା ସଙ୍ଗେ ସଙ୍ଗେ ଆମ୍ଭେମାନେ ଶତ୍ରୁ ବିରୁଦ୍ଧରେ ଶେଷ ଚଢ଼ାଉ ଆରମ୍ଭ କରିଦେବା । ଆମର ଉତ୍କୃଷ୍ଟତର ଯୁଦ୍ଧ କୌଶଳ ଓ କର୍ତ୍ତବ୍ୟ ପ୍ରତି ଅବିଚଳିତ ନିଷ୍ଠା ଫଳରେ ଆମର ଚରମ ବିଜୟ ସୁନିଶ୍ଚିତ ଅଟେ ।

ଯେଉଁ ମହାନ୍ ଜୀବନ ଗୁଡ଼ିକ ଏହି ଅଭିଯାନରେ ଆତ୍ମ ବିସର୍ଜନ କରିଅଛନ୍ତି ଭାରତର ମୁକ୍ତି ଯୁଦ୍ଧର ଚରମ ପର୍ଯ୍ୟାୟରେ ସେମାନେ ଆମ୍ଭମାନଙ୍କୁ ଅଧିକ ତ୍ୟାଗ, ଅଧିକ କୃତିତ୍ୱ, ବୀରତ୍ୱ ଓ ସାହସ ପ୍ରଦର୍ଶନ କରିବାକୁ ଉଦ୍‌ବୁଦ୍ଧ କରିବେ ।''

୧୯୪୫ ମଇ ମାସରେ ଜର୍ମାନୀର ପରାଜୟ ମଧ୍ୟ ଆଙ୍ଗ୍ଲୋ-ଆମେରିକାନ୍ ସୈନ୍ୟ ବାହିନୀର ସମସ୍ତ ଶକ୍ତି ପୂର୍ବ ଏସିଆରେ ନିୟୋଜିତ କରିବାର ସୁଯୋଗ ଦେଇଥିଲା । ଫଳରେ ଯୁଦ୍ଧ ପରିସ୍ଥିତି ଶତ୍ରୁପକ୍ଷ ପାଇଁ ଅଧିକ ଅନୁକୂଳ ହୋଇଥିଲା । କିନ୍ତୁ ଏ ସବୁ ସତ୍ତ୍ୱେ ଗୋଟିଏ ସତ୍ୟ ନିର୍ଭୁଲ ଭାବରେ ପ୍ରମାଣିତ ହୋଇଥିଲା ଯେ ବ୍ରିଟିଶ୍ ଶକ୍ତି ବିରୁଦ୍ଧରେ ମୁକ୍ତିବାହିନୀର ସଶସ୍ତ୍ର ଅଭିଯାନ ଓ ତାହାର ଆଂଶିକ ସଫଳତା ସ୍ୱାଧୀନତା ସଂଗ୍ରାମକୁ ନବଜୀବନ ପ୍ରଦାନ କରିଥିଲା । ଆଉ ସାମାନ୍ୟ ଗୋଟାଏ ଧକ୍କା ଦିଆଯାଇ ପାରିଥିଲେ ଭାରତ ଅବିଭକ୍ତ ଭାବରେ ସ୍ୱାଧୀନତା ଲାଭ କରିପାରିଥାନ୍ତା ।

ସେଥିପାଇଁ ନେତାଜୀ ମୁକ୍ତି ବାହିନୀ ଉଦ୍ଦେଶ୍ୟରେ କହିଥିଲେ, ''ଆପଣମାନଙ୍କର ମହାନ୍ ତ୍ୟାଗ ଯୋଗୁଁ ଭାରତର ଆଗାମୀ ବଂଶଧର ଆଉ ଦାସ ନ ହୋଇ ସ୍ୱାଧୀନ ଭାରତର ନାଗରିକ ଭାବରେ ଜନ୍ମଗ୍ରହଣ କରିବେ । ସେମାନେ ବିଶ୍ୱ ସପକ୍ଷରେ ଗର୍ବ ସହକାରେ ଘୋଷଣା କରିବେ ଯେ ସେମାନଙ୍କ ପୂର୍ବ ପୁରୁଷଗଣ ମଣିପୁର, ଆସାମରେ ସ୍ୱାଧୀନତାର ପଥ ପରିଷ୍କାର କରିଦେଇଯାଇ ଅଛନ୍ତି ।'' ମୋ' ମନରେ ଟିକିଏ ହେଲେ ସନ୍ଦେହ ନାହିଁ ଯେ ଆପଣମାନଙ୍କ ହାତରେ ଭାରତର ଜାତୀୟ ପତାକାର ସମ୍ମାନ ସମ୍ପୂର୍ଣ୍ଣ ନିରାପଦ ହୋଇ ରହିବ ଏବଂ ଏଥିପାଇଁ ଆପଣମାନେ ଜୀବନ ବିସର୍ଜନ କରିବାକୁ ମଧ୍ୟ ପରାଙ୍ମୁଖ ହେବେ ନାହିଁ ଏବଂ ଯେଉଁ ସ୍ୱାଧୀନତା ସଂଗ୍ରାମୀଗଣ ଅନ୍ୟତ୍ର ଲଢୁଅଛନ୍ତି ସେମାନଙ୍କୁ ଆପଣମାନଙ୍କ ବୀରତ୍ୱ ଉଦ୍‌ବୁଦ୍ଧ କରିବ ।

ଜର୍ମାନୀର ପରାଜୟ ପରେ ଜାପାନର ପରାଜୟ ଆସନ୍ନ ମନେ ହେବାରୁ ଆଜାଦ୍ ହିନ୍ଦ୍ ଫୌଜର ଭବିଷ୍ୟତ ନିରାପତ୍ତା ପ୍ରଶ୍ନ ମଧ୍ୟ ଗୁରୁତ୍ୱ ଲାଭ କଲା । କାରଣ ୧୯୪୧ ମସିହାରୁ ସୁଭାଷଙ୍କ ଉପରେ ସରକାରର ଯେଉଁ କ୍ରୋଧ ପୁଞ୍ଜିଭୂତ ହୋଇ ରହିଥିଲା, ତାହା ବିଦ୍ରୋହୀ ଭାରତୀୟ ସୈନ୍ୟମାନଙ୍କ ଦ୍ୱାରା ଗଠିତ ମୁକ୍ତି ବାହିନୀ ବା ଆଜାଦ୍ ହିନ୍ଦ ଫୌଜ ହେବା ଫଳରେ ବହୁଗୁଣିତ ହୋଇ ଯାଇଥିଲା । ସେଥିରେ ପୁଣି ସେହି ମୁକ୍ତିବାହିନୀ ଦ୍ୱାରା

ଆସାମ ରଣାଙ୍ଗନରେ ବ୍ରିଟିଶ୍ ସୈନ୍ୟମାନଙ୍କର ବାରମ୍ବାର ପରାଜୟ ବରଣ ସରକାରକୁ ସାରା ବିଶ୍ୱରେ ବିଶେଷତଃ ଭାରତବାସୀଙ୍କ ନିକଟରେ ବିଶେଷ ଅପମାନିତ ଓ ହାସ୍ୟାସ୍ପଦ କରି ସାରିଥିଲା । ସୁଯୋଗ ଆସିବା ସଙ୍ଗେ ସଙ୍ଗେ ଏ ସବୁର ପ୍ରତିଶୋଧ ନେବାକୁ ଯେ ସରକାର ଆହତ ବ୍ୟାଘ୍ର ଭଳି ମୁକ୍ତି ବାହିନୀ ଉପରେ ଲମ୍ଫ ପ୍ରଦାନ କରିବ ଏଥିରେ କାହାରି ତିଳେ ହେଲେ ସନ୍ଦେହ ନ ଥିଲା । ନେତାଜୀ ସେ ସମ୍ପର୍କରେ ସ୍ପଷ୍ଟ ନିର୍ଦ୍ଦେଶ ଦେଇଥିଲେ ଯେ ''ଯୁଦ୍ଧ ସରଞ୍ଜାମ ଅଭାବରେ ଜାତୀୟ ବାହିନୀ ଯୁଦ୍ଧ ବନ୍ଦ କରିଦେଇ ପାରେ କିନ୍ତୁ କୌଣସି ପରିସ୍ଥିତିରେ ଆତ୍ମ ସମର୍ପଣ କରିବ ନାହିଁ । ଜାତୀୟ ବାହିନୀକୁ ବନ୍ଦୀ କରାଯାଇପାରେ କିନ୍ତୁ ଅଫିସର୍ ବା ସୈନ୍ୟମାନେ କୌଣସି ପ୍ରକାରେ ପରାଜୟ ସ୍ୱୀକାର କରିବେ ନାହିଁ କିମ୍ବା ଧଳା ପତାକା ଦେଖାଇବେ ନାହିଁ । ଜାତୀୟ ବାହିନୀ ଚିରଦିନ ଦେଶାତ୍ମବୋଧର ଉଜ୍ଜ୍ୱଳ ବର୍ତ୍ତିକା ଜଳାଇ ରଖିବ ।'' ''ଆମ୍ଭେମାନେ ପ୍ରଥମ ଯୁଦ୍ଧରେ ପରାସ୍ତ ହୋଇଛୁ ମାତ୍ର, 'We have lost only the first round of our fight, ସୁତରାଂ ଆମ୍ଭେମାନେ ସେଥିପାଇଁ ଭାଙ୍ଗି ପଡ଼ିବାର କିଛି ନାହିଁ । ଦିଲ୍ଲୀଠାରେ ପହଞ୍ଚିବାକୁ ଅସଂଖ୍ୟ ପଥ ରହିଛି । ଦିଲ୍ଲୀର ପଥ, ସ୍ୱାଧୀନତାର ପଥ ।''

ସାଧାରଣ ଯୁଦ୍ଧରେ ଜୟ କିମ୍ବା ପରାଜୟ ଯୁଦ୍ଧକୁ ଏକ ନିର୍ଣ୍ଣାୟକ ସୀମାରେ ପହଞ୍ଚାଇ ଦେଇ ପାରେ । କିନ୍ତୁ କୌଣସି ସ୍ୱାଧୀନତା ଯୁଦ୍ଧରେ ତାହା ହିଂସା ହେଉ ବା ଅହିଂସା ହେଉ ଅର୍ଥାତ୍ ପ୍ରଥମ ସ୍ୱାଧୀନତା ଯୁଦ୍ଧ ବା ସିପାହୀ ବିଦ୍ରୋହ ହେଉ ବା ଅହିଂସ ଅସହଯୋଗ, ଲବଣ ସତ୍ୟାଗ୍ରହ ହେଉ କିମ୍ବା ଏପରିକି ହିଂସା- ଅହିଂସ ମିଶ୍ରିତ ଭାରତ ଛାଡ଼ ଆନ୍ଦୋଳନ ହେଉ ସେଥିରେ ପରାଜୟ ବା ପ୍ରତ୍ୟାହାର ସବୁକିଛି ସାମୟିକ ଏବଂ ତାହା ପ୍ରକୃତ ସ୍ୱାଧୀନତା ପ୍ରାପ୍ତିର ସହାୟକ ଥିଲା । ଆଜାଦ୍ ହିନ୍ଦ୍ ଫୌଜର ଯୁଦ୍ଧ ଓ ପରେ ସୈନ୍ୟ ବାହିନୀ ବିଦ୍ରୋହ ତାହାକୁ ତ୍ୱରାନ୍ୱିତ କରିଥିଲା ଓ ସଫଳ କରିଥିଲା । ପରାଜୟକୁ ସାମୟିକ ପରାଜୟ ବୋଲି କୁହାଯାଏ । କାରଣ ତାହା ନିଷ୍ଫଳ ହୁଏ ନାହିଁ । ବରଂ ତାହା ଶତ୍ରୁ ପକ୍ଷକୁ ଦୁର୍ବଳ କରେ ଏବଂ ଚରମ ବିଜୟର ପଥ ପରିଷ୍କାର କରିଦେଇଥାଏ ।'' ପରାଜୟ ବରଣ କରିବା ଓ ପରାଜୟକୁ ସ୍ୱୀକାର କରିବା ସମାନ ଘଟଣା ନୁହେଁ । ପରାଜୟ ବରଣ କରି ତାହାକୁ ସ୍ୱୀକାର ନକରିବା ଅର୍ଥ ହେଉଛି ଯେ ସେ ପରାଜିତ ହୋଇଥିଲେ ମଧ୍ୟ ପୁନର୍ବାର ଶକ୍ତି ସଂଗ୍ରହ କରି ଯୁଦ୍ଧ କରିବାକୁ ସମର୍ଥ ବୋଲି ପ୍ରତିପାଦିତ କରିବା ପାଇଁ ଓ ଶତ୍ରୁ ଯେ ତାହା ଅପେକ୍ଷା ଅଧିକ ଶକ୍ତିଶାଳୀ ନୁହେଁ ଏହା ଘୋଷଣା କରିବା ଉଦ୍ଦେଶ୍ୟରେ ପରାଜୟ ସ୍ୱୀକାର କରେ ନାହିଁ । ଇମ୍ଫାଲ ପରାଜୟ ଯେ ସାମୟିକ ଥିଲା ଏହା ଆଜାଦ୍ ହିନ୍ଦ୍ ଫୌଜର ଜବାନ୍‌ମାନେ ଅନୁକୂଳ ପାଗ ହେବା ପରେ ୧୯୪୫ ମାର୍ଚ୍ଚ ମାସରେ ପୁନର୍ବାର ଆସାମ ରଣାଙ୍ଗନାକୁ ଅଭିଯାନ କରି କିପରି ବିଜୟ ହାସଲ କରିଥିଲେ, ତାହା ଅନ୍ୟ କେହି ନୁହେଁ ଜଣେ ସୁଭାଷ ବିରୋଧୀ ବ୍ରିଟିଶ୍ ଐତିହାସିକ ମଧ୍ୟ "War of the springing Tiger" ରେ ମୁକ୍ତ କଣ୍ଠରେ

ସ୍ୱୀକାର କରିଛନ୍ତି । ସେ ଲେଫ୍ଟନାଣ୍ଟ କର୍ଣ୍ଣେଲ୍ ଗୁରୁଜିତ ସିଂ ଧୀଲନ୍‌ଙ୍କର ଗୋଟିଏ "Battle Report" ଯୁଦ୍ଧ ବିବରଣୀକୁ ପ୍ରକାଶ କରି ଆଜାଦ୍ ହିନ୍ଦ ଫୌଜର କେବଳ ବିଜୟ ନୁହେଁ, ସେମାନଙ୍କ ନିକଟରେ ଉନ୍ନତ ଯୁଦ୍ଧାସ୍ତ୍ର ନଥିଲେ ମଧ୍ୟ କେବଳ ଦେଶପ୍ରେମ ଓ ସୁଭାଷଙ୍କ ପ୍ରତି ଅବିଚଳିତ ଆନୁଗତ୍ୟ କିପରି ବ୍ରିଟିଶ୍ ସୈନ୍ୟଙ୍କୁ ହଟାଇ ଦେବାରେ ଆଜାଦ୍ ହିନ୍ଦ୍ ଫୌଜକୁ ଶକ୍ତିଦାନ କରିଥିଲା, ତାହା ମଧ୍ୟ ସ୍ପଷ୍ଟ ଭାଷାରେ ଉଲ୍ଲେଖ କରିଅଛନ୍ତି ।

''ମୃତ୍ୟୁଂଜୟୀ ମାନଙ୍କର ଆକ୍ରମଣ'' (Charge of the Immortals) ଜି.ଏସ୍. ଧୀଲନ୍ ୮୦୩ ୟୁନିଟ୍‌ର କମାଣ୍ଡର ସେହି ଯୁଦ୍ଧ ବିବରଣୀର ବର୍ଣ୍ଣନା କରି ଲେଖିଛନ୍ତି:- ''ତାହା ଥିଲା ଏକ ବିସ୍ତୀର୍ଣ୍ଣ ସମତଳ ଭୂମି-ବୃକ୍ଷଲତାର ଆଚ୍ଛାଦାନ ଥିବାରୁ ଆମ ଦୃଷ୍ଟି ପଥରେ କୌଣସି ପ୍ରତିବନ୍ଧକ ନଥିଲା । ତିନିଗୋଟି ଗୁରୁତ୍ୱ ପୂର୍ଣ୍ଣ ରାସ୍ତା ମିଳିତ ହୋଇଥିଲା ଏକ ଅଗଭୀର ଖାଲୁଆ ପଡ଼ିଆରେ । ତାହାର ଉତ୍ତର ପୂର୍ବ ଦିଗରେ ଚାରି ମାଇଲ୍ ଦୂରରେ ଅବସ୍ଥିତ ଚଉଦ ଶହ ତେଇଶ ଫୁଟ ଉଚ୍ଚ ଗୋଟିଏ ଛୋଟ ପାହାଡ଼ । ସେହି ପାହାଡ଼ ପଛରେ ଶତ୍ରୁ ପକ୍ଷର ଘାଟି ସେଠାରେ । ତିନିଛକି ରାସ୍ତାକୁ ମୁହଁ କରି ତୋପ କମାଣ ଖଞ୍ଜା ଯାଇଛି ଯେପରିକି ଆମର ସୈନ୍ୟମାନେ ସେ ଦିଗକୁ ଯାଇ ନପା ରନ୍ତି । ତାହା ସମଗ୍ର ସମତଳ ଭୂମିକୁ ମଧ୍ୟ ସୁରକ୍ଷା ପ୍ରଦାନ କରିଥିଲା । ଲେଫ୍ଟନାଣ୍ଟ ଜ୍ଞାନ ସିଂ ବିସ୍ତଙ୍କ ନେତୃତ୍ୱରେ ଆଜାଦ୍ ହିନ୍ଦ୍ ଫୌଜର ଟ୍ରେନିଂ ସ୍କୁଲ୍‌ରେ ଶିକ୍ଷାପ୍ରାପ୍ତ ମାତ୍ର ୯୮ (ଅଠାନବେ) ଜଣ ମୁକ୍ତି ସଂଗ୍ରାମୀ ଆମ ଘାଟିରେ ଅବସ୍ଥାପିତ ହୋଇଥିଲେ । ସେମାନଙ୍କ ପାଖରେ ହାଲୁକା ମେସିନ୍‌ଗନ୍ ମଧ୍ୟ ନଥିଲା । ଥିଲା କେବଳ ପୁରୁଣା ଶକ୍ତିଶାଳୀ ରାଇଫେଲ୍ । ସେୟାକୁ ଧରି ଶତ୍ରୁ ପକ୍ଷ ଉପରେ କରାଯିବ ଆକ୍ରମଣ ଓ ନିଜର ଆତ୍ମରକ୍ଷା (Both Defence and offence) ରାଇଫଲ୍ ବ୍ୟତୀତ ରହିଥିଲା ଦୁଇଟି ଟ୍ୟାଙ୍କ ବିଧ୍ୱଂସୀ ମାଇନ୍ । ଶତ୍ରୁ ପକ୍ଷର ଅଗ୍ରଗତିକୁ ବାଧା ଦେବା ପାଇଁ ଯଥେଷ୍ଟ ।''

ଆମ ସୈନ୍ୟମାନେ ଦୁଇଦିନ କାଳ ନିଜ ନିଜ ପୋଜିସନ୍‌ରେ ଶତ୍ରୁପକ୍ଷକୁ ଅପେକ୍ଷା କରିବା ସତ୍ତ୍ୱେ ଶତ୍ରୁ ପକ୍ଷ ଆଗେଇବାକୁ ସାହସ କଲେ ନାହିଁ । ୧୯୪୫ ମାର୍ଚ୍ଚ ୧୬ ତାରିଖରେ ସକାଳୁ ସକାଳୁ ଶତ୍ରୁ ପକ୍ଷ ବିମାନରୁ ଅନବରତ ବୋମାମାଡ଼ ଓ ମେସିନ୍‌ଗନ୍ ଚାଳନା ଚାଲିଲା । ଦିନ ୧୧ଟାରେ ବୋମା ଗୁଳି ନିଃଶେଷ କରି ବିମାନ ଗୁଡ଼ିକ ଫେରିଗଲା । ତା' ପରେ ପାହାଡ଼ ପଛରୁ ଚାଲିଲା ଆମ ଆଡ଼କୁ ଗୁଳି ଚାଳନା ଏବଂ ୧୩ ଗୋଟି ଟ୍ୟାଙ୍କରୁ, ୧୧ଗୋଟି ଗୋଲନ୍ଦାଜ ଗାଡ଼ି ଓ ୧୦ଗୋଟି ଟ୍ରକ୍ ସେହି ତ୍ରିଛକି ଖାଲୁଆ ପଡ଼ିଆରେ ଅଟକିଲେ ଓ ସେଥିରୁ ଆମ ଆଡ଼କୁ ଲକ୍ଷ୍ୟ କରି ବିସ୍ଫୋରକ ଦ୍ରବ୍ୟ ନିକ୍ଷେପ କରାଗଲା । କିନ୍ତୁ ଆମର ଜବାନ୍ ମାନେ ଭୟଭୀତ ହୋଇନଥିଲେ । କାରଣ ସେମାନେ ଟ୍ରେଞ୍ଚ ଭିତରେ ନିରାପଦ ରହିଯାଇ ଅପେକ୍ଷା କରିଥିଲେ ଶତ୍ରୁପକ୍ଷର ପଦାତିକ ବାହିନୀକୁ । କିନ୍ତୁ ପଦାତିକ ବାହିନୀ ବଦଳରେ ଟ୍ୟାଙ୍କରୁ ଅଗ୍ନିବୃଷ୍ଟି କରାଗଲା । ଆମେ ମଧ୍ୟ ଟ୍ୟାଙ୍କ କୁ ଲକ୍ଷ୍ୟ କରି

ବିସ୍ଫୋରକ ନିକ୍ଷେପ କଲୁ । ଦୁର୍ଭାଗ୍ୟବଶତଃ ତାହା ବିସ୍ଫୋରଣ ହେଲା ନାହିଁ । କିନ୍ତୁ ଟ୍ୟାଙ୍କର ଅଗ୍ରଗତି ବନ୍ଦ ହୋଇଗଲା । କିନ୍ତୁ ପିଲବକ୍ସ ଭଳି ସେଥିରୁ ଉଦ୍‌ଗାରିତ ହେଲା ବିସ୍ଫୋରକ ଦ୍ରବ୍ୟ । ଲେଫ୍‌ଟନାଣ୍ଟ ଦେଖିଲେ ଯେ ଶତ୍ରୁପକ୍ଷର ମେସିନ୍ ଗନ୍, ଗ୍ରେନେଡ୍ କୁ କଦାପି ଆମ ରାଇଫେଲ ଦବେଇ ପାରିବ ନାହିଁ । ଟ୍ରେଞ୍ଚ ଭିତରେ ରହି କେବଳ ମୃତ୍ୟୁ କିମ୍ବା ବନ୍ଦୀ ଜୀବନ ବରଣ କରିବାକ ପଡ଼ିବ । ସେ ଶତ୍ରୁ ଉପରେ 'charge' ବା ଆକ୍ରମଣ କରିବାକୁ ନିର୍ଦ୍ଦେଶ ଦେବା ସଙ୍ଗେ ସଙ୍ଗେ ସ୍ଲୋଗାନ୍ ଦେବା ଆରମ୍ଭ କଲେ, ''ନେତାଜୀ କି ଜୟ'', 'ଇନ୍‌କ୍ୱିଲାବ୍-ଜିନ୍ଦାବାଦ୍', ଆଜାଦ୍ ହିନ୍ଦ୍- ଜିନ୍ଦାବାଦ୍ ଓ ଚଲୋ ଦିଲ୍ଲୀ । ଟ୍ରେଞ୍ଚ ଭିତରୁ ବାହାରି ଆସି ଅନ୍ୟ ଜବାନ ମାନେ ଉଚ୍ଚସ୍ୱରରେ ସେହି ସ୍ଲୋଗାନ ଦେଇ ଶତ୍ରୁ ପକ୍ଷର ଗୁଳି ଆବାଜ ମଧ୍ୟ ବୁଡ଼ାଇ ଦେଲେ (Slogans which echoed above the enemy fire) । ଶତ୍ରୁ ପକ୍ଷର ଦ୍ରୁତତର ଗୁଳିଗୋଳା ବିରୁଦ୍ଧରେ ସେହି ସ୍ଲୋଗାନ୍ ଗୁଡ଼ିକ ଥିଲା ଆମ୍ଭମାନଙ୍କର ପ୍ରଧାନ ଅସ୍ତ୍ର । ଭାରତ ଓ ଭାରତର ସ୍ୱାଧୀନତା ନାମରେ ସ୍ଲୋଗାନ୍ ଦେଇ ଆମେ ଶତ୍ରୁ ପକ୍ଷର ଟ୍ରକ୍ ଗୁଡ଼ିକ ଉପରେ ଘନ ଘନ ଆକ୍ରମଣ କଲୁ । ଶତ୍ରୁପକ୍ଷ ଗାଡ଼ିରୁ ଓହ୍ଲାଇ ପଡ଼ିଲେ । ହାତାହାତି ଯୁଦ୍ଧ ଆରମ୍ଭ ହେଲା । ପୁରା ଦୁଇ ଘଣ୍ଟା ଚାଲିଲା ସେ ଯୁଦ୍ଧ । ଆମର ଚାଳିଶି ଜଣ ଜବାନ୍ ଶହିଦ୍ ହେଲେ । ଆମେ ମଧ୍ୟ ସମସଂଖ୍ୟକ ଶତ୍ରୁକୁ ହତ୍ୟା କଲୁ । ଆମ ଜବାନ୍ ମାନଙ୍କର ଅପରାଜେୟ ଆତ୍ମଶକ୍ତି ଶତ୍ରୁ ପକ୍ଷକୁ ଏଭଳି ଆତଙ୍କିତ କରିଦେଲା ଯେ ଶତ୍ରୁପକ୍ଷ ପଛକୁ ହଟିବାକୁ ଲାଗିଲେ । Their unconquerable spirit harrased the enemy so much he (they) started retreating. page- 168

ଠିକ୍ ସେତିକିବେଳେ ଲେଫ୍‌ଟନାଣ୍ଟ ଜ୍ଞାନ ସିଂ ଥାର୍ଡ ପ୍ଲାଟୁନ୍ କମାଣ୍ଡର ୨/ଲେ: ରାମ ସିଂଙ୍କୁ ସେଠାକୁ ଡକାଇ ତାଙ୍କୁ ନିର୍ଦ୍ଦେଶ ଦେବାବେଳେ ଶତ୍ରୁ ପକ୍ଷର ଏକ ଗୁଳି ଜ୍ଞାନ ସିଂଙ୍କ କପାଳ ଭେଦ କରିବାରୁ ସେ ସେହିଠାରେ ତଳେ ପଡ଼ିଗଲେ । ଲେଫ୍‌ଟନ୍ୟାଣ୍ଟ ରାମ ସିଂ ଅବଶିଷ୍ଟ ସୈନ୍ୟଙ୍କୁ ସଙ୍ଗଠିତ କରି ସେଠାରେ ପହଞ୍ଚିବା ବେଳକୁ ସେହି ଦୁର୍ଭାଗ୍ୟଜନକ ଘଟଣା ଘଟିସାରିଥିଲା । ଏବଂ ସେ ରାମ ସିଂଙ୍କୁ ଆଉ ଅର୍ଡ଼ର ଦେବା ଅବସ୍ଥାରେ ନଥିଲେ । ଜ୍ଞାନ ସିଂହ ତାଙ୍କର ସୈନିକମାନଙ୍କ ସହ ମଧ୍ୟ ମୃତ୍ୟୁ ବରଣ କରିବେ ବୋଲି ସର୍ବଦା ସେମାନଙ୍କୁ କହୁଥିଲେ । ତାଙ୍କର ସେହି ଅଭିଳାଷ ପୂରଣ ହୋଇଥିଲା । ସେ ବାସ୍ତବରେ ସେମାନଙ୍କର ଜୀବନ ଓ ମୃତ୍ୟୁର ସହଯାତ୍ରୀ ହେଲେ । ପୃଥିବୀ ଥିବା ପର୍ଯ୍ୟନ୍ତ ତାଙ୍କର ସେହି ଗୌରବ ଜନକ କାର୍ଯ୍ୟ ଇତିହାସର ସାକ୍ଷୀ ହୋଇ ରହିବ । ଲେଫ୍‌ଟନାଣ୍ଟ ଜ୍ଞାନ ସିଂହ ଓ ତାଙ୍କର ସୈନିକମାନେ ମହାନ୍ ନେତା ନେତାଜୀଙ୍କ ଆଦର୍ଶର ଉପଯୁକ୍ତ ଦାୟାଦ ହୋଇ ପାରିଥିଲେ । ସେମାନେ ଯୁଦ୍ଧରତ ଅବସ୍ଥାରେ ମୃତ୍ୟୁ ବରଣ କରି ଆମ ସମସ୍ତଙ୍କ ପାଇଁ ଏକ ଆଦର୍ଶ ପ୍ରତିଷ୍ଠା କରି ଦେଇଗଲେ । ସେହି ବୀରମାନଙ୍କର ଗୌରବୋଜ୍ଜ୍ୱଳ ଆଦର୍ଶ ସ୍ୱାଧୀନ ଭାରତରେ ପୁରୁଷାନୁକ୍ରମେ ପୂଜିତ ହେବ ଏବଂ ସ୍ୱାଧୀନ ଭାରତର ଭବିଷ୍ୟତ ବଂଶଧରଙ୍କୁ ସର୍ବଦା ଉଦ୍‌ବୁଦ୍ଧ କରୁଥିବ । (ଜି.ଏସ୍.ଧିଲନ୍, ଲେଫ୍‌ଟନାଣ୍ଟ କର୍ଣ୍ଣେଲ୍)

କିନ୍ତୁ ''ଆଜାଦ୍ ହିନ୍ଦ ଫୌଜ''ର ପ୍ରତ୍ୟାବର୍ତ୍ତନ ପରେ ପରେ ବ୍ରିଟିଶ ସୈନ୍ୟମାନେ ବର୍ମା ଆକ୍ରମଣ ଆରମ୍ଭ କରିଦେଲେ । ଆଜାଦ୍ ହିନ୍ଦ ଫୌଜ ଚିନ୍ଦ୍ୱିନ ଓ ଇରାବତୀ ଉପତ୍ୟକାରୁ ପ୍ରତ୍ୟାବର୍ତ୍ତନ କରିବା ବେଳେ ଅଶେଷ କ୍ଳେଶ ବରଣ କରିଥିଲେ । ତଥାପି ସେମାନେ ବ୍ରିଟିଶର ବର୍ମା ପୁନଦର୍ଖଲ ପ୍ରଚେଷ୍ଟା ବିରୁଦ୍ଧରେ କମ୍ ବୀରତ୍ୱ ପୂର୍ଣ୍ଣ ଲଢ଼େଇ ଲଢ଼ି ନାହାନ୍ତି । ଏପରିକି ସ୍ୱୟଂ ନେତାଜୀ ମଧ୍ୟ ନିଜ ଜୀବନକୁ ବିପନ୍ନ କରି ଯୁଦ୍ଧ କ୍ଷେତ୍ରରେ ଉପସ୍ଥିତ ରହୁଥିଲେ । ପୂର୍ବରୁ ଜୁଲାଇ ୧୪ ତାରିଖରେ ଗାନ୍ଧିଜୀଙ୍କ ଉଦ୍ଦେଶ୍ୟରେ ନେତାଜୀ ଯେଉଁ ବେତାର ଭାଷଣ ଦେଇଥିଲେ ତାହାଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଭାରତର ସ୍ୱାଧୀନତା ସଂଗ୍ରାମ ଓ ସେଥିରେ ଗାନ୍ଧୀଜୀଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ ଉଲ୍ଲେଖ କରି ସେ କହିଥିଲେ, ''ମୁଁ ଅତ୍ୟନ୍ତ ସଚ୍ଚୋଟ ଭାବରେ ବିଶ୍ୱାସ କରେ ଯେ ଭାରତକୁ ବିଭାଜିତ ନ କରି ଇଂରେଜମାନେ କଦାପି ଦେଶ ପରିତ୍ୟାଗ କରିବେ ନାହିଁ । ଆମେରିକାର ଏକମାତ୍ର ଉଦ୍ଦେଶ୍ୟ ଯୁଦ୍ଧରେ ଜୟଲାଭ କରି ପୃଥିବୀରେ ତା'ର ସାମ୍ରାଜ୍ୟ ବୃଦ୍ଧି କରିବା ଏବଂ ବିଂଶ ଶତାବ୍ଦୀକୁ ଆମେରିକାର ଶତାବ୍ଦୀରେ ପରିଣତ କରିବା । ଭାରତବାସୀ ରକ୍ତନଦୀ ସନ୍ତରଣ ନକଲେ କଦାପି ଦେଶକୁ ସ୍ୱାଧୀନ କରିପାରିବେ ନାହିଁ । ୧୯୪୧ରେ ଗୃହତ୍ୟାଗ କରିବା ପରଠାରୁ ଭାରତର ସ୍ୱାଧୀନତା ପାଇଁ ସେ ଯେଉଁ ପଦକ୍ଷେପ ଗ୍ରହଣ କରି ଆସିଛନ୍ତି ତାହାର ଯୌକ୍ତିକତା ଗାନ୍ଧୀଜୀଙ୍କୁ ବୁଝାଇଥିଲେ । ଏହି ଯୁଦ୍ଧ (୨ୟ ମହାଯୁଦ୍ଧ) ଭାରତର ସ୍ୱାଧୀନତା ଅର୍ଜନ ପାଇଁ ଯେଉଁ ସୁବର୍ଣ୍ଣ ସୁଯୋଗ ଆଣି ଦେଇଛି, ତାହା ଆଉ ଥରେ ଆମ ଜୀବଦ୍ଦଶାରେ ଆସିପାରିବ ବୋଲି ଯଦି ମୁଁ ଦେଖୁଥାନ୍ତି, ତେବେ କଦାପି ଗୃହତ୍ୟାଗ କରି ନଥାନ୍ତି । ମୁଁ ଆପଣଙ୍କୁ ନମ୍ରତା ସହକାରେ ଜଣାଉ ଅଛି ଯେ ମୁଁ ଯାହା ଯାହା କରି ଆସିଛି ତାହା କେବଳ ଦେଶର ମଙ୍ଗଳ ଉଦ୍ଦେଶ୍ୟରେ ହିଁ କରିଅଛି । ବିଶ୍ୱଦରବାରରେ ଭାରତର ସମ୍ମାନ ବୃଦ୍ଧି କରିବା ପାଇଁ ଏବଂ ଭାରତର ସ୍ୱାଧୀନତା ସମ୍ଭାବନାକୁ ବଳ ଦେବା ପାଇଁ କରିଅଛି ।''

''ବର୍ତ୍ତମାନ ଭାରତର ଶେଷ ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହୋଇଛି । ବର୍ତ୍ତମାନ ଆଜାଦ୍ ହିନ୍ଦ୍ ଫୌଜର ବୀର ସେନାନୀ ମାନେ ଭାରତର ପବିତ୍ର ମାଟିରୁ ବ୍ରିଟିଶ୍ ବିତାଡ଼ନରେ ଲାଗି ପଡ଼ି ଅଛନ୍ତି । ଭାରତରୁ ଶେଷ ବ୍ରିଟିଶ୍ ସୈନ୍ୟ ବିତାଡ଼ିତ ନ ହେବା ପର୍ଯ୍ୟନ୍ତ ଏବଂ ଭାରତର ସ୍ୱାଧୀନତା ହାସଲ ନ ହେବା ପର୍ଯ୍ୟନ୍ତ ଏହି ସଂଗ୍ରାମ ଚାଲୁ ରହିବ ।''

''ହେ, ଜାତିର ଜନକ, ଭାରତର ଏହି ଶେଷ ଲଢ଼େଇରେ ଆମେ ଆପଣଙ୍କ ଆଶୀର୍ବାଦ କାମନା କରୁଅଛୁଁ ।''

ପ୍ରଥମେ ଜର୍ମାନୀରେ ଗଠିତ ଫ୍ରି ଇଣ୍ଡିଆ ଲିଜିୟନ୍ ଓ ପରେ ପୂର୍ବ ଏସିଆରେ ଗଠିତ ଆଜାଦ୍ ହିନ୍ଦ୍ ସରକାର ଓ ଫୌଜର ପରିଚାଳନା ପାଇଁ ନେତାଜୀ ଜର୍ମାନୀ ଓ ପୂର୍ବ ଏସିଆ ଦେଶମାନଙ୍କ ଠାରୁ ଯେଉଁ କୋଟି କୋଟି ଡଲାର ଋଣ ସ୍ୱରୂପ ନେଇଥିଲେ ତାକୁ ପରିଶୋଧ କରିବାକୁ ଭୁଲି ନଥିଲେ । ପ୍ରବାସୀ ଭାରତୀୟମାନଙ୍କ ଠାରୁ ସଂଗୃହୀତ ବିପୁଳ ପରିମାଣର ଅର୍ଥ ଓ ସୁନା ପ୍ରଭୃତି ବହୁ ମୂଲ୍ୟବାନ ଧାତୁର ନିଲାମ ଲବ୍ଧ ଧନରୁ ସେହି ଋଣ ବହୁଳାଂଶରେ

ପରିଶୋଧ କରିଥିଲେ । ସେହି ଋଣ ଆଜାଦ୍ ହିନ୍ଦ ସରକାର ନାମରେ ଆସିଥିଲା । ସ୍ୱାଧୀନତା ପ୍ରାପ୍ତି ପରେ ମଧ୍ୟ ବଙ୍ଗଳା ଓ ଭାରତର ଅନ୍ୟାନ୍ୟ ଅଞ୍ଚଳରୁ ପାଣ୍ଠି ସଂଗୃହୀତ ହୋଇ ଅବଶିଷ୍ଟ ଋଣ ପରିଶୋଧ କରାଯାଇଥିଲା ବୋଲି ପ୍ରଫେସର ସମର ଗୁହ ପ୍ରକାଶ କରିଅଛନ୍ତି ।

-୬-

୧୯୪୫ ମସିହାରେ ଜେନେରାଲ କିଆନିଙ୍କ ନେତୃତ୍ୱରେ ଇରାବତୀ ଉପତ୍ୟକାକୁ ଯେଉଁ ସୈନ୍ୟ ଦଳ ପୁନର୍ବାର ଯାଇଥିଲେ ସେମାନେ ବିଶେଷ ବିପନ୍ନ ହେବାରୁ ନେତାଜୀ ନିଜେ ସେହି ଯୁଦ୍ଧ କ୍ଷେତ୍ରକୁ ବାହାରି ଯାଇଥିଲେ ଏବଂ ସେଠାରେ ସୈନ୍ୟ ପରିଚାଳନାର ତଦାରଖ କରିଥିଲେ । କିନ୍ତୁ ବ୍ରିଟିଶ୍ ସୈନ୍ୟଙ୍କ ଦ୍ୱାରା ରେଙ୍ଗୁନ୍ ଦଖଲ ଆସନ୍ନ ହେବାରୁ ସେଠାରୁ ସୈନ୍ୟ ପ୍ରତ୍ୟାହାର କରିବା ଏବଂ ନେତାଜୀ ସେଠାରୁ ଚାଲିଯିବା ପାଇଁ ଜାପାନ କର୍ତ୍ତୃପକ୍ଷ ତାଙ୍କୁ ଅନୁରୋଧ କରିଥିଲେ । କିନ୍ତୁ ଝାନ୍ସୀରାଣୀ ରେଜିମେଣ୍ଟ ପାଇଁ ପରିବହନ ବ୍ୟବସ୍ଥା ନହେବା ପର୍ଯ୍ୟନ୍ତ ସେ ରେଙ୍ଗୁନ୍ ପରିତ୍ୟାଗ କରିବେ ନାହିଁ ବୋଲି ସ୍ପଷ୍ଟ ଜବାବ ଦେବାରୁ ଜାପାନୀ କର୍ତ୍ତୃପକ୍ଷ ସେମାନଙ୍କୁ ପରିବହନ କରିବାର ବ୍ୟବସ୍ଥା କରିଥିଲେ । ନେତାଜୀ ଝାନ୍ସୀରାଣୀ ରେଜିମେଣ୍ଟର ସୈନ୍ୟ ଓ ନିଜର ବ୍ୟକ୍ତିଗତ ଷ୍ଟାଫ୍‌ଙ୍କ ସହ ବ୍ୟାଙ୍କକ୍ ଅଭିମୁଖରେ ଯାତ୍ରା ଆରମ୍ଭ କରିଥିଲେ । ରାସ୍ତା ଅତ୍ୟନ୍ତ ଦୁର୍ଗମ ଓ ବିପଦ ପୂର୍ଣ୍ଣ ଥିଲା । ରାସ୍ତାରେ ଗୋଟାକୁ ଗୋଟା ମଟର ଯାନ ଅଚଳ ହୋଇଗଲା ଏବଂ ବନ୍ୟାପ୍ଲାବିତ ନଦୀନାଳ ପାରିହେବା ଅସମ୍ଭବ ହୋଇ ପଡ଼ିଲା । ତେଣୁ ସେ ଯାନ ବାହନ ପରିତ୍ୟାଗ କରି ପଦବ୍ରଜରେ ଯାତ୍ରା ଆରମ୍ଭ କଲେ । ଅତ୍ୟନ୍ତ କଷ୍ଟକର ଯାତ୍ରା ଓ ସେଥିରେ ଯାତ୍ରାପଥରେ ବ୍ରିଟିଶ୍ ବିମାନର ବୋମା ବର୍ଷଣ ସତ୍ତ୍ୱେ ନେତାଜୀ ଯେଉଁ ଅଦମନୀୟ ସାହସ ଓ ଅବର୍ଣ୍ଣନୀୟ ଶାରୀରିକ ଶକ୍ତି ଓ ନେତୃତ୍ୱର ସର୍ବୋତ୍କୃଷ୍ଟ ଗୁଣ ଓ ଯୋଗ୍ୟତାର ପରିଚୟ ପ୍ରଦାନ କରିଥିଲେ, ବିଶ୍ୱ ଇତିହାସରେ ସେଭଳି ବ୍ୟକ୍ତିର ୨ୟ ଦୃଷ୍ଟାନ୍ତ ଆଜି ପର୍ଯ୍ୟନ୍ତ ଦୃଷ୍ଟି ଗୋଚର ହୋଇନାହିଁ ।

ପ୍ରାୟ ଏକମାସର ପଦଯାତ୍ରା ପରେ ନେତାଜୀଙ୍କ ଦଳଟି ବ୍ୟାଙ୍କକ୍‌ରେ ପହଞ୍ଚିଗଲା । ବର୍ମାବାସୀଙ୍କ ବୀରତ୍ୱ ଓ ଆତ୍ମତ୍ୟାଗର ଭୂୟସୀ ପ୍ରଶଂସା କରି ନେତାଜୀ ସେମାନଙ୍କ ଉଦ୍ଦେଶ୍ୟରେ ଦେଇଥିବା ବିଦାୟ ବାର୍ତ୍ତାରେ କହିଥିଲେ:-

"ଆମେ ସ୍ୱାଧୀନତାର ପ୍ରଥମ ସଂଗ୍ରାମରେ ପରାଜୟ ବରଣ କରିଥିଲେ ସୁଦ୍ଧା ଯୁଦ୍ଧର ପ୍ରଥମ ପର୍ଯ୍ୟାୟ ଶେଷ ହୋଇନାହିଁ । ଏହିଭଳି ବହୁବାର ସଂଗ୍ରାମ କରିବାକୁ ପଡ଼ିବ । ଭାରତର ଏହି ଶେଷ ସ୍ୱାଧୀନତା ସଂଗ୍ରାମର ଇତିହାସ ଯେତେବେଳେ ରଚନା କରାଯିବ, ସେଥିରେ ବର୍ମାବାସୀ ଏକ ସମ୍ମାନଜନକ ସ୍ଥାନ ଅଧିକାର କରିବେ । ଏହି ମୁକ୍ତି ଯୁଦ୍ଧ ଚଳାଇ ରଖିବା ପାଇଁ ମୋତେ ବର୍ମା ପରିତ୍ୟାଗ କରିବାକୁ ପଡୁଛି । କିନ୍ତୁ ଭାରତର ମୁକ୍ତି ପାଇଁ ମୋର ପ୍ରତିଜ୍ଞା ଅଟଳ । My unshakable faith in India's early emancipation remain unimpaired !"

ଆଜାଦ୍ ହିନ୍ଦ୍ ଫୌଜ ଉଦ୍ଦେଶ୍ୟରେ ସେ କହିଲେ, ''ଏହି ଜଟିଳ ପରିସ୍ଥିତିରେ ଆପଣମାନଙ୍କ ପାଇଁ ମୋର ଗୋଟିଏ ମାତ୍ର ବାର୍ତ୍ତା- ସ୍ୱଳ୍ପ କାଳ ପାଇଁ ଯଦି ଆପଣମାନଙ୍କୁ ପରାଜୟ ବରଣ କରିବାକୁ ହୋଇଥାଏ, ତେବେ 'ଜାତୀୟ ତ୍ରିରଙ୍ଗା'କୁ ଦୃଢ଼ ମୁଷ୍ଟିରେ ଧାରଣ କରି ଏବଂ ଜାତୀୟ ସମ୍ମାନ ପ୍ରତି ଅବିଚଳିତ ରହି ବୀରର ମୃତ୍ୟୁକୁ ଆଲିଙ୍ଗନ କରନ୍ତୁ । ଆଗାମୀ କାଲିର ଭାରତରେ କେହି କ୍ରୀତଦାସ ଭାବରେ ଜନ୍ମଗ୍ରହଣ କରିବେ ନାହିଁ । ଆପଣମାନଙ୍କର ଅପୂର୍ବ ଆତ୍ମତ୍ୟାଗ ଫଳରେ ଯେଉଁ ଭବିଷ୍ୟତ ବଂଶଧରଗଣ ଜନ୍ମ ଗ୍ରହଣ କରିବେ ସ୍ୱାଧୀନ ଦେଶର ନାଗରିକ ଭାବରେ ସେମାନେ ଆପଣମାନଙ୍କ ଉଦ୍ଦେଶ୍ୟରେ ନତ ମସ୍ତକ ହେବେ ଏବଂ ଗର୍ବର ସହ ପୃଥିବୀବାସୀଙ୍କ ସମକ୍ଷରେ ଘୋଷଣା କରିବେ ଯେ ଆପଣମାନେ ମଣିପୁର ଓ ଆସାମରେ ଅବର୍ଣ୍ଣନୀୟ ବୀରତ୍ୱ ପ୍ରଦର୍ଶନ କରି ଆତ୍ମୋତ୍ସର୍ଗ କରି ପରାଜୟ ବରଣ କରିଥିଲେ ମଧ ତାହା ସ୍ୱାଧୀନତାର ପରବର୍ତ୍ତୀ ସଂଗ୍ରାମ ପାଇଁ ପଥୋନ୍ମୁକ୍ତ କରି ଯାଇ ଅଛି ।''

ସିଙ୍ଗାପୁରରେ ଅବସ୍ଥିତ ତାଙ୍କର ପ୍ରଥମ ହେଡ଼୍‌କ୍ୱାର୍ଟରରେ ପହଞ୍ଚି ନେତାଜୀ ବିକ୍ଷିପ୍ତ ଭାବରେ ରହିଥିବା ମୁକ୍ତିସେନାନୀମାନଙ୍କୁ ଏକତ୍ରିତ କରିବା ସଙ୍ଗେ ସଙ୍ଗେ ସାଧାରଣ ନାଗରିକମାନେ ମନୋବଳ ଦୃଢ଼ ରଖିବାକୁ ଓ ଦୀର୍ଘଦିନ ଚାଲିବାକୁ ଥିବା ଆଗାମୀ ସଂଗ୍ରାମ ପାଇଁ ସର୍ବଦା ପ୍ରସ୍ତୁତ ରହିବାକୁ ଉଦ୍‌ବୋଧନ ଦେଇଥିଲେ ।

ସିଙ୍ଗାପୁର ରେଡ଼ିଓରୁ ଭାରତବାସୀ ଓ ଭାରତର ନେତୃବନ୍ଦଙ୍କୁ ସତର୍କତା ସୂଚକ ନିବେଦନରେ କହିଥିଲେ ଭାଇସ୍ ରାୟ ଲର୍ଡ଼ ଓ୍ୱାଭେଲ ସହ ସ୍ୱାଧୀନତା ସମ୍ପର୍କରେ ମୂଳଚାଲ ବା ମିଳାମିଶା କରନ୍ତୁ ନାହିଁ କିମ୍ବା ମିଃ ଜିନ୍ନାଙ୍କର ସାମ୍ପ୍ରଦାୟିକ ବିଭାଜନକୁ ଆଦୌ ଗ୍ରହଣ କରନ୍ତୁ ନାହିଁ । ସେହି ବିପଦ୍‌ଜନକ ପ୍ରସ୍ତାବ ଗ୍ରହଣ କଲେ ତାହା ଦେଶ ବିଭାଜନର ପଥ ପରିଷ୍କାର କରିଦେବ ।''

କିନ୍ତୁ ଆମେରିକା ଜାପାନ ସହର ହିରୋସୀମା ଓ ନାଗାସାକୀ ଉପରେ ଦୁଇଟି ପରମାଣୁ ବୋମା ନିକ୍ଷେପ କରି ଲକ୍ଷ ଲକ୍ଷ ଅଧିବାସୀଙ୍କ ମୃତ୍ୟୁ ଓ ଅସୁମାରୀ କ୍ଷତି ସାଧନ କରିବା ପରେ ଜାପାନ ୧୯୪୫ ଅଗଷ୍ଟ ୧୪ ତାରିଖରେ ବାଧ ହୋଇ ଇଙ୍ଗ-ଆମେରିକା ସୈନ୍ୟମାନଙ୍କ ନିକଟରେ ଆତ୍ମ ସମର୍ପଣ କଲା ।

ସେହି ସମ୍ବାଦ ପ୍ରଚାରିତ ହେବା ପରେ ନେତାଜୀ ତାଙ୍କ ମନ୍ତ୍ରୀମଣ୍ଡଳର ଜରୁରୀ ବୈଠକ ଡାକି ୧୯୪୫ ଅଗଷ୍ଟ ୧୫ ତାରିଖରେ ସରକାରର ବେସାମରିକ କର୍ମଚାରୀ ଓ ଆଜାଦ୍ ହିନ୍ଦ୍ ଫୌଜ ଉଦ୍ଦେଶ୍ୟରେ ଏକ ବିଶେଷ ବାର୍ତ୍ତା (Special order of the Day) ଦେଇଥିଲେ ।

''ମାତୃଭୂମି ଭାରତର ମୁକ୍ତି ପାଇଁ ଆମର ସଂଗ୍ରାମ ଅପ୍ରତ୍ୟାଶିତ ଘଟଣା ବଳୀ ଫଳରେ ବାଧାପ୍ରାପ୍ତ ହୋଇଅଛି । ଏହି ତିମିରାଚ୍ଛନ୍ନ ମୁହୂର୍ତ୍ତରେ ଆପଣମାନେ ଏକ ବିପ୍ଳବୀ ସୈନ୍ୟ ବାହିନୀର ସ୍ୱଭାବ ସୁଲଭ ଧୈର୍ଯ୍ୟ, ସହନଶୀଳତା ଓ ଶୃଙ୍ଖଳା ସହକାରେ ପରିସ୍ଥିତିର

ସମ୍ମୁଖୀନ ହୁଅନ୍ତୁ । ଭାରତବର୍ଷ ପ୍ରତି ଆପଣଙ୍କର ବିଶ୍ୱାସ ଅବିଚଳିତ ରହୁ । ଦିଲ୍ଲୀରେ ପହଞ୍ଚିବାକୁ ଅନେକ ପଥ ରହିଅଛି । ବର୍ତ୍ତମାନ ମଧ ଦିଲ୍ଲୀ ଆମର ଗନ୍ତବ୍ୟ ସ୍ଥଳ । ଭାରତ ଯେ ଯଥା ଶୀଘ୍ର ସ୍ୱାଧୀନତା ଲାଭ କରିବ, ଏହା ନିଃସନ୍ଦେହ ।''

ସେହିଦିନ ପୂର୍ବ ଏସିଆ ଅଧିବାସୀଙ୍କ ଉଦ୍ଦେଶ୍ୟରେ ଦେଇଥିବା ବାର୍ତ୍ତାରେ ସେ କହିଥିଲେ, ''ସ୍ୱାଧୀନତା ସଂଗ୍ରାମର ଏକ ଗୌରବୋଜ୍ଜ୍ୱଳ ଅଧ୍ୟାୟର ପରିସମାପ୍ତି ଘଟିଅଛି । ସେହି ଅଧ୍ୟାୟରେ ପୂର୍ବ ଏସିଆର ପୁତ୍ର କନ୍ୟାମାନଙ୍କର ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ । ଆମ୍ଭମାନଙ୍କର ଏହି ସାମୟିକ ପରାଜୟରେ ହତାଶ ହୁଅନ୍ତୁ ନାହିଁ । ଭାରତକୁ ପରାଧୀନ ରଖିବା ପାଇଁ ପୃଥିବୀରେ କୌଣସି ରାଷ୍ଟ୍ରର ଆଉ ଶକ୍ତି ନାହିଁ ।''

ଜାପାନର ପରାଜୟ ହେଲେ ସୋଭିଏତ୍ ରୁଷିଆ ତାଙ୍କର ପରବର୍ତ୍ତୀ ଗନ୍ତବ୍ୟ ସ୍ଥଳ ହେବ ବୋଲି ନେତାଜୀ ବହୁଦିନୁ ସ୍ଥିର କରି ସାରିଥିଲେ । ୧୯୪୧ ମସିହାରେ ସେ ଭାରତ ତ୍ୟାଗ ପରେ ତାଙ୍କ ପ୍ରଧାନ ଲକ୍ଷ୍ୟ ସ୍ଥଳ ଥିଲା, ସୋଭିଏତ୍ ରୁଷିଆ । ଏହା ଇତିହାସରେ ଏକ ବହୁ ଚର୍ଚ୍ଚିତ ଘଟଣା । କାରଣ କାବୁଲରେ ପହଞ୍ଚି ସେ ରୁଷିଆ ଯିବା ପାଇଁ କାବୁଲସ୍ଥିତ ରୁଷିଆ ରାଷ୍ଟ୍ରଦୂତଙ୍କ ଜରିଆରେ ମସ୍କୋକୁ ସେହି ମର୍ମରେ ସେ ଅନୁରୋଧ କରିଥିଲେ ଏବଂ ମସ୍କୋର ଉତ୍ତରକୁ ଅପେକ୍ଷା କରି କାବୁଲରେ ଆତ୍ମ ଗୋପନ କରି ମାସାଧିକ କାଳ ରହିଥିଲେ ଏବଂ ଶେଷରେ ବାଧ ହୋଇ ସେ ଜର୍ମାନ ଗଲେ । ସେତେବେଳେ ଜର୍ମାନୀ ରୁଷିଆ ଉପରେ ଆକ୍ରମଣ କରିନଥିଲା । ତଥାପି ସେ ଜାପାନରେ ଥିବା ରୁଷିଆ ଦୂତାବାସ ଜରିଆରେ ମଧ ମସ୍କୋସହ ଯୋଗ ସୂତ୍ର ରଖିଥିଲେ । ୧୯୪୫ ଅଗଷ୍ଟ ୧୪ ତାରିଖରେ ଜାପାନ ଆତ୍ମ ସମର୍ପଣ କରିବା ପରେ ନେତାଜୀଙ୍କର ରୁଷିଆ ଯିବା ପ୍ରଶ୍ନ ମଧ ଉଠିଥିଲା । ଅଗଷ୍ଟ ୧୨ରୁ ୧୪ ତାରିଖ ପର୍ଯ୍ୟନ୍ତ ସିଙ୍ଗାପୁର ଠାରେ ହୋଇଥିବା ଆଜାଦ୍ ହିନ୍ଦ ସରକାରର ଶେଷ କ୍ୟାବିନେଟ୍ ମିଟିଂରେ ନେତାଜୀଙ୍କ ପରବର୍ତ୍ତୀ ଗନ୍ତବ୍ୟ ସ୍ଥଳ ସମ୍ପର୍କରେ ଆଲୋଚନା ହୋଇଥିଲା । କିନ୍ତୁ ପରିବର୍ତ୍ତିତ ପରିସ୍ଥିତିରେ ନେତାଜୀ ଅନ୍ୟ କୁଆଡ଼େ ନଯାଇ ସେହିଠାରେ ରହି ଆଜାଦ୍ ହିନ୍ଦ୍ ଫୌଜ ସହ ଗିରଫ ହେବେ ବୋଲି ଅଭିମତ ପ୍ରକାଶ କଲେ । ସେହି ପ୍ରସ୍ତାବ ଆଲୋଚନାବେଳେ ସେହି ପ୍ରସ୍ତାବର ସାମ୍ଭାବ୍ୟ ପରିଣତି ସମ୍ପର୍କରେ ମତ ପ୍ରକାଶ ପାଇଲା ଯେ ଯଦି ନେତାଜୀ ଗିରଫ ହୁଅନ୍ତି ଏବଂ ଭାରତରେ ବା ପୂର୍ବ ଏସିଆରେ ତାଙ୍କର ବିଚାର ହୁଏ, ତେବେ ସେ 'ରାଜ ଦ୍ରୋହୀ' ଭାବରେ ମୃତ୍ୟୁ ଦଣ୍ଡରେ ଦଣ୍ଡିତ ହେବାର ସମ୍ଭାବନା ଅଧିକ । ସେପରି ସ୍ଥଳେ ତା'ର ପ୍ରତିବାଦରେ ଭାରତ ଓ ପୂର୍ବ ଏସିଆରେ ଯେଉଁ ଜନ ବିକ୍ଷୋଭ ସୃଷ୍ଟି ହେବ ତା'ର ପରିଣତି ହେବ ଭାରତର ସ୍ୱାଧୀନତା । ନଚେତ୍ ଯଦି ତାଙ୍କୁ ମୁକ୍ତି କରିଦିଆଯାଏ- ତା' ମଧ 'ସ୍ୱାଧୀନତା' ପ୍ରାପ୍ତିକୁ ତ୍ୱରାନ୍ୱିତ କରିବ । କୌଣସି ପରିସ୍ଥିତିରେ ଭାରତର ସ୍ୱାର୍ଥ କ୍ଷତିଗ୍ରସ୍ତ ହେବ ନାହିଁ । ଯାହା ହେଉ ସେହି ପ୍ରସ୍ତାବ ସମ୍ପର୍କରେ କୌଣସି ସିଦ୍ଧାନ୍ତ ହୋଇପାରିଲା ନାହିଁ ।

ଅଗଷ୍ଟ ୧୪ ତାରିଖ ସନ୍ଧ୍ୟାରେ 'ଆଜାଦ୍ ହିନ୍ଦ୍ ସରକାର'ର ଆଇନ୍ ପରାମର୍ଶ ଦାତା ଏ.ଏନ୍. ସରକାର ବ୍ୟାଙ୍କକ୍‌ରୁ କାର୍ ଯୋଗେ ସେଠାରେ ହଠାତ୍ ପହଞ୍ଚିଲେ । ଜାପାନର ମିଲିଟାରୀ କର୍ତ୍ତୃପକ୍ଷ ନେତାଜୀଙ୍କ ଉଦ୍ଦେଶ୍ୟରେ ଏକ ଜରୁରୀ ଗୋପନ 'ବାର୍ତ୍ତା' ପଠାଇଥିଲେ । ସେହି ପତ୍ରରେ ନେତାଜୀ ଯଦି ଚାହାନ୍ତି ତେବେ ଜାପାନ ସରକାର ତାଙ୍କୁ ରୁଷିଆ ଅଧିକୃତ ମାଞ୍ଚୁରିଆରେ ନିରାପଦରେ ପହଞ୍ଚାଇ ଦେବାକୁ ପ୍ରସ୍ତୁତ ଅଛନ୍ତି ବୋଲି ଉଲ୍ଲେଖ ଥିଲା । ବାର୍ତ୍ତାରେ ଏହା ମଧ୍ୟ ଉଲ୍ଲେଖ ଥିଲା ଯେ ତାହା ପରେ ଜାପାନ ସରକାର ଆଉ କୌଣସି ଦାୟିତ୍ୱ ନେଇ ପାରିବେ ନାହିଁ । ତେଣିକି ମାଞ୍ଚୁରିଆ ସରକାର ଯଦି ତାଙ୍କୁ ବନ୍ଦୀ କରନ୍ତି ସେଥିପାଇଁ ମଧ୍ୟ ଜାପାନ ଦାୟୀ ହେବ ନାହିଁ । ସେ ସମ୍ପର୍କରେ ନେତାଜୀଙ୍କର ମତ ଥିଲା ଯେ ମାଞ୍ଚୁରିଆ ତାଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ ନକରି ତାଙ୍କୁ ସିଧା ମସ୍କୋର ଉଚ୍ଚତମ କର୍ତ୍ତୃପକ୍ଷଙ୍କ ନିକଟରେ ପହଞ୍ଚାଇ ଦେବା ଅଧିକ ସମ୍ଭବ । ସେତିକି ହିଁ ନେତାଜୀଙ୍କର ଦରକାର ଥିଲା ।

ପୂର୍ବ ଏସିଆ ପରିତ୍ୟାଗ କରିବା ସ୍ଥିର ହୋଇ ସାରିବା ପରେ ନେତାଜୀ ଭାରତୀୟ ଜାତୀୟ ବାହିନୀ ଏବଂ ପୂର୍ବ ଏସିଆ ଅଧିବାସୀଙ୍କ ଉଦ୍ଦେଶ୍ୟରେ ଦୁଇଟି ବାର୍ତ୍ତା ପ୍ରଚାର କରିଥିଲେ । ପ୍ରତ୍ୟେକଟିରେ ଭାରତର ସ୍ୱାଧୀନତା ପ୍ରାପ୍ତି ସମ୍ପର୍କରେ ତାଙ୍କର ଅବିଚଳିତ ବିଶ୍ୱାସ ଏବଂ ଜାତୀୟ ବାହିନୀର ସଂଗ୍ରାମରେ ସୈନ୍ୟମାନଙ୍କର ଅଦ୍ୱିତୀୟ ଆତ୍ମତ୍ୟାଗର ଦୃଷ୍ଟାନ୍ତ ଓ ସେହି ସଂଗ୍ରାମରେ ପୂର୍ବ ଏସିଆ ପ୍ରବାସୀ ଭାରତୀୟମାନଙ୍କର ଅକୁଣ୍ଠ ସମର୍ଥନର ଭୂୟସୀ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ଭାରତ ନିଶ୍ଚୟ ସ୍ୱାଧୀନ ହେବ ଏବଂ ଅଚିରେ ସ୍ୱାଧୀନ ହେବ ବୋଲି ଦୃଢ଼ୋକ୍ତି ବ୍ୟକ୍ତ କରିଥିଲେ । ସେହି ଦୁଇଟି Special order of the Day (ସ୍ୱତନ୍ତ୍ର ନିର୍ଦ୍ଦେଶ)କୁ ନେତାଜୀଙ୍କ ରାଜନୀତିକ ଜୀବନର ସର୍ବଶେଷ କାର୍ଯ୍ୟ ବୋଲି ବିଚାର କରାଯାଏ ।

ତା' ପରେ ଯାହା ଯାହ ଘଟିଗଲା, ତାହା ଚିରଦିନ ପାଇଁ ନେତାଜୀଙ୍କ ଜୀବନ ଦୀପ କେଉଁଠାରେ ଏବଂ କେଉଁଦିନ ନିର୍ବାପିତ ହେଲା, ତାହା ଆଜି ଅର୍ଦ୍ଧଶତାବ୍ଦୀ ପରେ ମଧ୍ୟ ଅନିଶ୍ଚିତ, ରହସ୍ୟାବୃତ୍ତ ଓ ଅଜ୍ଞାତ ।

ସେ ତାଙ୍କର ଅନ୍ୟାନ୍ୟ ସହକର୍ମୀଙ୍କ ସହ ୧୯୪୫ ଅଗଷ୍ଟ ୧୭ ତାରିଖରେ ଦୁଇଟି ବିମାନରେ ବ୍ୟାଙ୍କକ୍ ପରିତ୍ୟାଗ କରି ସାଇଗନ୍ ବିମାନ ଘାଟିରେ ପହଞ୍ଚିବା ପରେ ସାଇଗନ୍ ବିମାନ ଘାଟିରେ ନେତାଜୀଙ୍କ ପାଇଁ ଉଦ୍ଦିଷ୍ଟ ବୋମାବର୍ଷୀ ଜାପାନୀ ଯୁଦ୍ଧ ବିମାନରେ ମାତ୍ର ଗୋଟିଏ ଆସନ ଥିଲା । କିନ୍ତୁ ତାଙ୍କୁ ଏକାକୀ ସେଥିରେ ଯିବାକୁ ଦିଆନଯାଇ କର୍ଣ୍ଣେଲ୍ ହବିବୁର୍ ରହମାନଙ୍କୁ ତାଙ୍କ ସାଙ୍ଗରେ ପଠାଇ ଦିଆଗଲା । ଅନ୍ୟମାନେ ଆଉ ଏକ ବିମାନରେ ଦୁଇଦିନ ପରେ ସାଇଗନ୍ ଛାଡ଼ିଲେ । କାଣ୍ଟନ ବିମାନ ଘାଟୀରେ ଜନୈକ ଜାପାନ କଲୋନେଲଙ୍କ ଠାରୁ ସେମାନେ ଜାଣିବାକୁ ପାଇଲେ ଯେ ନେତାଜୀ ଯେଉଁ ବିମାନ୍‌ରେ ସାଇଗନ୍ ଛାଡ଼ିଥିଲେ, ସେହି ବିମାନ ଫର୍ମୋଜାର ଟାଇପେ ଦ୍ୱୀପରେ ଦୁର୍ଘଟଣା ଗ୍ରସ୍ତ ହେବା ଫଳରେ

ନେତାଜୀ ମୃତ୍ୟୁ ବରଣ କରିଛନ୍ତି । କିନ୍ତୁ ସେହି ଘଟଣା ବା ଦୁର୍ଘଟଣାକୁ ଭାରତବାସୀ ବା ଭାରତ ବାହାରେ ବାସ କରୁଥିବା କୌଣସି ଭାରତୀୟ ଆଜିଯାଏ ବିଶ୍ୱାସ କରୁନାହାନ୍ତି । ସେ ସମ୍ପର୍କରେ ବିସ୍ତୃତ ଆଲୋଚନା କରିବାର ସ୍ଥାନ ଏଠାରେ ଅତ୍ୟନ୍ତ ସୀମିତ । କାରଣ ଏହି ପୁସ୍ତକଟି ନେତାଜୀଙ୍କ ଜୀବନ ଚରିତ ନୁହେଁ । ଭାରତୀୟ ଜାତୀୟ ବାହିନୀ ସଙ୍ଗଠିତ କରିବା, ତାହାର ନେତୃତ୍ୱ ନେବା ଏବଂ ଜଣେ ସାମରିକ ନେତା ଭାବରେ ତାଙ୍କର ଚାରିତ୍ରିକ ଦୃଢତା ଓ ଯୋଗ୍ୟତା ଆଲୋଚନା ଭିତରେ ସୀମାବଦ୍ଧ । ତଥାପି ସାଧାରଣ ପାଠକମାନଙ୍କ ପାଇଁ ନେତାଜୀଙ୍କ ରହସ୍ୟାବୃତ୍ତ ନିରୁଦ୍ଦିଷ୍ଟ ଶେଷ ଜୀବନ ସମ୍ପର୍କରେ ସାମାନ୍ୟ ସୂଚନା ଦେଲେ ତାହା ଅପ୍ରାସଙ୍ଗିକ ହେବ ନାହିଁ ।

'ନେତାଜୀ ଆଉ ଫେରି ନାହାନ୍ତି' ପୁସ୍ତକ ଦ୍ରଷ୍ଟବ୍ୟ ।

ବିମାନ ଦୁର୍ଘଟଣାରେ ତାଙ୍କର ତଥାକଥିତ ମୃତ୍ୟୁକୁ ଅବିଶ୍ୱାସ କରିବାର କେତେଗୁଡ଼ିଏ ଯୁକ୍ତି ଯୁକ୍ତ କାରଣ ରହିଛି । ଅଗଷ୍ଟ ୧୪ ରେ ଜାପାନ ସୈନ୍ୟବାହିନୀ ବ୍ରିଟିଶ୍ ଆମେରିକାର ମିଳିତ ସୈନ୍ୟବାହିନୀ ନିକଟରେ ଆତ୍ମସମର୍ପଣ କରିଥିଲେ । ତେଣୁ ଅଗଷ୍ଟ ୧୭ ତାରିଖରେ ନେତାଜୀ ଜାପାନର ରାଜଧାନୀ ଟୋକିଓକୁ ଯିବାର ଅର୍ଥ ଥିଲା ଶତ୍ରୁ ବ୍ରିଟିଶ୍-ଆମେରିକା ହାତରେ ସୁନିଶ୍ଚିତ ମୃତ୍ୟୁ କିମ୍ବା ଗିରଫଦାରୀ । ତେଣୁ ତାଙ୍କର ଗନ୍ତବ୍ୟ ସ୍ଥଳ କଦାପି ଟୋକିଓ ନଥିଲା । ତାଙ୍କର ଗନ୍ତବ୍ୟସ୍ଥଳ ଥିଲା ରୁଷିଆ ଅନ୍ତର୍ଗତ ମାଞ୍ଚୁରିଆ । ଆଜାଦ୍ ହିନ୍ଦ୍ ସରକାରର ମନ୍ତ୍ରୀ ମଣ୍ଡଳ ଶେଷ ବୈଠକରେ ସେ ସମ୍ପର୍କରେ ନିଷ୍ପତ୍ତି ନିଆଯାଇ ଥିଲା, Netaji and his cabinet unanimously decided that he must leave Singapur the next morning (16th August) for Bangkok enroute to the Russian- held territory in Manchuria. ''ନେତାଜୀ ଓ ମନ୍ତ୍ରୀ ମଣ୍ଡଳ ସର୍ବସମ୍ମତି କ୍ରମେ ନିଷ୍ପତ୍ତି ନେଇଥିଲେ ଯେ ନେତାଜୀ ୧୬ ତାରିଖ ସକାଳୁ ବ୍ୟାଙ୍କକ୍ ବାଟେ ମାଞ୍ଚୁରିଆ ଯିବେ ।''Story of the I.N.A- by S. A. Ayar. ଆୟାର ଆଜାଦ୍ ହିନ୍ଦ ସରକାରରେ ପ୍ରଚାର ବିଭାଗ ମନ୍ତ୍ରୀ ଓ ନେତାଜୀଙ୍କ ବିଦାୟ ଯାତ୍ରାର ଶେଷ ସହଯାତ୍ରୀଙ୍କ ଭିତରେ ଥିଲେ ଅନ୍ୟତମ ।

୨ୟତଃ ସେହି ତଥାକଥିତ ବିମାନ ଦୁର୍ଘଟଣାର ଏକମାସ ପରେ ନେତାଜୀଙ୍କୁ ମଙ୍ଗୋଲିଆରେ ଦେଖିଥିବା କିମ୍ବା ରୁଷିଆର ବନ୍ଦୀଶାଳାରେ ସେ ରହିଥିବା ପ୍ରଭୃତି ଅସଂଖ୍ୟ ଘଟଣା ପ୍ରମାଣ କରୁଅଛି ଯେ ନେତାଜୀ ସେହି ବିମାନ ଦୁର୍ଘଟଣାରେ ମୃତ୍ୟୁ ବରଣ କରିନାହାନ୍ତି । ସେହି କାରଣରୁ ନେତାଜୀଙ୍କ ଚିତାଭସ୍ମ ବୋଲି କୁହାଯାଉଥିବା 'ଭସ୍ମପାତ୍ର' କୁ ଭାରତକୁ ଆଣିବା ଦୂରେ ଥାଉ, ଭାରତର ଜଣେ ପ୍ରଧାନମନ୍ତ୍ରୀ ଜାପାନ ଗସ୍ତରେ ଯାଇଥିବା ବେଳେ ରାଙ୍କୋଜୀ ମନ୍ଦିରରେ ରଖାଯାଇଥିବା ସେହି 'ଭସ୍ମପାତ୍ର'କୁ ପ୍ରକାଶ୍ୟରେ ନମସ୍କାର ହୋଇଥିବାରୁ ତାଙ୍କ ବିରୁଦ୍ଧରେ ଦେଶ ଭିତରେ ତୀବ୍ର ନିନ୍ଦାବାଦ ପ୍ରକାଶିତ ହୋଇଥିଲା ।



# ଲାଲ୍‌କିଲ୍ଲା ବିଚାର

ଯୁଦ୍ଧରେ ବ୍ରିଟିଶ୍ ଶକ୍ତିର ବିଜୟ ଫଳରେ 'ଆଜାଦ୍ ହିନ୍ଦ୍ ଫୌଜ'ର ଅଧିକାଂଶ ସିପାହୀ ଓ ସେନାପତିଙ୍କ ସମ୍ପର୍କରେ କ'ଣ କରାଯିବ ତାହା ବ୍ରିଟିଶ୍ ଶାସକମାନଙ୍କର ମୁଣ୍ଡ ବ୍ୟଥାର କାରଣ ହୋଇଥିଲା । ସେମାନେ ସମସ୍ତେ ଦିନେ ନା ଦିନେ ବ୍ରିଟିଶ୍ ସୈନ୍ୟ ବାହିନୀରେ ବେତନ ଭୋଗୀ କର୍ମଚାରୀ ଥିଲେ । ଯଦିଓ ଯୁଦ୍ଧ ଭିତରେ ଜାପାନ ସେମାନଙ୍କୁ ବନ୍ଦୀ କରିଥିଲା । ଜାପାନର ପରାଜୟ ପରେ ସେମାନେ ପୁନଶ୍ଚ ବ୍ରିଟିଶ୍ ସୈନ୍ୟ ବାହିନୀକୁ ଫେରି ଯାଇଥାନ୍ତେ । କିନ୍ତୁ ବନ୍ଦୀ ଅବସ୍ଥାରେ ସେମାନେ ଆଜାଦ୍ ହିନ୍ଦ୍ ଫୌଜରେ ଯୋଗ ଦେଇ ସେମାନଙ୍କ 'ମୂଳ ମାଲିକ' ଇଂରେଜମାନଙ୍କ ବିରୁଦ୍ଧରେ ଲଢ଼ିଥିବାରୁ ସେମାନେ ସୈନ୍ୟବାହିନୀର ଗୁରୁତର ଶୃଙ୍ଖଳା ଭଙ୍ଗ କରିଅଛନ୍ତି ବୋଲି ବ୍ରିଟିଶ୍ ଶାସକ ବୃନ୍ଦ ଭାବିଥିଲେ । କିନ୍ତୁ ବାସ୍ତବରେ ଏହା କେବଳ 'ଶୃଙ୍ଖଳା'ର ପ୍ରଶ୍ନ ନଥିଲା ଏଥିରେ ଜଡ଼ିତ ଥିଲା ସମଗ୍ର ଭାରତ ବର୍ଷର ତତ୍‌କାଳୀନ ରାଜନୈତିକ ପରିସ୍ଥିତି । ଅବଶ୍ୟ ବନ୍ଦୀ ଫୌଜମାନେ ଜାପାନୀ 'ଯୁଦ୍ଧ କୌଶଳ ଓ ଜାପାନର ସାମରିକ ଦୁର୍ବଳତା' ସମ୍ପର୍କରେ ବିସ୍ତୃତ ଜ୍ଞାନ ଅର୍ଜନ କରିଥିଲେ ଏବଂ ସେହି ଜ୍ଞାନ ବ୍ରିଟିଶ୍ ସୈନ୍ୟବାହିନୀର ଯଥେଷ୍ଟ କାମରେ ଆସିବ ବୋଲି ବିଚାର କରାଯାଇଥିଲା । କିନ୍ତୁ ସେହି ଫୌଜମାନେ ସୁଭାଷଙ୍କ ଆଦର୍ଶରେ ଏଭଳି ସଂକ୍ରମିତ ହୋଇ ଯାଇଥିଲେ ଯେ ସେମାନଙ୍କୁ ପୁନଶ୍ଚ ସୈନ୍ୟବାହିନୀ ଭିତରକୁ ନେବା ପାଇଁ ବ୍ରିଟିଶ୍ ସେନାପତିମାନେ ସାହସ କରୁନଥିଲେ ।

ଯାହାହେଉ ସେହି ବନ୍ଦୀ ଫୌଜମାନଙ୍କ ଠାରୁ ଜାପାନୀ ସୈନ୍ୟବାହିନୀର ଏବଂ ସୁଭାଷଙ୍କ ଯୁଦ୍ଧ କୌଶଳ ଜାଣିବା ପାଇଁ ତଥା ପ୍ରତ୍ୟେକ ସୈନ୍ୟ ସରକାର ବିରୁଦ୍ଧରେ କରିଥିବା କାର୍ଯ୍ୟକଳାପ କେତେଦୂର ଦୋଷାବହ ତାହା ନିର୍ଦ୍ଧାରଣ କରିବା ପାଇଁ ସେମାନଙ୍କୁ ଦିଲ୍ଲୀର ଲାଲ୍‌କିଲ୍ଲାରେ ବନ୍ଦୀ କରି ରଖାଗଲା । ଦିଲ୍ଲୀର ଲାଲକିଲ୍ଲା ସହ ଭାରତର ସ୍ୱାଧୀନତା ସଂଗ୍ରାମର ନିବିଡ଼ ଭାବଗତ ସମ୍ବନ୍ଧ ରହିଥିଲା । 'ଏହି ଲାଲକିଲ୍ଲା'ରେ ରହୁଥିବା ମୋଗଲ ଶାସନର ଶେଷ ନବାବ୍ ବାହଦୂର ଶାହା ୧୮୫୭ ମହାବିଦ୍ରୋହର ନେତୃତ୍ୱ ଦେଇଥିଲେ । ଏହି ଲାଲ୍‌କିଲ୍ଲାକୁ ବ୍ରିଟିଶ୍ ପୁନର୍ଦ୍ଦଖଲରୁ ରକ୍ଷା କରିବା ପାଇଁ ମହାବିଦ୍ରୋହରେ ଶହ ଶହ ଭାରତବାସୀ ପ୍ରାଣ ବିସର୍ଜନ କରିଥିଲେ । ଏହି ଲାଲକିଲ୍ଲାରେ ଜାତୀୟ ପତାକା ଉତ୍ତୋଳନ କରିବା ପାଇଁ ତ ସୁଭାଷ ଚନ୍ଦ୍ର 'ଆଜାଦ୍ ହିନ୍ଦ ଫୌଜ୍'କୁ ସ୍ଲୋଗାନ୍ ଦେଇଥିଲେ ''ଚଲୋ ଦିଲ୍ଲୀ'' । ବ୍ରିଟିଶ୍ ଶାସକମାନଙ୍କର ଦୁର୍ଭାଗ୍ୟ ଯେ ସେହି ଲାଲ୍‌କିଲ୍ଲାକୁ ସେମାନେ ବନ୍ଦୀ ଫୌଜଙ୍କର ବିଚାର ପାଇଁ ଉପଯୁକ୍ତ ସ୍ଥାନ ବୋଲି ବଚାର କଲେ । ଇମ୍ଫାଲ୍ ରଣକ୍ଷେତ୍ରରେ

ବନ୍ଦୀ ହୋଇଥିବା ପନ୍ଦର ଶହ ସୈନ୍ୟଙ୍କ ମଧ୍ୟରୁ ଅଧିକାଂଶ ବ୍ରିଟିଶ୍ ସୈନ୍ୟଙ୍କ ବିରୁଦ୍ଧରେ ପ୍ରତ୍ୟକ୍ଷ ଯୁଦ୍ଧ କରୁଥିବା ଅବସ୍ଥାରେ ଧରା ହୋଇଥିବାରୁ ସେମାନେ ଶାସକ ବର୍ଗଙ୍କର ସର୍ବାଧିକ କ୍ରୋଧର ଶିକାର ହୋଇଥିଲେ । ସେହିମାନଙ୍କ ମଧ୍ୟରୁ କେତେଜଣଙ୍କୁ ସାମରିକ ଆଇନ୍‌ରେ ବିଚାର କରି ପ୍ରାଣଦଣ୍ଡ ଦିଆଯାଇଥିଲା । ତାହା ପୂର୍ବରୁ ଆରବ ସାଗର ଓ ବଙ୍ଗୋପସାଗରରେ ବେତାର ଯନ୍ତ୍ର ସହ ଭାରତରେ ବ୍ରିଟିଶ୍ ବିରୋଧୀ ପ୍ରଚାର ପାଇଁ ସବ୍ ମେରିନ୍‌ରେ ଆସୁଥିବା 'ଆଜାଦ୍ ହିନ୍ଦ୍ ଫୌଜ୍' ର କେତେକ ସିପାହୀ ଓ ସାମରିକ ଅଫିସରଙ୍କୁ ମଧ୍ୟ ପ୍ରାଣଦଣ୍ଡ ଦିଆଯାଇଥିଲା । ଏହି ଭଳି ଭାବରେ ସର୍ବମୋଟ ୩୬ ଜଣ ବୀର ସିପାହୀଙ୍କୁ ଲାଲ୍‌କିଲ୍ଲା ଓ ଭାରତର ବିଭିନ୍ନ ବନ୍ଦୀ ଶାଳାରେ ଫାଶୀ ଦିଆଯାଇଥିଲା । କିନ୍ତୁ ଏହାକୁ ଏଭଳି ଗୋପନ ଭାବରେ କରାଯାଇଥିଲା ଯେ ଏହା ସାଧାରଣ ଭାରତବାସୀଙ୍କ ନିକଟରେ ସମ୍ପୂର୍ଣ୍ଣ ଅଜ୍ଞାତ ଥିଲା ।

୧୯୪୫ ମସିହା ଅକ୍ଟୋବର ମାସ ସୁଦ୍ଧା ପ୍ରାୟ କୋଡ଼ିଏ ହଜାର ବନ୍ଦୀ ସୈନ୍ୟଙ୍କୁ ଲାଲକିଲ୍ଲାଠାରେ ରଖାଯାଇଥିଲା । ବିଚାରର ସୁବିଧା ପାଇଁ ଇଂରେଜମାନେ ଏହି ଫୌଜକୁ ତିନି ଭାଗରେ ବିଭକ୍ତ କରିଥିଲେ କଳା, ଧୂସର ଓ ଶ୍ୱେତ- Black, Grey and White । ଯେଉଁମାନେ ବୁଝି ବିଚାରି, ଜାଣିଶୁଣି ଫୌଜରେ ଯୋଗ ଦେଇଥିଲେ, ସେମାନେ କଳା, ଯେଉଁମାନଙ୍କୁ ଶିଖାଇ, ଭୁଲକଥା କହି ଫୌଜରେ ନିଆଯାଇଥିଲା ବୋଲି ସରକାର ଭାବିଲେ ସେମାନେ ଦ୍ୱିତୀୟ ଶ୍ରେଣୀର ଏବଂ ଯେଉଁମାନଙ୍କୁ ଫୌଜ ଭିତରେ ପଶି ଆଜାଦ୍ ହିନ୍ଦ୍ ଫୌଜ ବିରୁଦ୍ଧରେ ଗୁପ୍ତଚର ବୃତ୍ତି କରୁଥିଲେ ସେମାନଙ୍କୁ ତୃତୀୟ ଶ୍ରେଣୀ ଅର୍ଥାତ୍ 'ଶ୍ୱେତ' ଭାବରେ ଚିହ୍ନଟ କରାଯାଇଥିଲା । 'କ' ଶ୍ରେଣୀ ବନ୍ଦୀମାନଙ୍କୁ 'ପ୍ରାଣଦଣ୍ଡ' । 'ଖ' ଶ୍ରେଣୀ ବନ୍ଦୀମାନଙ୍କୁ ଚାଳିଶି ଦିନର ବେତନ ଦେଇ ଛଟେଇ ଏବଂ 'ଗ' ଶ୍ରେଣୀ ବନ୍ଦୀ ମାନଙ୍କୁ ପୁରସ୍କାର ସହ ଚାକିରୀରେ ସିନିୟରିଟି ନକାଟି ପୁନର୍ବାର ଚାକିରୀରେ ଅବସ୍ଥାପିତ କରାଯିବ ବୋଲି ସରକାର ସ୍ଥିର କରିଥିଲେ । ଉଲ୍ଲେଖ କରିବା ନିଷ୍ପ୍ରୟୋଜନ ଯେ ବ୍ରିଟିଶ୍ ସାମରିକ ଅଫିସର୍‌ମାନଙ୍କର ଅକ୍ଳାନ୍ତ ଉଦ୍ୟମ ସତ୍ୱେ ଶେଷୋକ୍ତ ଦୁଇଶ୍ରେଣୀ ଅର୍ଥାତ୍ ନବୁଝି ନଶୁଝି ଫୌଜରେ ଯୋଗଦେବା ଓ ଗୁପ୍ତଚର ବୃତ୍ତି କରୁଥିବା ସିପାହୀ ସଂଖ୍ୟା ମୁଷ୍ଟିମେୟ ଥିଲା । ସୁତରାଂ 'ଚାଳିଶି ଦିନ'ର ବେତନ ଦେଇ ଛଟେଇ କରିବା ବା 'ପୁରସ୍କାର' ନେଇ ପୁନର୍ବାର ଚାକିରୀରେ ବାହେଲ କରିବା କାର୍ଯ୍ୟକୁ ପଛକୁ ରଖି ଯେଉଁ ହଜାର ହଜାର ସିପାହୀ 'ଭାବିଚିନ୍ତି' ଫୌଜରେ ଯୋଗ ଦେଇଥିଲେ ଓ ବ୍ରିଟିଶ୍ ସୈନ୍ୟଙ୍କ ବିରୁଦ୍ଧରେ ଯୁଦ୍ଧ କରିଥିଲେ, ସେହିମାନଙ୍କ ବିଚାର ସର୍ବ ପ୍ରଥମ କରାଯିବ ବୋଲି ସ୍ଥିର କରାଗଲା ।

ଜେନେରାଲ ସାର୍ ଫ୍ରାନ୍‌ସିସ୍ ଟ୍ୟୁକର (ଇଷ୍ଟର୍ଣ୍ଣ କମାଣ୍ଡ)ଙ୍କର ମତ ଥିଲା ଯେ ପରିଣତି ଯାହା ହେଉନା କାହିଁକି ବିଦ୍ରୋହୀ ସୈନ୍ୟମାନଙ୍କୁ ଗୋଟି ଗୋଟି ଶୃଙ୍ଖଳା ଭଙ୍ଗ ଅଭିଯୋଗରେ ବିଚାର କରିବାକୁ ହେବ । ତତ୍‌କାଳୀନ ଭାଇସ୍ ରାୟ ମଧ୍ୟ ତାଙ୍କୁ ସମର୍ଥନ କରୁଥିଲେ ।

ଭାରତରୁ ଇଂରେଜମାନଙ୍କ ଦିନ ସରି ଆସୁଥିଲା । ତଥାପି ସେମାନେ ଭାରତର ସେହି ବୀର ବିପ୍ଳବୀମାନଙ୍କୁ ମରଣ କାମୁଡ଼ା ଦେବାକୁ ସ୍ଥିର କଲେ ।

କିନ୍ତୁ ସେତେବେଳକୁ ଆଜାଦ୍ ହିନ୍ଦ୍ ଫୌଜ ସମ୍ପର୍କରେ ଯେତିକି ସତ୍ୟ, ମିଥ୍ୟା ବା କଳ୍ପନା ପ୍ରସୂତ କାହାଣୀ ସବୁ ଭାରତର ସାଧାରଣ ଲୋକଙ୍କ ନିକଟରେ ପ୍ରଚାରିତ ହେଉଥିଲା ତାହା 'ଫୌଜ' ପ୍ରତି ଏକ ସହାନୁଭୂତି ସମ୍ପନ୍ନ ବାତାବରଣ ସୃଷ୍ଟି କରିବାକୁ ଆରମ୍ଭ କରିଥିଲା । ବର୍ମା ସିଙ୍ଗାପୁର ପ୍ରଭୃତି ଦକ୍ଷିଣ ପୂର୍ବ ଏସିଆ ଦେଶରେ ଆଜାଦ୍ ହିନ୍ଦ୍ ଫୌଜର ଦୁଃସାହସିକ ଅଭିଯାନ ଇଂରେଜ ସୈନ୍ୟମାନଙ୍କର ବିଭିନ୍ନ ଫ୍ରଣ୍ଟରେ ଶୋଚନୀୟ ପରାଜୟ ଓ ନାନା ପ୍ରତିକୂଳ ପରିସ୍ଥିତିରେ ଜୀବନକୁ ବିପନ୍ନ କରି ସେମାନେ କିପରି ଆତ୍ମତ୍ୟାଗ କରିଥିଲେ ତାହାର କାହାଣୀ ଲୋକ ମୁଖରେ ପ୍ରଚାରିତ ହୋଇ ଭାରତରେ ମଧ୍ୟ ପହଞ୍ଚି ଯାଇଥିଲା । ଜାପାନ ବନ୍ଦୀ ଶିବିରରୁ ମୁକ୍ତିଲାଭ କରିଥିବା ସୈନିକମାନେ ମଧ୍ୟ ନାନା କଥା ପ୍ରଚାର କରୁଥିଲେ । ଜର୍ମାନୀ ଓ ଉତ୍ତର ଆଫ୍ରିକା ରଣାଙ୍ଗନରୁ ଫେରୁଥିବା ବନ୍ଦୀ ସୈନ୍ୟମାନେ ମଧ୍ୟ ଜର୍ମାନୀରେ ସୁଭାଷଙ୍କ ବୀରତ୍ୱ ଓ ସେ ଜର୍ମାନୀଠାରେ ଗଢ଼ିଥିବା ସୈନ୍ୟବାହିନୀ ସମ୍ପର୍କରେ ବହୁ କାହାଣୀ ପ୍ରଚାର କରୁଥିଲେ । ସେଥିରୁ କେଉଁଟା ସତ୍ୟ କିଏ ବା ମିଥ୍ୟା ଏହା ଜାଣିବାର ଉପାୟ ନଥିଲା । କାରଣ ସେହି ସବୁ ଜନରବ ସମ୍ପର୍କରେ ସ୍ପଷ୍ଟିକରଣ ଦେବାକୁ ସରକାରର ବେଳ ନଥିଲା । ଫଳରେ କେତେକ ଜନରବ କ୍ରମେ ସତ୍ୟରେ ପରିଣତ ହେଉଥିଲା । ଏହି ପ୍ରଚାର ଯେ କ୍ରମେ ଦେଶ ଭିତରେ ଥିବା ଅନୁରକ୍ତ ସୈନ୍ୟ ବାହିନୀକୁ ଯେମିତି ସଂକ୍ରମିତ କରୁଥିଲା, ତାହା ପଦାକୁ ବାହାରିବାକୁ ଅଧିକ ସମୟ ଲାଗିଲା ନାହିଁ । ସୁଭାଷ ଚନ୍ଦ୍ର ବା 'ନେତାଜୀ' ନାମଟି ଆଜାଦ୍ ହିନ୍ଦ୍ ଫୌଜ ଭିତରେ ଯେତିକି ଲୋକପ୍ରିୟ ଥିଲା ସୈନ୍ୟବାହିନୀରେ ମଧ୍ୟ ତାହା ଅନୁଭୂତ ହେଲା । ୧୯୪୬ରେ ସୈନ୍ୟବାହିନୀରେ ହୋଇଥିବା ବ୍ୟାପକ ବିଦ୍ରୋହର ଏହାହିଁ ମୁଖ୍ୟ କାରଣ ଥିଲା ବୋଲି ଜଣାଗଲା ।

ସେଥିରେ ପୁଣି ତଥାକଥିତ ଉଡ଼ାଜାହାଜ ଦୁର୍ଘଟଣାରେ ନେତାଜୀଙ୍କ ମୃତ୍ୟୁ ସମ୍ପର୍କରେ ନାନା ସନ୍ଦେହ ଓ ଜନରବ ହେବା ଫଳରେ ନେତାଜୀଙ୍କ ବ୍ୟକ୍ତିତ୍ୱ ଅଧିକ ରହସ୍ୟ ଜନକ ମନେ ହେଲା । ଯାହାହେଉ, ଆଜାଦ୍ ହିନ୍ଦ୍ ଫୌଜର ଲାଲ୍‌କିଲ୍ଲାରେ ବିଚାର ସମ୍ପର୍କରେ ନିର୍ଦ୍ଦିଷ୍ଟ ସମ୍ବାଦ ତଥାପି ଲୋକମାନଙ୍କ ନିକଟରେ ପହଞ୍ଚୁନଥିଲା । ୧୯୪୫ ଜୁଲାଇ ବେଳକୁ ଏକ ପକ୍ଷରେ କଂଗ୍ରେସ, ମୁସଲିମ୍ ଲିଗ୍ ଓ ଅନ୍ୟ ପଟରେ ବ୍ରିଟିଶ୍ ଓ ଲିଗ୍ ଏବଂ ବ୍ରିଟିଶ୍ କଂଗ୍ରେସ ମଧ୍ୟରେ କ୍ଷମତା ହସ୍ତାନ୍ତର ସମ୍ପର୍କରେ ଟଣା ଓଟରା ଚାଲିଥାଏ । ହଜାର ହଜାର ବୀର ବିଦ୍ରୋହୀ ସିପାହୀ ମାନଙ୍କର କଥା ବୁଝିବାକୁ ଦେଶର ନେତାମାନଙ୍କର ଆଦୌ ବେଳ ନଥାଏ । ଯଦିଓ ଅଧିକ ମୂଲ ଆଦାୟ କରିବା ପାଇଁ କଂଗ୍ରେସ ଇଂରେଜମାନଙ୍କର ବିରୁଦ୍ଧରେ ଆଉଥରେ 'ହୋ ହାଲ୍ଲା' କରିବାକୁ ମନ କରୁଥାନ୍ତି, ତଥାପି ସେଥିପାଇଁ ଉପଯୁକ୍ତ 'କାରଣ' ମିଳୁନଥାଏ ।

ନେତାଜୀ ସୁଭାଷ ଏବଂ ଆଜାଦ୍ ହିନ୍ଦ୍ ଫୌଜ ପ୍ରତି କଂଗ୍ରେସ ନେତାମାନଙ୍କ

ମନୋଭାବ ସର୍ବଦା ଶତ୍ରୁତା ପୂର୍ଣ୍ଣ ଥିଲା । ଗାନ୍ଧି-ନେହେରୁ-ପଟେଲ ପ୍ରଭୃତି ବିଶିଷ୍ଟ କଂଗ୍ରେସ ନେତାମାନେ ନେତାଜୀଙ୍କର ତୀବ୍ର ସମାଲୋଚକ ଥିଲେ । କଂଗ୍ରେସ ଇତିହାସକାର ପଟ୍ଟାଭିଙ୍କ ବର୍ଣ୍ଣନା ଅନୁସାରେ ଯଦିଓ ଗାନ୍ଧୀଜୀ ତାଙ୍କର ବ୍ୟକ୍ତିଗତ ଆଲୋଚନା ଭିତରେ ନେତାଜୀଙ୍କ ବୀରତ୍ୱ ଓ ଦୃଢ଼ ମନୋବଳକୁ ପ୍ରଶଂସା କରୁଥିଲେ, କିନ୍ତୁ ତାହା ତାଙ୍କର କୌଣସି ଭାଷଣ ବା ଲେଖାଲେଖିରେ ବିଶେଷ ପ୍ରକାଶିତ ହେଉ ନଥିଲା । କିନ୍ତୁ ନେହେରୁ ନେତାଜୀଙ୍କୁ ଖୋଲାଖୋଲି ସମାଲୋଚନା କରୁଥିଲେ । ଯୁଦ୍ଧ ବେଳେ ସେ ନେତାଜୀ ଓ ଆଜାଦ୍ ହିନ୍ଦ୍ ଫୌଜର ସିପାହୀମାନଙ୍କ ଉଦ୍ଦେଶ୍ୟରେ 'ସତର୍କବାଣୀ' ଶୁଣାଇ ଥିଲେ ଯେ ଯେଉଁମାନେ ଜାପାନକୁ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ସମର୍ଥନ କରୁଅଛନ୍ତି ସେମାନେ 'ଦେଶଦ୍ରୋହୀ' ଏବଂ ଭାରତ ବର୍ଷ ଉପରେ ସେମାନେ କୌଣସି ସଶସ୍ତ୍ର ଆକ୍ରମଣ କଲେ ତାହାର ସଫଳ ପ୍ରତିରୋଧ କରାଯିବ ।' ନେହେରୁ ପ୍ରଭୃତି କେବେ କଳ୍ପନା ସୁଦ୍ଧା କରିନଥିଲେ ଯେ ନେତାଜୀଙ୍କ ନେତୃତ୍ୱରେ ଆଜାଦ୍ ହିନ୍ଦ୍ ଫୌଜ ସତକୁ ସତ ବ୍ରିଟିଶ୍ ଅଧିକୃତ ଭାରତର କେତେକ ଅଞ୍ଚଳରୁ ବ୍ରିଟିଶ୍ ଶାସନ ଲୋପକରି ସେଠାରେ ସ୍ୱାଧୀନ ଭାରତର ପ୍ରଶାସନ ପ୍ରଚଳିତ କରିପାରିବେ, ଯେତେବେଳେ ତାହା ବାସ୍ତବରେ ଘଟିଲା ତାହାର 'ସଫଳ ପ୍ରତିରୋଧ' କରିବା ଦୂରେ ଥାଉ ନେହେରୁ ବ୍ରିଟିଶ୍ ବନ୍ଦୀ ଶାଳାରେ ଆବଦ୍ଧ ହୋଇ ରହିଥିଲେ ।

ବନ୍ଦୀଶାଳାରୁ ମୁକ୍ତି ଲାଭ କରି ଯେତେବେଳେ କଂଗ୍ରେସ ନେତୃବୃନ୍ଦ ଦେଖିଲେ ଯେ ରାଜନୀତି କ୍ଷେତ୍ରରେ ସେମାନଙ୍କର ଘୋରଶତ୍ରୁ 'ନେତାଜୀ' ଓ ତାଙ୍କ ଗଢ଼ା ଆଜାଦ୍ ହିନ୍ଦ୍ ଫୌଜ ଭାରତବାସୀଙ୍କ ନିକଟରେ ବିପୁଳ ଲୋକପ୍ରିୟତା ଅର୍ଜନ କରିଅଛନ୍ତି ଏବଂ ନେହେରୁଙ୍କ ଭାଷାରେ ବର୍ଣ୍ଣିତ 'ଦେଶଦ୍ରୋହୀ'ଗଣ ଦେଶବାସୀଙ୍କ ଦୃଷ୍ଟିରେ 'ଶ୍ରେଷ୍ଠ ଦେଶଭକ୍ତ' ରେ ପରିଣତ ହୋଇ ଅଛନ୍ତି, ସେତେବେଳେ ସେମାନଙ୍କର ଭାବାନ୍ତର ସୃଷ୍ଟି ହେଲା ।

୧୯୪୫ ଅଗଷ୍ଟ ୨୦ ତାରିଖ ନେହେରୁ 'ଷ୍ଟେଟ୍ସମ୍ୟାନ୍' ପତ୍ରିକାକୁ ଏକ ସାକ୍ଷାତ କାରରେ କହିଲେ 'ତିନିବର୍ଷ ତଳେ ମୁଁ ଯାହା କହୁଥିଲି, ଆଜି ମଧ୍ୟ ମୋର ସେହି ମତ ଯେ ଯେଉଁମାନେ ଜାପାନୀମାନଙ୍କ ସହ ସମ୍ବନ୍ଧ ରଖି ଦେଶ ପାଇଁ ଯୁଦ୍ଧ କରୁଥିଲେ, ତାହାର ସୁଦୂର ପରିଣତି ସମ୍ପର୍କରେ ଠିକ୍ ଅଟକଳ କରି ନାହାଁନ୍ତି ।' କିନ୍ତୁ ପରିବର୍ତ୍ତିତ ପରିସ୍ଥିତିରେ ନେହେରୁ 'ଓଲଟା' ବୁଲି ପଡ଼ିଲେ ("Nehru did an almost complete about turn on the subject" Extract from War of the Springing Tiger by G.H. Cors) କଣ ସେ 'ପରିବର୍ତ୍ତିତ ପରିସ୍ଥିତି' ? ବ୍ରିଟିଶ୍ ଶାସକମାନଙ୍କ ସହ କଂଗ୍ରେସର ଆଲୋଚନା ଏକ ଘଡ଼ିସନ୍ଧି ଅବସ୍ଥାରେ ପହଞ୍ଚିଥିଲା । ଇଂରେଜମାନେ କଂଗ୍ରେସର ଦୃଷ୍ଟିକୋଣ ଗ୍ରହଣ କରନ୍ତୁ ବୋଲି କଂଗ୍ରେସ ନେତାମାନେ ଏକ ଜନ ଆନ୍ଦୋଳନର ଚାପ ସୃଷ୍ଟି କରିବାକୁ ସୁଯୋଗ ଖୋଜୁଥିଲେ । ଦୈବାତ୍ 'ଲାଲ୍‌କିଲ୍ଲା' ବିଚାରକୁ କେନ୍ଦ୍ର କରି ଦେଶ ଭିତରେ ଯେଉଁ ଉତ୍ତେଜନା ପୂର୍ଣ୍ଣ ଆନ୍ଦୋଳନ କ୍ରମେ ଦାନା ବାନ୍ଧୁଥିଲା, ସେଥି ପ୍ରତି କଂଗ୍ରେସର

ଦୃଷ୍ଟି ପଡ଼ିଲା ଏବଂ ସୁଭାଷ ଓ ଆଜାଦ୍ ହିନ୍ଦ୍ ଫୌଜକୁ ବିରୋଧ ବା ସମାଲୋଚନା କରି ବ୍ରିଟିଶ୍-ବିରୋଧୀ ଜନ ଆନ୍ଦୋଳନକୁ ହାତଛଡ଼ାକରିବା କଂଗ୍ରେସ ପକ୍ଷରେ ଚରମ ନିର୍ବୋଧତା ବୋଲି ବିଚାର କରାଗଲା । ବରଂ ସେହି ବନ୍ଦୀମୁକ୍ତ ଆନ୍ଦୋଳନକୁ ଦୁର୍ବାର କରି ଗଢ଼ିତୋଳି ସରକାରକୁ କଂଗ୍ରେସ ଶକ୍ତିର ପରିଚୟ ଦେବା ଆବଶ୍ୟକ ବୋଲି ସ୍ଥିର କରାଗଲା । ସେହି ବର୍ଷ ସେପ୍ଟେମ୍ବର ମଧ୍ୟ ଭାଗରେ ଅଖିଳ ଭାରତ କଂଗ୍ରେସ କମିଟି ବୈଠକ ବସି ପ୍ରସ୍ତାବ ପାଶ୍ କଲା ଯେ "It would be a tragedy if the officers, men and women were punished for the offence of having laboured, however mistakenly, for the freedom of India." The AICC therefore earnestly trusts that they will be released." ଯେତେଭୁଲବାଟରେ ସେମାନେ ପରିଚାଳିତ ହୋଇ ଥାଉନ୍ତୁନା କାହିଁକି ଦେଶର ସ୍ୱାଧୀନତା ପ୍ରାପ୍ତି ପାଇଁ ସେମାନେ ଯେଉଁ କଠୋର ତ୍ୟାଗ ଓ ଚରମ ପରିଶ୍ରମ ବରଣ କରି ଅଛନ୍ତି ସେହି ସାମରିକ ଅଫିସରମାନଙ୍କୁ ଯଦି ସେହି ଅପରାଧରେ ଦଣ୍ଡ ଦିଆଯାଏ, ତାହା ଅତିଶୟ ବେଦନାଦାୟକ ଘଟଣା ହେବ । ତେଣୁ ଅଖିଳ ଭାରତ କଂଗ୍ରେସ କମିଟି ଦୃଢ଼ ବିଶ୍ୱାସ କରୁଅଛି ଯେ ସେମାନଙ୍କୁ ମୁକ୍ତ କରାଯିବ ।''

ନେହେରୁ କଂଗ୍ରେସର ଉପରୋକ୍ତ ପ୍ରସ୍ତାବକୁ ଆଉଟିକେ ଫେଣେଇ ଦେଇ କହିଲେ ଯେ ''ଆଜାଦ୍ ହିନ୍ଦ୍ ଫୌଜ''ର ବହୁସଂଖ୍ୟକ ସୈନ୍ୟଙ୍କୁ ବନ୍ଦୀ କରି ରଖାଯାଇଛି ଏବଂ ସେମାନଙ୍କ ମଧ୍ୟରୁ କେତେଜଣଙ୍କୁ ପ୍ରାଣଦଣ୍ଡ ଦିଆ ସରିଲାଣି । ଯେ କୌଣସି ସମୟରେ ଏହି ସୈନ୍ୟମାନଙ୍କ ପ୍ରତି କଠୋର ବ୍ୟବହାର ଆପତ୍ତିଜନକ ହୁଅନ୍ତା । ଆଜି ଯେତେବେଳେ ଦେଶ ଭିତରେ ବହୁ ବଡ଼ ବଡ଼ ଘଟଣା ଘଟୁଛି ସେତେବେଳେ ସେମାନଙ୍କ ପ୍ରତି ଯଦି ସାଧାରଣ 'ଅପରାଧୀ' ଭଳି ବ୍ୟବହାର କରାଯାଏ ତେବେ ତାହା ଗୁରୁତର ଭୁଲ୍ ହେବ ଏବଂ ତାହାର ପରିଣତି ହେବ ସୁଦୂର ପ୍ରସାରୀ । ସେମାନଙ୍କ ପ୍ରତି ଯେଉଁ ଦଣ୍ଡବିଧାନ କରାଯିବ, ତାହା ସମଗ୍ର ଭାରତବାସୀଙ୍କ ପ୍ରତି ଦଣ୍ଡ ଭାବରେ ବିବେଚିତ ହେବ ଏବଂ କୋଟି କୋଟି ଭାରତବାସୀଙ୍କ ହୃଦୟରେ ତାହା ଗଭୀର କ୍ଷତ ସୃଷ୍ଟି କରିବ ।''

ଏହିଭଳି ଭାବରେ ନେହେରୁ ତାଙ୍କର ଦୃଷ୍ଟିକୋଣ ବଦଳାଇବା ସଙ୍ଗେ ସଙ୍ଗେ ଦେଶବାସୀଙ୍କୁ ମଧ୍ୟ ସ୍ପଷ୍ଟ ଜଣାଇ ଦେଲେ ଯେ 'ଲାଲ-କିଲ୍ଲା' ଭିତରେ 'ମୁକ୍ତି ବାହିନୀ'ର ହଜାର ହଜାର ସିପାହୀଙ୍କର ବିଚାର କରାଯାଉଅଛି ଏବଂ ସେମାନଙ୍କ ପାଇଁ ଅପେକ୍ଷା କରିଛି ଚରମ ଦଣ୍ଡାଦେଶ । ସ୍ୱୟଂ ଗାନ୍ଧିଜୀ ମଧ୍ୟ ଆଜାଦ୍ ହିନ୍ଦ୍ ଫୌଜର ବୀରତ୍ୱ ଓ ଆତ୍ମତ୍ୟାଗର ପ୍ରଶଂସା କରିବାକୁ ଲାଗିଲେ ।

ଏହାର ପ୍ରଭାବ ବିଦ୍ୟୁତ୍ ଗତିରେ ସାରା ଦେଶରେ ଅନୁଭୂତ ହେଲା ଏବଂ ପ୍ରକାଶିତ ହେଲା ତୀବ୍ର ପ୍ରତିକ୍ରିୟା ।

ଅଖିଳ ଭାରତ କଂଗ୍ରେସ କମିଟି ଠିକ୍ ଦୁଇଦିନ ପରେ ଏକ ପ୍ରସ୍ତାବ ପାଶ୍ କରି ସେହି ବୀର ସ୍ୱାଧୀନତା ସଂଗ୍ରାମୀମାନଙ୍କର ଜୀବନ ରକ୍ଷା କରିବାକୁ ଏକ ସୁରକ୍ଷା କମିଟି ମଧ୍ୟ ଗଠନ କଲେ ।

ବନ୍ଦୀ କୋଡ଼ିଏ ହଜାର ସୈନିକ ମଧ୍ୟରୁ ମାତ୍ର ତିନିଜଣ ସେନାପତି ଯଥା:- ମେଜର ଜେନେରାଲ୍ ସାନଓ୍ୱାଜ ଖାଁ, ଲେଫ୍ଟନାଣ୍ଟ କଲୋନେଲ ପ୍ରେମକୁମାର ସହଗଲ, ଲେଫ୍ଟନାଣ୍ଟ କଲୋନେଲ୍ ଗୁରୁବକ୍ସି ସିଂଧୀଲନ୍ ଯଥାକ୍ରମେ ମୁସଲମାନ, ହିନ୍ଦୁ ଓ ଶିଖ ସମ୍ପ୍ରଦାୟର ତିନିଜଣଙ୍କୁ ବିଚାର ପାଇଁ କାଠଗଡ଼ାରେ ଛିଡ଼ା କରାଇଲେ । ଏହିଭଳି କରିବାଦ୍ୱାରା ସରକାର କୁଆଡ଼େ ଏହାହିଁ ଦେଖାଇବାକୁ ଚାହିଁଥିଲେ ଯେ କୌଣସି ଜାତି ବା ଧର୍ମପ୍ରତି ସରକାରଙ୍କ ବାଛ ବିଚାର ବା ପାତର ଅନ୍ତର ଭାବ ନାହିଁ । କିନ୍ତୁ ଏହି 'ଅଭିଶାପ' ଭାରତୀୟଙ୍କ ପକ୍ଷରେ ଆଶୀର୍ବାଦରେ ପରିଣତ ହେଲା । ଭାରତର ସେହି ତିନି ମୁଖ୍ୟ ସମ୍ପ୍ରଦାୟର ଲୋକେ ସରକାର ବିରୁଦ୍ଧରେ ଏକଜୁଟ ହେବାର ବାଟ ଫିଟିଗଲା । (Although the motive was admirable, it was a misjudgement, the trial of three men united the whole country in sympathy"- G.H. Corr in The War of the Springing Tigers.) ଯଦିଓ ସେହି ସିଦ୍ଧାନ୍ତ ପ୍ରଶଂସାର୍ହ ଥିଲା, କିନ୍ତୁ ତାହା ଭୀଷଣ ଭୁଲ୍ ଥିଲା । ଏହା ଭାରତର ସବୁ ସମ୍ପ୍ରଦାୟକୁ ଏକଜୁଟ କରିଦେଲା ।

'ଲାଲକିଲ୍ଲା' ନାମ ସହ ଜଡ଼ିତ ଭାବଗତ ସମ୍ବନ୍ଧ ସହ ତିନି ମୁଖ୍ୟ ସମ୍ପ୍ରଦାୟର ପ୍ରତିନିଧିମାନଙ୍କ ବିରୁଦ୍ଧରେ ଆଗତ 'ଦେଶଦ୍ରୋହ' ଅଭିଯୋଗ ମିଶି ଏକ ଅଭୂତପୂର୍ବ ପରିସ୍ଥିତି ସୃଷ୍ଟି କରିଦେଲା ୧୯୪୫ ମସିହା ସେପ୍ଟେମ୍ବର, ଅକ୍ଟୋବର ମାସରେ । ଦଳମତ ନିର୍ବିଶେଷରେ ଗୋଟିଏ ସ୍ଲୋଗାନ ଭାରତର ଆକାଶ ବତାଶ ପ୍ରକମ୍ପିତ କଲା 'ଲାଲ୍ କିଲ୍ଲା ଖୋଲ୍ ଦୋ, ଜାତୀୟ ବାହିନୀ ଛୋଡ଼୍ ଦୋ' (Open The RedFort and Release the I.N.A). ଏହି ଐତିହାସିକ ଆନ୍ଦୋଳନରେ ଲକ୍ଷ ଲକ୍ଷ, କୋଟି କୋଟି ଦେଶବାସୀ ଯୋଗ ଦେଲେ । ବମ୍ବେ, କଲିକତା, ମାନ୍ଦ୍ରାଜ୍, ମିରଟ୍ ଓ କାନ୍‌ପୁରର ଲକ୍ଷ ଲକ୍ଷ ଛାତ୍ର ଓ ଶ୍ରମିକ ଧର୍ମଘଟ କଲେ । କଲିକତାର ରାଜପଥରେ ଛାତ୍ର ପୋଲିସ୍ ସଂଘର୍ଷ ହେଲା । ସୁଭାଷ ଓ ଆଜାଦ୍ ହିନ୍ଦ୍ ଫୌଜ ସମ୍ପର୍କରେ ସମସ୍ତ ସମ୍ବାଦପତ୍ରରେ ନୂଆ ନୂଆ ତଥ୍ୟ ଓ ବହୁ ରୋମାଞ୍ଚକର ବିବରଣୀ ପ୍ରକାଶିତ ହେବାରୁ ଜନ ସାଧାରଣଙ୍କ ମନରେ ବିପୁଳ ଉତ୍ସାହ, ଉନ୍ମାଦନା ଓ କୌତୂହଳ ସୃଷ୍ଟି ହେଲା । ସେମାନଙ୍କ ପ୍ରତି ଜନସାଧାରଣଙ୍କ ଅସରନ୍ତି ସ୍ନେହ, ଶ୍ରଦ୍ଧା ଓ ସହାନୁଭୂତି କୂଳ ଲଂଘନ କଲା । ଯେମିତି ଜଣାଗଲା ଏପର୍ଯ୍ୟନ୍ତ 'ଦେଶଦ୍ରୋହୀ' ନାମରେ ଚିତ୍ରିତ ହୋଇଥିବା ନେତାଜୀ ଓ ତାଙ୍କ ମୁକ୍ତି ବାହିନୀ ରାତି ପାହିବା ବେଳକୁ ଭାରତର ସ୍ୱାଧୀନତା ସଂଗ୍ରାମର ମୁଖ୍ୟ ପୁରୋଧା ଓ ହିରୋର ଆସନରେ ଅଳଙ୍କୃତ ହୋଇ ଗଲେ । ସେମାନଙ୍କର ବିଚାରରେ ସାହାଯ୍ୟ ପାଇଁ ଚାନ୍ଦା ସଂଗ୍ରହ ଚାଲିଲା ପ୍ରତି ଗ୍ରାମ ଓ ପ୍ରତି

ପରିବାରରେ । କେତେକ ସ୍ଥାନରେ ନେତାଜୀ ଓ ମୁଖ୍ୟ ଅଭିଯୁକ୍ତ ତିନିଜଣଙ୍କର ଫଟୋଚିତ୍ର ଦେବତା ଭଳି ପୂଜିତ ହେବାକୁ ଲାଗିଲା । ସେ ଯୁଗର ପ୍ରସିଦ୍ଧ ବାରିଷ୍ଟର ଭୁଲାଭାଇ ଦେଶାଇଙ୍କ ନେତୃତ୍ୱରେ ଗଠିତ ବାରିଷ୍ଟର ଦଳରେ ଥିଲେ ସ୍ୱୟଂ ନେହେରୁ, ତେଜ ବାହାଦୂର ସାପ୍ରୁ, ରାୟବାହାଦୁର ବଦ୍ରି ଦାସ, ଡକ୍ଟର କୈଳାସ ନାଥ କାଟ୍‌ଜୁ, ଆସଫ୍ ଅଲ୍ଲୀ, ସାର ଦିଲ୍ଲୀପ୍ ସିଂ, ସାର୍ ଟେକ୍ ଚାନ୍ଦ ଓ ଶ୍ରୀ ପି. କେ. ସେନ୍ ପ୍ରଭୃତି ପଇଁତ୍ରିଶ ଜଣ ବିଶିଷ୍ଟ ଆଇନଜ୍ଞ । ନେହେରୁ ପ୍ରଭୃତି ଯେଉଁ ଜନନାୟକ ଗଣ ପଚିଶ ତିରିଶ ବର୍ଷ ତଳେ ଓକିଲାତି ବ୍ୟବସାୟକୁ ଜଳାଞ୍ଜଳି ଦେଇ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ ସେମାନେ ବି ଓକିଲଙ୍କ କଳା କୋଟ୍ ପ୍ୟାଣ୍ଟ୍ ପିନ୍ଧି ଲାଲ୍ କିଲ୍ଲାରେ ଛିଡ଼ା ହୋଇଗଲେ ।

୧୯୪୫ ମସିହା ନଭେମ୍ବର ୫ ତାରିଖରେ ଲାଲକିଲ୍ଲାରେ ବିଚାର ଆରମ୍ଭ ହେବା ବେଳକୁ ଭାରତୀୟ ଜନମତ ଏହି ବିଚାର ବିରୁଦ୍ଧରେ ଏଭଳି ଉତ୍ୟକ୍ତ ଓ ବିକ୍ଷୁବ୍ଧ ହୋଇ ଯାଇଥିଲା, ଏହାର ପରିଣତି ଯାହା ହେବ ତାହା ଜଳ ଜଳ ଦିଶୁଥିଲା । ବିଚାରର ଦୈନନ୍ଦିନ ବିବରଣୀ ସମ୍ବାଦ ପତ୍ର ମାନଙ୍କରେ ବିଭିନ୍ନ ଫଟୋଚିତ୍ର ଓ ଦଲିଲ ସହ ଏଭଳି ଚିତ୍ତାକର୍ଷକ ଢଙ୍ଗରେ ପ୍ରକାଶିତ ହେବାକୁ ଆରମ୍ଭ କଲା ଯେ, ଜାତୀୟତାର ଉନ୍ମାଦନାରେ ଆବାଳ ବୃଦ୍ଧ ବନିତା ସଂକ୍ରମିତ ହୋଇଗଲେ । ଯେଉଁ ଦୁଇମାସ ସେହି ଐତିହାସିକ ବିଚାର ଚାଲିଲା ସେହି ସମୟତକ ଅଧିକାଂଶ ଶିକ୍ଷାନୁଷ୍ଠାନରେ ଧର୍ମଘଟ ପାଳିତ ହେଲା । ଛାତ୍ର-ପୋଲିସ୍ ସଂଘର୍ଷ ଏକ ନିତିଦିନିଆ ଘଟଣାରେ ପରିଣତ ହୋଇଗଲା । ଏପରିକି ଏହି ବିକ୍ଷୋଭ 'ଲାଲକିଲ୍ଲା' ଫାଟକ ପର୍ଯ୍ୟନ୍ତ ମଧ୍ୟ ପ୍ରସାରିତ ହୋଇଗଲା । ଏହିଭଳି ଏକ ବିରାଟ ବିକ୍ଷୋଭରେ ପୋଲିସ୍‌ର ଗୁଳିଚାଳନା ଫଳରେ ଶତାଧିକ ଲୋକ ପ୍ରାଣ ବିସର୍ଜନ କଲେ ଏବଂ ସହସ୍ରାଧିକ କ୍ଷତ ବିକ୍ଷତ ହେଲେ । ଲୋକେ ଆହୁରି ଉତ୍ୟକ୍ତ ହେଲେ ।

ତଥାପି କୋର୍ଟ ରୁମ୍ ଭିତରେ 'ଆଇନ୍' 'ଆଇନ୍' ହୋଇ ରହିଥିଲା । ସରକାର ପ୍ରଚଳିତ ଆଇନ୍ ଅନୁସାରେ ବନ୍ଦୀମାନଙ୍କୁ ସର୍ବୋଚ୍ଚ ଦଣ୍ଡ ଦେବାକୁ ଦୃଢ଼ ସଂକଳ୍ପ ଥିଲେ ।

ସେହି ଇତିହାସ ପ୍ରସିଦ୍ଧମୋକଦ୍ଦମାର ସରକାରଙ୍କର ମୁଖ୍ୟ ଓକିଲ ଥିଲେ ଏନ୍. ପି. ଇଞ୍ଜିନିୟର ଓ ଜଜ୍ ଥିଲେ କଲୋନେଲ୍ ଫ୍ରେଡରିକ୍ ସି. କେରିନ୍ । ମୁକ୍ତି ବାହିନୀର ତିନିସେନାପତିଙ୍କ ବିରୁଦ୍ଧରେ ପ୍ରଧାନ ଅଭିଯୋଗ ଥିଲା ୧- ସମ୍ରାଟଙ୍କ ବିରୁଦ୍ଧରେ ଯୁଦ୍ଧ କରିବା, ୨- ହତ୍ୟା, ୩- ହତ୍ୟାରେ ସାହାଯ୍ୟ (Abetment of Murder) । ସେଥିମଧ୍ୟରୁ ପ୍ରଥମ ଅଭିଯୋଗଟି ଥିଲା ଗୁରୁତର ଏବଂ ସେହି ଅଭିଯୋଗର ପ୍ରମାଣ ଉପରେ ଅନ୍ୟ ଦୁଇଟି ଅଭିଯୋଗ ନିର୍ଭର କରୁଥିଲା ।

ବ୍ରିଟିଶ୍ ଶାସନର ସେହି ବିଦାୟ ବେଳାରେ ବୀର ବିପ୍ଳବୀ ହଜାର ହଜାର ମୁକ୍ତି ବାହିନୀକୁ ପ୍ରବଳ ଜନମତ ବିରୁଦ୍ଧରେ ଦଣ୍ଡିତ କରିବା ଯେ ସହଜ କଥା ନ ଥିଲା ଏହା ସରକାର ବୁଝି ସାରିଥିଲା । କିନ୍ତୁ ଅନ୍ୟ ଯେଉଁ ମୁଖ୍ୟ ଅଭିଯୋଗଟି ସରକାର ପ୍ରମାଣ କରିବାକୁ

ଚାହୁଁଥିଲା, ତାହା ଥିଲା ଅଧିକ ଗୁରୁତ୍ୱପୂର୍ଣ୍ଣ ଏବଂ ତାହାର ପରିଣତି ଥିଲା ଯୁଗାନ୍ତକାରୀ । ସେ ଅଭିଯୋଗ ହେଉଛି ଏହା ଯେ ଜଣେ ସୈନିକ ସେ ଶତ୍ରୁପକ୍ଷ ଦ୍ୱାରା ବନ୍ଦୀ ହେଲେ ସୁଦ୍ଧା ସେ ନିଜ ସରକାର ବିରୁଦ୍ଧରେ ଯୁଦ୍ଧକରି ଆଇନ୍ ଫାନ୍ଦରୁ ଖସିଯାଇ ପାରିବ କି ? ଅର୍ଥାତ୍ ଆଜାଦ୍ ହିନ୍ଦ୍ ଫୌଜର ସମସ୍ତ ସୈନିକ ଦିନେ ବ୍ରିଟିଶ୍ ସୈନ୍ୟ ବାହିନୀର ବେତନଭୋଗୀ କର୍ମଚାରୀ ଥିଲେ । ତେଣୁ ସେମାନେ ବ୍ରିଟିଶ୍ ବିରୋଧୀ କୌଣସି କର୍ତ୍ତୃପକ୍ଷଙ୍କ ନିର୍ଦ୍ଦେଶରେ ବ୍ରିଟିଶ ବିରୁଦ୍ଧରେ ଯୁଦ୍ଧ କରିବା ଆନ୍ତର୍ଜାତିକ ଆଇନ୍ ଦୃଷ୍ଟିରୁ ଦଣ୍ଡନୀୟ କି ନୁହେଁ ଏହାହିଁ ସବୁଠାରୁ ଜଟିଳ ଆଇନ୍ ଗତ ପ୍ରଶ୍ନ । ଏହି ଗୁରୁତର ଅଭିଯୋଗ ବିରୁଦ୍ଧରେ ଭାରତବାସୀଙ୍କର ଯୁକ୍ତି କ'ଣ ଥିଲା ତାହା ବିଶେଷ ପ୍ରଣିଧାନ ଯୋଗ୍ୟ ।

ଜଣେ ବେସାମରିକ କର୍ମଚାରୀ କୌଣସି ସରକାରୀ ବିରୋଧୀ କାର୍ଯ୍ୟ କଲେ ତାହାକୁ ଉକ୍ତ ଚାକିରୀରୁ ବହିଷ୍କାର କରାଯାଇପାରେ । କିନ୍ତୁ ଜଣେ ସାମରିକ କର୍ମଚାରୀ ସରକାରୀ ବିରୋଧୀ କାର୍ଯ୍ୟ ବିଶେଷତଃ ସେହି ସରକାର ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ ତାହାର ମୃତ୍ୟୁଦଣ୍ଡ ଅନିର୍ବାର୍ଯ୍ୟ ଅଟେ । ଏହା ସବୁ ରାଷ୍ଟ୍ରରେ ସର୍ବବାଦୀ ସମ୍ମତ ନିୟମ ଅଟେ ବୋଲି ସରକାରୀ ପକ୍ଷର ଯୁକ୍ତି ଥିଲା ।

ମୁଦେଇ ସରକାରଙ୍କ ପକ୍ଷରୁ ସୁଆଲ ଆରମ୍ଭ କରି ମୁଖ୍ୟ ସରକାରୀ ଓକିଲ ସାର୍ ଏନ୍. ପି. ଇଞ୍ଜିନିୟର କହିଲେ ଯେ ''ମୁଦାଲାମାନେ ରାଜାଙ୍କ ସ୍ୱୀକୃତି ପ୍ରାପ୍ତ ଭାରତୀୟ ସୈନ୍ୟବାହିନୀ ଆଇନ୍‌ର ଅଧୀନସ୍ଥ ଅଟନ୍ତି । ଭାରତୀୟ ଜାତୀୟ ବାହିନୀ (ଆଇ.ଏନ୍. ଏ) ର ଇତିହାସ ବର୍ଣ୍ଣନା କରି ସେ କହିଲେ ଯେ ସୁଭାଷ ଚନ୍ଦ୍ର ବୋଷ ୧୯୪୧ ଜାନୁୟାରୀ ମାସରେ ଭାରତ ଛାଡ଼ି କାବୁଲ ଯାଇଥିଲେ ଓ ସେଠାରୁ ମସ୍କୋବାଟେ ଜର୍ମାନୀରେ ପହଞ୍ଚିଥିଲେ । ୧୯୪୨ ଫେବୃୟାରୀ ୧୫ ତାରିଖରେ ଜାପାନୀ ମାନେ ସିଙ୍ଗାପୁର ଦଖଲ କଲେ ଏବଂ କର୍ଣ୍ଣେଲ ହଣ୍ଟ ଇଂରେଜ ସରକାରଙ୍କ ପକ୍ଷରୁ ଚାଳିଶି ହଜାର ଭାରତୀୟ ଯୁଦ୍ଧବନ୍ଦୀଙ୍କୁ ଜାପାନ ସରକାରଙ୍କ ପ୍ରତିନିଧିଙ୍କ ହାତରେ ସମର୍ପଣ କରିଥିଲେ । ଏତଦ୍ୱାରା ଦରିଆ ପାରିରେ ଭାରତୀୟଙ୍କ ସଂଖ୍ୟା ବୃଦ୍ଧି ପାଇଥିଲା । ସେମାନେ 'ଭାରତୀୟ ସ୍ୱାଧୀନତା ସଂଘ' ଗଠନ କରି ୧୯୪୨ ଜୁନ୍ ମାସରେ ବ୍ୟାଙ୍କକ୍ ଠାରେ ଗୋଟିଏ ସମ୍ମିଳନୀରେ ଏକତ୍ରିତ ହୋଇ 'ଭାରତୀୟ ଜାତୀୟ ବାହିନୀ' ଗଢ଼ିବାକୁ ସ୍ଥିର କଲେ ଏବଂ ସୁଭାଷ ଚନ୍ଦ୍ର ବୋଷଙ୍କୁ ସେ ଅଞ୍ଚଳକୁ ଆସିବାକୁ ନିମନ୍ତ୍ରଣ କଲେ । ୧୯୪୨ ସେପ୍ଟେମ୍ବର ମାସରେ ଯୁଦ୍ଧବନ୍ଦୀ କ୍ୟାପ୍‌ଟେନ୍ ମୋହନ ସିଂଙ୍କ ନେତୃତ୍ୱରେ ''ଭାରତୀୟ ଜାତୀୟ ବାହିନୀ'' ଗଠନ୍ କଲେ । ଭାରତୀୟ ଯୁଦ୍ଧ ବନ୍ଦୀମାନଙ୍କ ମଧ୍ୟରୁ ବହୁ ସଂଖ୍ୟକ ସୈନ୍ୟ ସଂଗ୍ରହ କଲେ । କ୍ୟାପ୍‌ଟେନ୍ ମୋହନ ସିଂ ଜଣେ ସ୍ୱାଧୀନ ଚେତା ଲୋକ ହୋଇଥିବାରୁ ଜାପାନ ସରକାରଙ୍କ ସହ ତାଙ୍କର ମତଭେଦ ହେଲା । ୧୯୪୨ ନଭେମ୍ବର ମାସରେ ଜାତୀୟ ବାହିନୀକୁ ଭାଙ୍ଗି ଦିଆଗଲା ଏବଂ ମୋହନ ସିଂଙ୍କୁ ଗିରଫ କରାଗଲା । ସୁଭାଷ ଚନ୍ଦ୍ର ବୋଷ ଜାପାନରେ ପହଞ୍ଚି ଜାପାନ

ପ୍ରଧାନମନ୍ତ୍ରୀ ଟୋଜୋଙ୍କୁ ସାକ୍ଷାତ୍ କଲେ । ତାଙ୍କ ସହ ଆଲୋଚନା ପରେ ୧୯୪୩ ଅକ୍ଟୋବର ୨୧ ତାରିଖରେ 'ସ୍ୱାଧୀନତା ସଂଘ'ର ନେତୃତ୍ୱ ଗ୍ରହଣ କଲେ । ସ୍ୱାଧୀନ ଭାରତ ପାଇଁ ସିଙ୍ଗାପୁରଠାରେ ଅସ୍ଥାୟୀ ଭାରତ ସରକାର ଗଠିତ ହେଲା । ଏହାକୁ ଜାପାନ, ଜର୍ମାନୀ, ଥାଇଲ୍ୟାଣ୍ଡ ଓ ମାଞ୍ଚୁରିଆ ପ୍ରଭୃତି ରାଷ୍ଟ୍ର ସ୍ୱୀକୃତି ଦେଲେ । ଜାପାନ ସରକାର ଅଧିକୃତ ଆଣ୍ଡାମାନ ଦ୍ୱୀପ ପୁଞ୍ଜକୁ ''ଅସ୍ଥାୟୀ ଭାରତ ସରକାରକୁ'' ଅର୍ପଣ କଲେ ଓ 'ଭାରତୀୟ ଜାତୀୟ ବାହିନୀ'କୁ ସମଗ୍ର ପୃଥିବୀବାସୀ ଜାଣି ପାରିଲେ ।

ଅଭିଯୋଗ ପତ୍ରକୁ ପ୍ରମାଣିତ କରିବା ପାଇଁ ତିରିଶ ଜଣ ସାକ୍ଷୀଙ୍କୁ ପଚରାଗଲା ଓ ମୁଦାଲାମାନଙ୍କ ପକ୍ଷରୁ ସେମାନଙ୍କୁ ଜେରା କରାଗଲା । ତଦ୍ ପରେ ମୁଦାଲାମାନଙ୍କ ଜମାନବନ୍ଦୀ ନିଆଗଲା ।

କ୍ୟାପ୍‌ଟେନ୍ ସାନ୍‌ଓ୍ୱାଜ ଖାଁ ''ଅଦାଲତର କର୍ତ୍ତୃତ୍ୱ ଉପରେ'' ପ୍ରଶ୍ନ ଉଠାଇଥିଲେ । ସେ କିପରି ଓ କାହିଁକି ଭାରତୀୟ ଜାତୀୟ ବାହିନୀରେ ଯୋଗ ଦେଲେ ତାହା ବୁଝାଇଥିଲେ । ମୋ' ନିକଟରେ ଇଲାଣ୍ଡର ରାଜା ଓ ମାତୃଭୂମି ବିକଳ୍ପ ଥିଲା । ମୁଁ ମୋ ମାତୃଭୂମି ପ୍ରତି ଆନୁଗତ୍ୟ ପ୍ରକାଶ କରି ନେତାଜୀଙ୍କୁ ପ୍ରତିଶ୍ରୁତି ଦେଲି ଯେ ଦେଶ ପାଇଁ ମୁଁ ସବୁ କିଛି ତ୍ୟାଗ କରିବି । ଶେଷରେ ଆପଣଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ଓ ଦେଶବାସୀଙ୍କୁ ଜଣାଇ ଦେବାକୁ ଚାହେଁ ଆମେ ଭାରତୀୟ ଜାତୀୟ ବାହିନୀରେ ଯେଉଁ କଷ୍ଟ ସହିଛୁ, କୌଣସି ବେତନ ପ୍ରାପ୍ତ ବା ସଖୀ କଣ୍ଟେଇ ବାହିନୀ ସେପରି ଦୁଃଖ କଷ୍ଟ ସହନ୍ତା ନାହିଁ । ଆମେ କେବଳ ଭାରତର ସ୍ୱାଧୀନତା ପାଇଁ ଲଢ଼େଇ କରିଥିଲୁ । ମୁଁ ସେ ଯୁଦ୍ଧରେ ଯୋଗ ଦେଇଥିବା କଥା ଅସ୍ୱୀକାର କରୁ ନାହିଁ । ସ୍ୱାଧୀନ ଭାରତର ଅସ୍ଥାୟୀ ସରକାରଙ୍କ ସୈନ୍ୟବାହିନୀରେ ଯୋଗଦେଇ ଆମେ ମାତୃଭୂମିର ସ୍ୱାଧୀନତା ପାଇଁ ସଭ୍ୟଦେଶ ମାନଙ୍କର ଯୁଦ୍ଧ ନିୟମ ଅନୁସାରେ ସଂଗ୍ରାମ କରିଅଛୁ । ମୁଁ ସାମରିକ ଅଦାଲତ ବା ଅନ୍ୟ କୌଣସି ଅଦାଲତରେ ବିଚାର ହେବା ଭଳି କୌଣସି ଅପରାଧ କରିନାହିଁ ।''

୨ୟ ମୁଦାଲା କ୍ୟାପ୍‌ଟେନ୍ ପି.କେ. ସାହଗଲ ମଧ ସେହି ନ୍ୟାୟାଳୟର କ୍ଷେତ୍ରାଧିକାର (Jurisdiction)କୁ ଆହ୍ୱାନ କରି କହିଲେ ''ମୋ ବିରୁଦ୍ଧରେ ଆଗତ ଅଭିଯୋଗକୁ ମୁଁ ଅସ୍ୱୀକାର କରୁଅଛି । ମୋ ମତରେ ମୋତେ ସାମରିକ ଅଦାଲତରେ ବିଚାର କରିବା ବେଆଇନ୍ । ଜାପାନୀମାନଙ୍କ ଅସଦ୍ ବ୍ୟବହାର ଭୟରେ ବା କୌଣସି ବାହ୍ୟିକ ବା ଅର୍ଥୋପାର୍ଜନ ପାଇଁ ମୁଁ ଆଇ. ଏନ୍. ଏ. ରେ ଯୋଗ ଦେଇ ନଥିଲି । ମୁଁ ଆଇ.ଏନ୍. ଏ.ରେ ଯୋଗ ଦେଇ ମାତ୍ର ୮୦ ଡଲାର ଦରମା ପାଉଥିଲି । ମୁଁ ଏଥିରେ ଯୋଗ ଦେଇ ନଥିଲେ ୧୨୦ ଡଲାର ଦରମା ପାଉଥାନ୍ତି । ମୁଁ ଦେଶ ସେବା ଉଦ୍ଦେଶ୍ୟରେ ଆଇ. ଏନ୍. ଏ. ରେ ଯୋଗ ଦେଇଥିଲି ଓ ମୋର ମାତୃଭୂମିର ମୁକ୍ତି ପାଇଁ ମୁଁ ଏଥିରେ ଯୋଗ ଦେଇଥିଲି । ମୁଁ ଯୁଦ୍ଧରେ ଯୋଗ ଦେଇଥିଲି ଅସ୍ଥାୟୀ ଆଜାଦ୍ ହିନ୍ଦ୍ ସରକାରଙ୍କ ଦ୍ୱାରା ସଙ୍ଗଠିତ

ସୈନ୍ୟବାହିନୀରେ । ଏହାର ମାଧ୍ୟମରେ ମୁଁ ମୋ ମାତୃଭୂମିକୁ ବିଦେଶୀ ଶାସନାଧୀନରୁ ମୁକ୍ତ କରିବା ପାଇଁ ସଭ୍ୟରାଷ୍ଟ୍ର ଦ୍ୱାରା ଅନୁସୃତ ନିୟମାନୁସାରେ ଯୁଦ୍ଧ କରିଥିଲି । ଏପରି କରି ମୁଁ କୌଣସି ଅପରାଧ କରିନାହିଁ । ବରଂ ମୁଁ ସାଧ ଅନୁସାରେ ମାତୃଭୂମିର ସେବା କରିଅଛି ।''

ଲେଫ୍‌ଟନାଣ୍ଟ ଜି. ଏସ୍. ଧୀଲନ୍ ମଧ ତାଙ୍କର ବିଚାର କରୁଥିବା ନ୍ୟାୟାଳୟର କ୍ଷେତ୍ରାଧିକାରକୁ ପ୍ରଶ୍ନ କରିଥିଲେ । ମୁଁ ଯେଉଁ ଡେରାଡୁନ୍ ମିଲିଟାରୀ କଲେଜରେ ଟ୍ରେନିଂ ନେଇଛି ସେଠାରେ ତାହାର କାନ୍ଥରେ ଲେଖାଯାଇଛି- ''ତୁମ ଦେଶର ସମ୍ମାନ, ମଙ୍ଗଳ ଓ ନିରାପତ୍ତା ହିଁ ୧ମ ବିଚାର୍ଯ୍ୟ । ମୁଁ ଅନୁଭବ କଲି ଯେ ମୋ ଦେଶ ଇତିହାସର ସେହି ଘଡ଼ି ସନ୍ଧି ମୁହୂର୍ତ୍ତରେ ଯଦି ଏକ ଦୃଢ଼ ଜାତୀୟ ବାହିନୀ ଗଢ଼ାଯାଏ, ତେବେ ତାହା ସାହାଯ୍ୟରେ ଯେ କେବଳ ଭାରତକୁ ପରାଧୀନତାରୁ ମୁକ୍ତ କରାଯିବ, ସେତିକି ନୁହେଁ, ଜାପାନୀମାନେ ସେମାନଙ୍କର ପ୍ରତିଶ୍ରୁତି ଭଙ୍ଗ କରି ଯଦି ଭାରତର ସ୍ୱାଧୀନତାରେ ବାଧା ସୃଷ୍ଟି କରନ୍ତି, ସେମାନଙ୍କୁ ମଧ ସଫଳ ଭାବରେ ପ୍ରତିରୋଧ କରିହେବ । ଭାରତର ଅସ୍ଥାୟୀ ସ୍ୱାଧୀନ ସରକାରଙ୍କ ଅଧୀନରେ ନିୟମିତ ଭାବରେ ସଙ୍ଗଠିତ ଲଢୁଆ ବାହିନୀରେ ଯୋଗ ଦେଇ ମୁଁ ଯାହା କରିଛି, ତାହା ସେହି ବାହିନୀର ସୈନ୍ୟ ଭାବରେ ମୋ'ର କର୍ତ୍ତବ୍ୟ ସମ୍ପାଦନ ପାଇଁ କରିଛି । ମୋ'ର ସେହି କାର୍ଯ୍ୟ ଭାରତର ସୈନ୍ୟ ବାହିନୀ ଆଇନ୍ ବା ଭାରତୀୟ ଫୌଜଦାରୀ ଆଇନ ଅନୁସାରେ କୌଣସି ଅଭିଯୋଗ ରୂପରେ ଆଗତ ହୋଇ ପାରିବ ନାହିଁ । ତେଣୁ ଏହି ସାମରିକ ଅଦାଲତ ମୋର ବିଚାର କରିବା ବେଆଇନ୍ ।''

ପଣ୍ଡିତ ନେହେରୁଙ୍କ ସମେତ ୧୨ ଜଣ ପ୍ରଖ୍ୟାତ ଓକିଲ ମୁଦାଲାଙ୍କ ପକ୍ଷରୁ ଅଦାଲତରେ ଉପସ୍ଥିତ ଥିଲେ । ବୁଲାଭାଇ ଜେ. ଦେଶାଇ ମୁଖ୍ୟ ପ୍ରତିବାଦୀ ଓକିଲ ନିଜର ଜେରା କରିବାର ଦକ୍ଷତା ପ୍ରଦର୍ଶନ କରିଥିଲେ । ସେ କହିଲେ, ''ସ୍ୱାଧୀନ ଭାରତ ଓ ଇଂଲାଣ୍ଡ ମଧ୍ୟରେ ଯୁଦ୍ଧ ସ୍ଥିତି ଥିବାରୁ (at war) ମହା ମହିମ ସମ୍ରାଟ ଜଣେ ସାଧାରଣ ବ୍ୟକ୍ତିଙ୍କଠାରୁ ଯାହା ଦାବୀ କରୁ ଅଛନ୍ତି ବା କରିଥାନ୍ତେ, ଯୁଦ୍ଧ ଚାଲିଥିବା ଯୋଗୁଁ ସେନ୍ୟମାନଙ୍କ ଠାରୁ ତାହା ଦାବୀ କରି ପାରିବେ କି ନାହିଁ, ସେହି ପ୍ରଶ୍ନ ଉଠୁଛି ।''

''ଆନ୍ତର୍ଜାତିକ ଆଇନ୍ ଅନୁସାରେ ସେମାନେ ଅନ୍ୟ ଗୋଟିଏ ବିଦେଶୀ ରାଷ୍ଟ୍ରର ପ୍ରଜାରୂପେ ନିଜକୁ ସଙ୍ଗଠିତ କରିପାରିବେ ଏବଂ ଯଦି ଏପରି ଗୋଟିଏ ସୈନ୍ୟବାହିନୀ ଥିବ, ତାହା ଜରିଆରେ ସେମାନେ ସ୍ୱାଧୀନତା ସଂଗ୍ରାମ ଚଳାଇ ପାରିବେ- ସଫଳ ହେଲା କି ନାହିଁ ତାହା ଅନ୍ୟ ଗୋଟିଏ ପ୍ରଶ୍ନ । ଯୁଦ୍ଧ ଚାଲିଥିବା ବେଳେ ଯୁଦ୍ଧ ପାଇଁ ସେହି ବାହିନୀର ସୈନିକମାନେ ଯାହା କରିଥିଲେ (ତାହା ଏତଦ୍‌ଭିନ୍ନ ଦେଶରେ ବିଚାର ଚାଲିଥିବା ଯୁଦ୍ଧାପରାଧ ହୋଇ ନଥିଲେ) ସେଥିପାଇଁ ସେ ଯେ କୌଣସି ଅଭିଯୋଗରୁ ମୁକ୍ତ ହେବା ପାଇଁ ହକ୍‌ଦାର । ଏପରି ସ୍ଥଳେ ମୋ'ର ନିବେଦନ ଯେ ଯେଉଁମାନେ ଏଠାରେ ଆସାମୀ

ହୋଇ ଛିଡ଼ା ହୋଇଛନ୍ତି, ସେମାନେ ନିଜ କର୍ତ୍ତବ୍ୟ ସମ୍ପାଦନ କରିବାବେଳେ କୌଣସି ଦେଓ୍ୱାନୀ ବା ଫୌଜଦାରୀ ଦାୟରୁ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ଘୋଷିତ ହେବା ଉଚିତ୍ । ଆନ୍ତର୍ଜାତିକ ଆଇନ୍ ପୁସ୍ତକର ଭାଷା ଅନୁସାରେ ଯେଉଁ ସରକାରଙ୍କ ନିର୍ଦ୍ଦେଶ ଅନୁସାରେ ସେମାନେ କାର୍ଯ୍ୟ କରିଅଛନ୍ତି ସେହି ସରକାର ହିଁ ସେଥିପାଇଁ ଦାୟୀ । କିନ୍ତୁ ଯୁଦ୍ଧ ଚାଲିଥିବାବେଳେ କୌଣସି ରାଷ୍ଟ୍ରକୁ ଏଥିପାଇଁ ଦାୟୀ କରାଯାଇ ପାରିବ ନାହିଁ । ଏହା ଅବଶ୍ୟ ସତ୍ୟ ଯେ କୌଣସି ବିଦ୍ରୋହ ସଫଳ ହେଲେ ସେଥିରୁ ଗୋଟିଏ ନୂଆ ଶାସନର ସୃଷ୍ଟି ହୁଏ । ଏହା ହିଁ ଚରମ ପରିଣତି । ମୋ ମହକିଲଙ୍କ ସପକ୍ଷରେ ଏହାର ଉତ୍ତର ଆନ୍ତର୍ଜାତିକ ଆଇନ୍ ଦେଇଛି ।''

ବୁଲାଭାଇ ଦେଶାଇ ସିଧା ସଳଖ ସମସ୍ୟା ଉଦ୍‌ଥାପନ କରି (ପରାଧୀନ ଦେଶର ବିଦ୍ରୋହ କରିବାର ଅଧିକାର) କହିଲେ ଯେ ''ଜଣେ ଭାରତୀୟ ଯେଉଁ ସ୍ଥିତିରେ ଅଛି, ତାହା ପକ୍ଷରେ ପ୍ରଶ୍ନ ଉଠୁଛି କେଉଁଭଳି ପରିସ୍ଥିତିରେ ଓ କେଉଁ ପରିମାଣରେ ଅନୁରକ୍ତି କଥା ଉଠିବ ନା ନାହିଁ । କାରଣ ରାଜାକୁ ରାଜାଙ୍କ ଠାରୁ ସ୍ୱତନ୍ତ୍ର କରି ବିଚାର କଲେ, କୌଣସି ବ୍ୟକ୍ତି ପକ୍ଷରେ ଏହାକୁ ନିଷ୍ପତ୍ତି କରିବା କଷ୍ଟ ସାଧ ହେବ । ତେଣୁ ମୋ' ଯୁକ୍ତିକୁ ମୁଁ ଫେବୃୟାରୀ ୧୭ ତାରିଖ ଘଟଣାରେ ସୀମିତ ରଖିବି ।''

''ଏଭଳି ଅବସ୍ଥାରେ ଜଣେ ଭାରତୀୟ ସ୍ଥିତି ବଡ଼ ଜଟିଳ ଏବଂ ଏହାର ସମାଧାନ ପାଇଁ ମୁଁ ଏହି ନ୍ୟାୟାଳୟରେ ପ୍ରଥମ ନୀତି ବୟାନ୍ କରୁଅଛି । ରାଜା ଓ ରାଜ୍ୟ ଏକତ୍ର ହେଲେ କୌଣସି ବିକଳ୍ପର ପ୍ରଶ୍ନ ଉଠିବ ନାହିଁ । ଆପଣ ଯଦି ରାଜାଙ୍କ ସହିତ ଯୁଦ୍ଧ କରନ୍ତି ଓ ନିଜ ଦେଶର ସ୍ୱାର୍ଥ ବିରୋଧରେ ଲଢ଼େଇ କରନ୍ତି, ତାହା ହେଲେ କୌଣସି ପ୍ରଶ୍ନ ଉଠିବ ନାହିଁ । କିନ୍ତୁ ଏ ପ୍ରଶ୍ନ ଉଠିବ, ଯେଉଁଠାରେ ସ୍ୱାଧୀନତା ପାଇଁ ସଂଗ୍ରାମ ଚାଲିଥିବ ଏବଂ ଆପଣଙ୍କୁ ଗୋଟିଏ ବହିରୁ ପଢ଼ି ଶୁଣାଇବି ଯେ ମାନବିକ ଅଧିକାରକୁ ସୁରକ୍ଷା ଦେବା କ୍ଷେତ୍ରରେ ପୃଥିବୀ କେତେ ପ୍ରଗତି କଲାଣି । ଜଣେ ନିଜ ଦେଶର ସ୍ୱାଧୀନତା ପାଇଁ ସଂଗ୍ରାମ କରୁଥିବା ବେଳେ ଅନୁରକ୍ତି ପ୍ରଶ୍ନ ଉଠି ପାରିବ କି ? ଆପଣ ନିଜ ଆତ୍ମାକୁ ବିକ୍ରୟ କରି ଦେଇ ନଥିଲେ, ଆପଣ ନିଜ ଦେଶର ସ୍ୱାଧୀନତା ପାଇଁ ସଂଗ୍ରାମ କରୁଥିବା ବେଳେ ଅନ୍ୟ କାହା ପ୍ରତି ଆନୁଗତ୍ୟ ସେଥିରେ ବାଧା ହେବ କିପରି ? ଏହାର ଅର୍ଥ ହେଉଛି, ଏପରି ଘଟୁଥିଲେ, ଏହା ସ୍ଥାୟୀ ଦାସତ୍ୱ ଛଡ଼ା ଅନ୍ୟ କିଛି ନୁହେଁ ।''

ସେ କହିଲେ ଯେ ''ଆଧୁନିକ ଆନ୍ତର୍ଜାତିକ ଆଇନ୍‌ରେ ଏବେ ସ୍ୱାଧୀନ ହୋଇନଥିବା ଯେ କୌଣସି ଜାତିର ସ୍ୱାଧୀନତା ପାଇଁ ସଙ୍ଗଠିତ ସଂଗ୍ରାମ କରିବା ଲାଗି ଅଧିକାର ରହିଛି । ତେଣୁ ଗୋଟିଏ ସୈନ୍ୟ ବାହିନୀ ଏବଂ ଏହି ବାହିନୀର ପ୍ରତ୍ୟେକ ସଦସ୍ୟ ଦେଶକୁ ସ୍ୱାଧୀନ କରିବା ଲାଗି ସଂଗ୍ରାମ ଚାଲିଥିବାବେଳେ ଯାହା କରିବେ, ତାହା କୌଣସି ଦେଶର ଆଭ୍ୟନ୍ତରୀଣ ଆଇନ୍‌ରେ ବିଚାର ଯୋଗ୍ୟ ନୁହେଁ ।''

ବହୁ ପ୍ରମାଣ ଦେଇ ମୁଦେଇ ପକ୍ଷ (ସରକାର) କିପରି ଭାବରେ ଗୋଟିଏ ସ୍ୱାଧୀନ ସୈନ୍ୟ ବାହିନୀ ଗଢ଼ି ଏବଂ ସେହି ବାହିନୀ କିପରି ଇଂରେଜମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିବା ପାଇଁ ନିୟୋଜିତ ହେଲେ ତାହା ବୁଝାଇ ଦେଇଛନ୍ତି । ଦୁଲାଭାଇ ଦେଶାଇ ସେହି ତଥ୍ୟ ଗୁଡ଼ିକ ଉପରେ ନିର୍ଭର କରି ପ୍ରମାଣ କରିଥିଲେ ଯେ ସେହି ଶାସନ ଗୋଟିଏ ରାଷ୍ଟ୍ରର ପଦବୀ ଲାଭ କରିଥିଲା । ଅର୍ଥାତ୍ ତାହାର ଭୂଭାଗ ଥିଲା । ଜାପାନ ତାକୁ କେତେକ ଭାରତୀୟ ଅଞ୍ଚଳ ହସ୍ତାନ୍ତର କରିଥିଲା । ତାହା ଗୋଟିଏ ସ୍ୱାଧୀନ ଦେଶ ଭାବରେ ଜାପାନ ପ୍ରଭୃତି କେତେକ ଦେଶର କୁଟନୈତିକ ସ୍ୱୀକୃତି ଲାଭ କରିଥିଲା ଓ ସେ ହିଁ ସ୍ୱାଧୀନ ରାଷ୍ଟ୍ର ଗୁଡ଼ିକ ସହ ରାଷ୍ଟ୍ରଦୂତ ବିନିମୟ କରିଥିଲା । ଅନ୍ୟ ସ୍ୱାଧୀନ ଦେଶର ପରିଚୟ ପତ୍ର ଗ୍ରହଣ କରିଥିଲା ଓ ସେହି ଅଧିକାର ବଳରେ ଅନ୍ୟ ସ୍ୱାଧୀନ ଦେଶ ଭଳି ଇଂଲାଣ୍ଡ, ଆମେରିକା ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିଲା ଓ ସେହି ଦେଶମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିଥିଲା । ଅତଏବ ଗୋଟାଏ ପରାଧୀନ ଦେଶ ଯେତେବେଳେ ସ୍ୱାଧୀନତା ଅର୍ଜନ କରିବା ପାଇଁ ଯୁଦ୍ଧ କରେ ଏବଂ ଏକ ସଙ୍ଗଠିତ ସୈନ୍ୟ ବାହିନୀ ଭାବରେ ଯୁଦ୍ଧର ନିୟମାନୁସାରେ ସେହି ଯୁଦ୍ଧ କରୁଥାଏ, ତେବେ ସେହି ଯୁଦ୍ଧ ପାଇଁ ସେହି ସ୍ୱାଧୀନ ଦେଶ ପରାଧୀନ ଦେଶର ଏଭଳି ସୈନ୍ୟବାହିନୀ ବିରୁଦ୍ଧରେ କୌଣସି ଅଭିଯୋଗ କରିପାରିବ ନାହିଁ କିମ୍ବା ତାହାର ବିଚାର କରିପାରିବ ନାହିଁ । ଅଭିଯୁକ୍ତ ସୈନ୍ୟମାନେ ପୂର୍ବରୁ ରାଜାଙ୍କ ପ୍ରତି ଆନୁଗତ୍ୟ ପାଇଁ ଶପଥ ଭଙ୍ଗ କରିଛନ୍ତି ବୋଲି ମଧ କୁହାଯାଇ ପାରିବ ନାହିଁ । କାରଣ ସେମାନେ ନିଜ ମାତୃଭୂମିର ସ୍ୱାଧୀନତା ପାଇଁ ଲଢୁଥିବାରୁ ରାଜାଙ୍କ ପ୍ରତି ଆନୁଗତ୍ୟରୁ ସେମାନେ ମୁକ୍ତ ଅଟନ୍ତି ।''

ଏହିଭଳି ଭାବରେ ସରକାରୀ ପକ୍ଷ ଯେପରି ସାକ୍ଷୀ ଦଲିଲ ଓ ଆଇନ୍‌ର ବ୍ୟାଖ୍ୟା କରି ପ୍ରମାଣ କରିଥିଲେ ଯେ ଅଭିଯୁକ୍ତ ତିନିଜଣ ସାମରିକ ଅଧିକାରୀ ଯଥା- କ୍ୟାପ୍‌ଟେନ୍ ସାହାନ୍‌ୱାଜ ଖାଁ, କଲୋନେଲ ପି. କେ. ସାହଗଲ ଓ ଜି. ଏସ୍. ଧୀଲନ ଭାରତୀୟ ସୈନ୍ୟ ବାହିନୀ ଆଇନ୍ ବା Indian Army Acts ଓ ଭାରତୀୟ ପିଙ୍ଗଲ କୋର୍ଡ ବା Indian Penal Codeର ବିଭିନ୍ନ ଆଇନ୍ ଅନୁସାରେ ପ୍ରାଣଦଣ୍ଡ, ନିର୍ବାସନ ଦଣ୍ଡ ଓ ଅନ୍ୟାନ୍ୟ ଦଣ୍ଡ ପାଇବାକୁ ବାଧ ଅଟନ୍ତି । ସେହିଭଳି ମୁଦାଲାମାନଙ୍କ ପକ୍ଷରୁ ମଧ ବିଭିନ୍ନ ଆନ୍ତର୍ଜାତିକ ଆଇନ୍ ଅନୁସାରେ ନିର୍ଭୁଲ୍ ଭାବରେ ପ୍ରମାଣ କରିଦେଇଥିଲେ ଯେ 'ଭାରତୀୟ ଜାତୀୟ ବାହିନୀ' ଅଫିସର ଅନ୍ୟ ଯେ କୌଣସି ସ୍ୱାଧୀନ ଦେଶର ସରକାରୀ ସୈନ୍ୟଙ୍କ ଭଳି ଅନ୍ୟ ଏକଦେଶ ବା ଇଲାଣ୍ଡ ବିରୁଦ୍ଧରେ ଯୁଦ୍ଧ କରିଥିଲେ ମଧ ଏବଂ ଯୁଦ୍ଧ କରିବା ଭିତରେ ନରହତ୍ୟା କରିଥିଲେ ମଧ ଆନ୍ତର୍ଜାତିକ ଆଇନ୍ ଅନୁସାରେ ସେମାନଙ୍କୁ ଦଣ୍ଡିତ କରାଯାଇ ପାରିବ ନାହିଁ । ତେଣୁ ଅଭିଯୁକ୍ତମାନେ ନିର୍ଦ୍ଦୋଷରେ ମୁକ୍ତି ପାଇବା ପାଇଁ ହକ୍‌ଦାର ଅଟନ୍ତି ।

ଉଭୟ ପକ୍ଷର ଜେରା ଜମାନ୍‌ବନ୍ଦୀ ଓ ଜବାବ ସୁଆଲର ଶେଷ ହେବାପରେ ମଧ ଭାରତୀୟମାନେ ତଥା ବିଶ୍ୱର ବିଭିନ୍ନ ରାଷ୍ଟ୍ରରେ ଥିବା ଭାରତର ସମର୍ଥକ ଓ ପ୍ରବାସୀ

ଭାରତୀୟମାନେ ଯାହା ଆଶଙ୍କା କରୁଥିଲେ, ତାହାହିଁ ଘଟିବାକୁ ଯାଉଥିଲା । ଅର୍ଥାତ ଭାରତରେ ବ୍ରିଟିଶ୍ ଶାସନ ଶେଷ ମୁହୂର୍ତ୍ତରେ ପହଞ୍ଚିଥିଲେ ମଧ୍ୟ ସରକାରୀ ପକ୍ଷ ବ୍ରିଟିଶ୍ ଆଇନ୍‌ର ଶକ୍ତି ଭାରତ ବାସୀ ତଥା ବିଶ୍ୱବାସୀଙ୍କୁ ଦେଖାଇ ଦେବାକୁ ବଦ୍ଧ ପରିକର ଥିଲେ । ମୁଦାଲାମାନଙ୍କ ପକ୍ଷରୁ ଲଢୁଥିବା ମୁଖ୍ୟ ଅଧିବକ୍ତାଙ୍କ ଗଭୀର ଜ୍ଞାନ ଓ ବିଚକ୍ଷଣତା ସମ୍ପର୍କରେ ବାରାନ୍ତରେ ଆଲୋଚନା ହୋଇଅଛି ।

ଡିସେମ୍ବର ୩୧ ତାରିଖ ଦିନ ସାମରିକ ବିଚରାଳୟରେ ଅଧିବେଶନ ଆରମ୍ଭ ହେବାରୁ ନ୍ୟାୟାଧୀଶ ମୁଦାଲା ତିନିଜଣଙ୍କର ଚରିତ୍ର- ଆଚରଣ ଓ ଚାକିରୀ ବିବରଣୀ ପ୍ରଦାନ କରିବାକୁ ସାମରିକ ଅଭିଯୋଗକାରୀ କର୍ଣ୍ଣେଲ୍ ୱାଲ୍‌ସ୍‌ଙ୍କୁ ନିର୍ଦ୍ଦେଶ ଦେଇଥିଲେ । ତାଙ୍କର ବୟାନ୍ ଅନୁସାରେ ''ପ୍ରଥମ ମୁଦାଲା କ୍ୟାପ୍‌ଟେନ୍ ସାହାନ୍‌ୱାଜ୍ ଖାଁଙ୍କର ବୟସ ୩୧ ବର୍ଷ ୧୧ ମାସ । ସେ ୯ ବର୍ଷ ଏଗାର ମାସ ଚାକିରୀ କରିଛନ୍ତି । ରାଜାଙ୍କ ଦ୍ୱାରା ସ୍ୱୀକୃତ ସେ ଜଣେ ଅଧିକାରୀ ବା ଅଫିସର । ସେ ପାଞ୍ଚ ବର୍ଷ ଏକମାସ କ୍ୟାପ୍‌ଟେନ୍ ପାହ୍ୟାରେ କାର୍ଯ୍ୟ କରିଅଛନ୍ତି । ଏହି ମକଦ୍ଦମାକୁ ଛାଡ଼ିଦେଲେ ତାଙ୍କର ଚରିତ୍ର ଅତି ଉତ୍ତମ । ସେ କୌଣସି ପୁରସ୍କାର ପାଇ ନାହାନ୍ତି କିମ୍ବା ଆଗରୁ କୌଣସି ଦଣ୍ଡ ପାଇନାହାଁନ୍ତି ।''

''କ୍ୟାପ୍‌ଟେନ୍ ସାହଗଲ ବୟସ ୨୮ ବର୍ଷ ୧୧ ମାସ । ରାଜାଙ୍କ ଦ୍ୱାରା ସ୍ୱୀକୃତ ସେ ଜଣେ କ୍ୟାପ୍‌ଟେନ୍ ଓ ପାଞ୍ଚବର୍ଷ ସେହି ପାହ୍ୟାରେ କାର୍ଯ୍ୟ କରି ଅଛନ୍ତି । ତାଙ୍କର ସାଧାରଣ ଚରିତ୍ର ଅତି ଉତ୍ତମ ଓ ସେ ପୂର୍ବରୁ କୌଣସି ଦଣ୍ଡ ପାଇନାହାଁନ୍ତି ।''

''କ୍ୟାପ୍‌ଟେନ୍ ଧୀଲନ୍‌ଙ୍କ ବୟସ ୩୦ ବର୍ଷ ୯ ମାସ । ତନ୍ମଧ୍ୟରୁ ସେ ଚାରିବର୍ଷ ତିନିମାସ ଲେଫ୍‌ଟନାଣ୍ଟ ରୂପେ କାର୍ଯ୍ୟ କରି ଅଛନ୍ତି । ତାଙ୍କର ଚରିତ୍ର ଅତି ଉତ୍ତମ ଏବଂ ସେ ପୂର୍ବରୁ କୌଣସି ଦଣ୍ଡ ପାଇନାହାନ୍ତି ।''

ସାମରିକ ଅଦାଲତ ରାୟ ଓ ଦଣ୍ଡାଦେଶ ତଥା ସର୍ବୋଚ୍ଚ ସେନାପତିଙ୍କ ଦ୍ୱାରା ତାହାର ଅନୁମୋଦନ ୧୯୪୬ ମସିହା ଜାନୁୟାରୀ ୩ ତାରିଖରେ ଭାରତ ସରକାରଙ୍କ ରାଜପତ୍ର ବା ଗେଜେଟ୍‌ର ଅତିରିକ୍ତ ସଂସ୍କରଣରେ ଘୋଷିତ ହୋଇଥିଲା । ସେଥିରେ ଲେଖାଥିଲା ।:-

''କ୍ୟାପ୍‌ଟେନ୍ ସାହାନ୍‌ୱାଜ୍ ଖାଁ, କ୍ୟାପ୍‌ଟେନ୍ ପ୍ରେମ କୁମାର ସାହଗଲ ଓ କ୍ୟାପ୍‌ଟେନ୍ ଜି. ଏସ୍. ଧୀଲନ, ମହା ମହିମ ବ୍ରିଟିଶ୍ ସମ୍ରାଟଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିବା ନିମିତ୍ତ ସାମରିକ ଅଦାଲତରେ ସେମାନଙ୍କର ବିଚାର ହୋଇଥିଲା ।''

''ଏହି ତିନିଜଣ ଅଫିସର ରାଜାଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିବା ପ୍ରମାଣିତ ହୋଇଅଛି । ଏତଦ୍ ବ୍ୟତୀତ କେବଳ ସାହାନୱାଜ ଖାଁଙ୍କୁ ଛାଡ଼ି ଅନ୍ୟ ଦୁଇଜଣଙ୍କ ବିରୁଦ୍ଧରେ ନରହତ୍ୟା ବା ନରହତ୍ୟାରେ ସାହାଯ୍ୟ ଅଭିଯୋଗ ପ୍ରମାଣିତ ହୋଇ ନାହିଁ । ତେଣୁ ସେ ଦୁଇଜଣଙ୍କୁ ନରହତ୍ୟା ଅଭିଯୋଗରୁ ମୁକ୍ତ କରାଯାଇଅଛି । ତିନିଜଣ ମୁଦାଲାଙ୍କୁ ପ୍ରାଣଦଣ୍ଡ

ଓ ଦେଶାନ୍ତର ଦଣ୍ଡ ଦିଆଯିବା ସଙ୍ଗେ ସଙ୍ଗେ ସେମାନଙ୍କୁ ଚାକିରୀରୁ ବରଖାସ୍ତ କରାଗଲା ଏବଂ ସେମାନଙ୍କର ସମସ୍ତ ବକେୟା ଦରମାକୁ ବ୍ୟାଜାପ୍ତ କରାଗଲା ।

ଏହିଭଳି ଭାବରେ ଭାରତର ବ୍ରିଟିଶ୍ ଶାସନକୁ ଚିରସ୍ଥାୟୀ ଓ ନିରାପଦ ରଖିବା ପାଇଁ ସେହି ବ୍ରିଟିଶ୍ ଶାସକମାନେ ଯେଉଁ ମନଗଢ଼ା ଆଇନ୍ ତିଆରି କରିଥିଲେ, ସେହି ଆଇନ୍ ଅନୁସାରେ ତିନିଜଣ ବିଖ୍ୟାତ ସ୍ୱାଧୀନତା ସଂଗ୍ରାମୀଙ୍କୁ ସର୍ବୋଚ୍ଚ ଦଣ୍ଡ ଆଦେଶ ଦିଆଗଲା ସିନା କିନ୍ତୁ ଯେଉଁ ଆଇନକୁ କୋଟି କୋଟି କୋଟି ଭାରତବାସୀ ପୋଡ଼ି ଜାଳି ପାଉଁଶ କରିଦେଇଥିଲେ, ତାହାକୁ ବ୍ରିଟିଶ୍ ସରକାର ଫାଙ୍କି ଦେଇ ପାରିଲେ ନାହିଁ । ସାମରିକ ଅଦାଲତରେ ଆଇ. ଏନ୍. ଏ ବା ଭାରତୀୟ ମୁକ୍ତି ବାହିନୀର ବିଚାରକୁ ବାତିଲ୍ କରି ଅଭିଯୁକ୍ତ ମାନଙ୍କୁ ଖଲାସ କରିଦେବା ପାଇଁ ଆକୁମାରୀ ହିମାଚଳ ଯେଉଁ ଗଣ ବିକ୍ଷୋଭ ଗତ ଦୁଇମାସ ଧରି ନିରବଚ୍ଛିନ୍ନ ଭାବରେ ଚାଲିଥିଲା, ସେଥିପ୍ରତି ସରକାର ମୁଣ୍ଡ ନୁଆଁଇବାକୁ ବାଧ ହୋଇଥିଲେ । ସେ ସମ୍ପର୍କରେ ସରକାରୀ ବିବରଣୀରେ ଉଲ୍ଲେଖ କରାଯାଇଛି ଯେ ସେହି ଅଭିଯୁକ୍ତମାନଙ୍କୁ ନିସର୍ତ୍ତ ମୁକ୍ତ କରିବାକୁ ଜଣେ ବ୍ରିଟିଶ୍ ପ୍ରଶାସକ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶର ଲାଟ୍ ଜର୍ଜ କନିଙ୍ଗହାମ୍ ତତ୍କାଳୀନ ଭାଇସ୍ ରାୟ ଲର୍ଡ଼ ୱାଭେଲଙ୍କୁ ନିଜର କ୍ଷମତା ବହିର୍ଭୂତ ଏକ ପରାମର୍ଶ ଦେଇଥିଲେ ଯେ ସର୍ବୋଚ୍ଚ ସେନାପତି ଯଥା ଶୀଘ୍ର ଘୋଷଣା କରନ୍ତୁ ଯେ ଭାରତର ଜନ ସାଧାରଣ ଏ ବିଚାରକୁ ବିରୋଧ କରୁଥିବାରୁ ସେହି ବିଚାରକୁ ତୁରନ୍ତ ବନ୍ଦ କରି ଦିଆଯାଉ । ଅବଶ୍ୟ ବିଚାର ବନ୍ଦ ହେଲା ନାହିଁ, କିନ୍ତୁ ଏହି ବିଚାର ଭାରତର ସ୍ୱାଧୀନତା ପାଇଁ ବିପୁଳ ଜାତୀୟ ଚେତନା ଜାଗ୍ରତ କରିଥିଲା ଓ ବ୍ରିଟିଶ୍ ପ୍ରଶାସନର ଘୋର କ୍ଷତି ସାଧନ କରିଥିଲା । ତଥାପି ସରକାର ନିଜର ଇଚ୍ଛା ବିରୁଦ୍ଧରେ ଜନମତ ଚାପରେ ଅଭିଯୁକ୍ତ ଆଇ. ଏନ୍. ଏ. ଅଫିସରମାନଙ୍କୁ ଦିଆଯାଇଥିବା ମୃତ୍ୟୁଦଣ୍ଡ ଓ ନିର୍ବାସନ ଦଣ୍ଡକୁ ବାତିଲ କରିଦେଇ କେବଳ ନିଜର ମୁଖରକ୍ଷା କରିବା ପାଇଁ ସେମାନଙ୍କର ବକେୟା ଦରମାକୁ ବାଜ୍ୟାପ୍ତ କରିଦେଇଥିଲେ । ତାହା ଫଳରେ ଏକ ଅଚିନ୍ତନୀୟ ଗଣ ବିସ୍ଫୋରଣକୁ ବନ୍ଦ କରିଦେଇଥିଲେ, "An explosive situatation was saved by the commander-in-chief when he commuted the death sentence of the three INA officers. Had the sentence passed by the court been carried out against strong public opinions it to would have created chaos at that time." (Trials of Independence, page-169 by B.R. Agarwal) ଯଦି ସେହି ରାୟ କାର୍ଯ୍ୟକାରୀ ହୋଇଥାନ୍ତା, ତେବେ ସେ ସମୟରେ ଦେଶରେ ଯେ ଘୋର ଅରାଜକତା ସୃଷ୍ଟି ହୋଇଥାନ୍ତା ଏଥିରେ ସନ୍ଦେହ ନାହିଁ ।

ଇଂରେଜ ଶାସନ ବେଳର ଏହାହିଁ ଥିଲା ଦେଶପ୍ରେମୀ ମାନଙ୍କର ଶେଷ ବିଚାର ।

ନବେ ବର୍ଷ ତଳେ ୧୮୫୭ରେ ଶେଷ ମୋଗଲ ସମ୍ରାଟ ବାହାଦୂର ସାହା ଜାଫର୍‌ଙ୍କର ବିଚାର ଥିଲା ପ୍ରଥମ ଏବଂ ତାହା ଥିଲା ବ୍ରିଟିଶ୍ ଶାସନର ଚରମ ଅନ୍ୟାୟର ଦୃଷ୍ଟାନ୍ତ । ଶେଷ ବିଚାର ଥିଲା ଆଇ. ଏନ୍. ଏ.ର । ତାହା ସର୍ବାଧୁନିକ ବିଚାର ବ୍ୟବସ୍ଥାର କେବଳ ସଫଳ ପ୍ରଦର୍ଶନ ନଥିଲା, ଅଦାଲତର ଚାରିକାନ୍ଥ ଭିତରେ ଘୋଷିତ ହୋଇଥିବା ନିର୍ଦ୍ଦେଶ ଜନବିକ୍ଷୋଭ, ଯୋଗୁଁ ଅକାମୀ ହୋଇଯାଇଥିଲା । ବ୍ରିଟିଶ୍ ଶାସନକୁ ଦୃଢ଼ କରିବା ପାଇଁ ଅଭିପ୍ରେତ ଆଇନ୍ ବ୍ୟବସ୍ଥା ଜନମତର ଶାଣିତ ଖଡ୍ଗର ଆଘାତରେ କେବଳ ବିଦୀର୍ଣ୍ଣ ହୋଇ ନଥିଲା, ତାହାର ପ୍ରଭାବରେ ସ୍ୱାଧୀନତା ପ୍ରାପ୍ତି ତ୍ୱରାନ୍ୱିତ ହେବା ସଙ୍ଗେ ସଙ୍ଗେ ବ୍ରିଟିଶ୍ ଶାସନର ମୃତ୍ୟୁ ଘଣ୍ଟି ବଜାଇଥିଲା । ଏହି ଉଭୟ କ୍ଷେତ୍ରରେ ଭାରତର ସୈନ୍ୟବାହିନୀ ହିଁ ଏକ ଗୌରବମୟ ନିଷ୍ପତ୍ତିମୂଳକ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲା । ଏହା ସରକାରୀ ତଥା ବେସରକାରୀ ଇତିହାସକାର ମାନେ ମୁକ୍ତ କଣ୍ଠରେ ସ୍ୱୀକାର କରିଅଛନ୍ତି ।



# ଲାଲକିଲ୍ଲା ବିଚାରର ପ୍ରଭାବ

ଆଇ. ଏନ୍. ଏ. ର ପ୍ରତିଷ୍ଠାତା ଓ ସୁପ୍ରିମ୍ କମାଣ୍ଡର ସୁଭାଷ ଚନ୍ଦ୍ରଙ୍କର ରାଜନୈତିକ ଆଦର୍ଶବାଦର ବିଶ୍ଳେଷଣ କରି କୁହାଯାଇ ଅଛି ଯେ ସେ ପ୍ରଥମେ ଜର୍ମାନୀରେ ଇଣ୍ଡିଆନ୍ ଲିଜିୟନ୍ ପରେ ପୂର୍ବ ଏସିଆରେ ଆଇ. ଏନ୍. ଏ. ଗଠନ କରିବା ତାଙ୍କ ପକ୍ଷରେ କୌଣସି ଆକସ୍ମିକ ଘଟଣା ନଥିଲା କିମ୍ବା ଆଦର୍ଶବାଦର ପରିପନ୍ଥୀ ନଥିଲା । ବସ୍ତୁତଃ ତାଙ୍କର କୈଶୋରରୁ ତାହାର ଲକ୍ଷଣ ପରିଲକ୍ଷିତ ହୋଇଥିଲା । Bose's career was prototypical of the development of a militariastic approach to political activity. His autobiography (unfinished) is peppered with example of his this nature. ତାଙ୍କର ଜୀବନରେ ରାଜନୀତିକ କାର୍ଯ୍ୟ କଳାପରେ ଯୁଦ୍ଧବାଦୀ ବିଚାରକୁ ଅପାଂକ୍ତେୟ ମନେ କରାଯାଉ ନଥିଲା । ତାଙ୍କର ଅସମ୍ପୂର୍ଣ୍ଣ ଆତ୍ମଜୀବନୀ ପୁସ୍ତକରେ ମଧ୍ୟ ସେହି ବିଚାର ଧାରା ସ୍ପଷ୍ଟ ଭାବରେ ପ୍ରତିଫଳିତ ।

ଦ୍ୱିତୀୟ ମହାଯୁଦ୍ଧ ପୂର୍ବରୁ ସୁଭାଷ ନିଃସନ୍ଦେହରେ ନେହେରୁଙ୍କ ସମକକ୍ଷ ଜଣେ ବିଖ୍ୟାତ ନେତା ଭାବରେ ବିବେଚିତ ହେଉଥିଲେ ଏବଂ ଯୁଦ୍ଧୋତ୍ତର ସମୟରେ ସେ ଯଦି ବଞ୍ଚି ରହିଥାନ୍ତେ ତେବେ ନେହେରୁଙ୍କର ଜଣେ ମୁଖ୍ୟ ପ୍ରତିଦ୍ୱନ୍ଦ୍ୱୀ ଭାବରେ ପ୍ରତିଭାତ ହୋଇଥାନ୍ତେ । " would have become a serious threat to the leadership of Nehru in free India." (The Indian Army-its contribution to the development of Nation- Page-99 by Stephen P.Cohen)

ଭାରତୀୟ ସୈନ୍ୟ ବାହିନୀର ଶ୍ରେଣୀ ଚରିତ୍ର ଓ ପ୍ରକୃତି ସମ୍ପର୍କରେ ସେ ଏଭଳି ଅଭିଜ୍ଞ ଥିଲେ ଯେ ଯୁଦ୍ଧପରେ ସେ ଆଇ. ଏନ୍. ଏ. ଜବାନମାନଙ୍କଠାରୁ ବିଦାୟ ନେବା ଅବସରରେ ସେମାନଙ୍କୁ କହିଥିଲେ:- "ଆପଣମାନେ ଏହି ଯୁଦ୍ଧରେ ସାମୟିକ ବିଜୟ ଲାଭ କରିନଥିଲେ ସୁଦ୍ଧା ଅକଥନୀୟ ପରିସ୍ଥିତିରେ ଆପଣମାନେ ଯୁଦ୍ଧକ୍ଷେତ୍ରରେ ଯେଉଁ ଅସୀମ ଧୈର୍ଯ୍ୟ ସହକାରେ ବୀରତ୍ୱ ପ୍ରଦର୍ଶନ କରିଅଛନ୍ତି ଓ ଚରମ ଆତ୍ମବଳି ଦେଇଛନ୍ତି ସେହି ସମ୍ବାଦ ଭାରତରେ ପହଞ୍ଚିବା ସଙ୍ଗେ ସଙ୍ଗେ ସେଠାରେ ବ୍ରିଟିଶ୍ ବିରୁଦ୍ଧରେ ଏଭଳି ଗଣ ବିକ୍ଷୋଭ ସୃଷ୍ଟି ହେବ ଯେ ବ୍ରିଟିଶ୍ ପ୍ରଶାସନ ତାକୁ ସମ୍ମୁଖୀନ ହୋଇ ପାରିବ ନାହିଁ ଓ ଅଚିରେ ଭାରତ ପରିତ୍ୟାଗ କରିବାକୁ ବାଧ୍ୟ ହେବ ।"

ସୁଭାଷ ଏହା ମଧ୍ୟ କହୁଥିଲେ ଯେ ଜାତୀୟ ବାହିନୀର ଦେଶପ୍ରେମ ଦିନେ ନା ଦିନେ

ବ୍ରିଟିଶ୍ ପାଇଁ ଲଢୁଥିବା ଭାରତୀୟ ସୈନ୍ୟମାନଙ୍କ ଭିତରେ ମଧ୍ୟ ଅନୁଭୂତ ହେବ, ଯେତେବେଳେ ସେହି ଦେଶାତ୍ମବୋଧ ସେମାନଙ୍କ ମଧ୍ୟରେ ଜାଗ୍ରତ ହେବ, ସେହି ମୁହୂର୍ତ୍ତରେ ସେମାନେ ବ୍ରିଟିଶ୍ ଶାସନ ବିରୁଦ୍ଧରେ ବିଦ୍ରୋହର ଖଡ୍ଗ ଉତ୍ତୋଳନ କରିବେ । ଯୁଦ୍ଧ ଶେଷ ହେବା ପରେ ସେହିଭଳି ପରିସ୍ଥିତି ହେବ ବୋଲି ଭାବୁଥିଲେ । England may win the war, but she can not keep India under her rule any longer. (ଇଂଲାଣ୍ଡ ଯୁଦ୍ଧରେ ଜିତିପାରେ, କିନ୍ତୁ ଯୁଦ୍ଧପରେ ଭାରତକୁ ଆଉ ତାହାର ଶାସନାଧୀନରେ ରଖିପାରିବେ ନାହିଁ ।)

ଆଇ.ଏନ୍.ଏ. ସୈନ୍ୟମାନଙ୍କର ସଂସ୍ପର୍ଶରେ ଆସି କାର୍ଯ୍ୟରତ ଭାରତୀୟ ସୈନ୍ୟବାହିନୀ ଦେଶପ୍ରେମରେ ସଂକ୍ରମିତ ହେବା ପ୍ରକ୍ରିୟା ଯେ କେବଳ ଲାଲକିଲ୍ଲା ବିଚାର ସମୟରେ ଆରମ୍ଭ ହୋଇଥିଲା, ତାହା ନୁହେଁ। ତାହାର ବହୁ ପୂର୍ବରୁ ବ୍ରିଟିଶ୍ ସାମରିକ ବାହିନୀ ଦ୍ୱାରା ଆଇ.ଏନ୍.ଏ.ର ବିଦ୍ରୋହୀ ସୈନ୍ୟମାନେ ବନ୍ଦୀ ହେବା ପରେ ସେମାନଙ୍କୁ ସଙ୍ଗେ ସଙ୍ଗେ ଭାରତକୁ ଆଣିବା ସମ୍ଭବ ହେଉନଥିଲା । ଏପରିକି ରେଙ୍ଗୁନ୍ଠାରେ ଏକତ୍ରିତ କରାଯାଇଥିବା ବନ୍ଦୀ ଆଇ.ଏନ୍.ଏ. ଓ ଆଇ.ଏନ୍.ଏ.ରେ ଯୋଗ ଦେଇନଥିବା ତଥା ଜାପାନ ଦ୍ୱାରା ବନ୍ଦୀ ଭାରତୀୟ ସୈନ୍ୟ ଏବଂ ଦକ୍ଷିଣ ପୂର୍ବ ଏସିଆରେ ଜାପାନ ବିରୁଦ୍ଧରେ ଲଢ଼ି ବିଜୟ ଲାଭ କରିଥିବା ଭାରତୀୟ ସୈନ୍ୟମାନେ ସ୍ୱଦେଶ ପ୍ରତ୍ୟାବର୍ତ୍ତନ ପାଇଁ ଅପେକ୍ଷା କରି ରହିଥିଲେ । ବ୍ରିଟିଶ୍ ଗୋଏନ୍ଦା ଅଫିସର (Intelligence Officer) ଓ ଐତିହାସିକ ହ୍ୟୁଟୋ (Hugh Toye)ଙ୍କ ଭାଷାରେ "In the eleven months which had then elapsed since the first contact of Indian Army, Navy & Air force with the mass of I.N.A. in Rangoon, there had been wide spread fraternisation. This could not be avoided, all were Indians serving in a foreign country and contact with the I.N.A. often meant the union of close relatives separated since 1941. The result was a political consciousness which the Indian servicemen never possessed. He saw it was a band of oppressed heroes."

ଅର୍ଥାତ୍ ସେହି ୧୧ ମାସ ଭିତରେ ବ୍ରିଟିଶ୍ ଅଧୀନରେ କାର୍ଯ୍ୟରତ ଭାରତୀୟ ସୈନ୍ୟ, ବିମାନ ବାହିନୀ, ନୌ ସେନ୍ୟ ଓ ଆଇ.ଏନ୍.ଏ. ବନ୍ଦୀ ସୈନିକମାନଙ୍କ ମଧ୍ୟରେ ଗଭୀର ଭାତୃଭାବ ସୃଷ୍ଟି ହୋଇଥିଲା । ଏଥିରେ ବାଧାଦେବା ସମ୍ଭବ ନଥିଲା । କାରଣ ଉଭୟ ଶ୍ରେଣୀର ସୈନ୍ୟମାନେ ଥିଲେ ଏକ ବିଦେଶୀ ରାଷ୍ଟ୍ରରେ ଯୁଦ୍ଧ କରୁଥିବା ଭାରତୀୟ ସୈନ୍ୟ ଯେଉଁମାନେ ୧୯୪୧ରୁ ଅଲଗା ହୋଇଯାଇଥିଲେ ଏବଂ ଏହିଠାରେ ସେମାନଙ୍କର ପୁନର୍ମିଳନ ହୋଇଥିଲା । ଏହି ମିଳନ ଫଳରେ କାର୍ଯ୍ୟରତ ସୈନ୍ୟମାନଙ୍କ ମଧ୍ୟରେ ରାଜନୀତିକ

ଜାଗରଣ ସୃଷ୍ଟି ହୋଇଥିଲା ଯାହାକି ସେମାନେ କେବେହେଲେ ପାଇ ନଥିଲେ । ସେମାନେ ବନ୍ଦୀ ଆଇ.ଏନ୍.ଏ. ସୈନ୍ୟମାନଙ୍କୁ ନିର୍ଯ୍ୟାତିତ ବୀର ଭାବରେ ଦେଖିବାକୁ ଲାଗିଲେ । ଇମ୍ଫାଲ୍ ରଣ କ୍ଷେତ୍ରରେ ସେମାନଙ୍କର ରୋମାଞ୍ଚକର ଯୁଦ୍ଧ କାହାଣୀ ତଥା ସୁପ୍ରିମ୍ କମାଣ୍ଡର ସୁଭାଷଙ୍କର ଅସାଧାରଣ ବ୍ୟକ୍ତିତ୍ୱ ଓ କ୍ଷୁଦ୍ରାଦପି କ୍ଷୁଦ୍ର ସୈନିକମାନଙ୍କ ସହ ତାଙ୍କର ଭାତୃ ସୁଲଭ ମିଳାମିଶା ଓ ସ୍ନେହ ଶ୍ରଦ୍ଧାର କାହାଣୀ ସେମାନଙ୍କୁ ମନ୍ତ୍ରମୁଗ୍ଧ କରି ଦେଇଥିଲା । "There can be little doubt that serious naval mutinies and unrest in other two services (Army and Air Force) early in 1946, owed something to its influence." ୧୯୪୬ର ପ୍ରଥମାବସ୍ଥାରେ ସଂଘଠିତ ନୌବିଦ୍ରୋହ ଓ ସୈନ୍ୟବାହିନୀ ଏବଂ ଆକାଶ ବାହିନୀରେ ସୃଷ୍ଟି ହୋଇଥିବା ଅଶାନ୍ତି ସେହି ପ୍ରଭାବରୁ ହୋଇଥିଲା ।

ପ୍ରଧାନମନ୍ତ୍ରୀ ଆଟ୍‌ଲି ୧୯୪୬ ମାର୍ଚ୍ଚ ୧୩ ତାରିଖରେ ସ୍ୱୀକାର କରିଥିଲେ "ଭାରତୀୟ ସୈନ୍ୟବାହିନୀରେ ଜାତୀୟ ଜାଗରଣ ପ୍ରସାରିତ ହେବାରେ ଲାଗିଛି । ଯେଉଁ ସୈନ୍ୟମାନେ ଯୁଦ୍ଧବେଳେ ବ୍ରିଟିଶ ପାଇଁ ବିସ୍ମୟ ଜନକ ବୀରତ୍ୱ ପ୍ରଦର୍ଶନ କରିଥିଲେ, ସେମାନେ ମଧ୍ୟ ସେହି ଜାଗରଣରୁ ମୁକ୍ତ ନୁହଁନ୍ତି ।"

କାର୍ଯ୍ୟରତ ସୈନ୍ୟମାନଙ୍କ ଉପରେ ଲାଲକିଲ୍ଲା ବିଚାରର ପ୍ରଭାବ ବର୍ଣ୍ଣନା କରି ଅନ୍ୟ ଜଣେ ବିଶିଷ୍ଟ ବ୍ରିଟିଶ୍ ସାମ୍ବାଦିକ ଓ 'ଚୀନ୍ ଲାଲସେନା' (Chinese Red Army)ର ଲେଖକ ଗେରାର୍ଡ H.Corrଙ୍କ ଭାଷାରେ "More dangerous than British muddling, however were the tactics of exploitation used by the congress. The whipping up of public opinion the playing on emotion, resulted in February 1946 in the mutiny of Royal Indian Navy **** By 21 February most of the Navy's seventy Five ships and twenty shore establishments were either instate of mutiny or on strike. *** Gradually the situation was brought under control, but by now it was clear to every one that INA trials followed by t he mutiny in the Royal Indian Navy has so much inflamed the Indian masses that a revolutionary situation was in the making and that the Indian Armed Forces could no longer be relied upon."

ଅର୍ଥାତ୍ ବ୍ରିଟିଶ୍ ପ୍ରଶାସନ ଆଇ.ଏନ୍.ଏ. ବିଚାରକୁ ଯେଉଳି ବିପଦ୍‌ଜନକ ଗୋଳମାଳିଆ ଢଙ୍ଗରେ ପରିଚାଳନା କରିଥିଲେ, ତା' ଅପେକ୍ଷା ଅଧିକ ବିପଦ୍‌ଜନକ ଥିଲା କଂଗ୍ରେସ ଦଳ ଦ୍ୱାରା କୌଶଳ ପୂର୍ଣ୍ଣ ଉପାୟରେ ସେହି ପରିସ୍ଥିତିର ସୁଯୋଗ ନେବା ।

କଂଗ୍ରେସ ଦ୍ୱାରା ଜନ ଅସନ୍ତୋଷକୁ ଅଧିକ ଉସ୍କେଇବାର ପରିଣତି ହେଲା ୧୯୪୬ ଫେବୃୟାରୀରେ ନୌ ବିଦ୍ରୋହ । ××× ଫେବୃୟାରୀ ୨୧ ତାରିଖ ଭିତରେ ସର୍ବମୋଟ ୭୫ଟି ଯୁଦ୍ଧ ଜାହାଜ ଓ ୨୦ଗୋଟି ଉପକୂଳ ନୌ ଘାଟି ଅନୁଷ୍ଠାନରେ ବିଦ୍ରୋହ କିମ୍ବା ଧର୍ମଘଟ ଆରମ୍ଭ ହୋଇଯାଇଥିଲା । ××× ଏହିଭଳି ଲାଲକିଲ୍ଲା ବିଚାର ପଛକୁ ନୌବିଦ୍ରୋହ ଏପରି ଏକ ବିସ୍ଫୋରକ ପରିସ୍ଥିତି ସୃଷ୍ଟି କରିଦେଲା ଯେ ସଶସ୍ତ୍ର ଫୌଜ ଉପରୁ ସରକାରର ବିଶ୍ୱାସନୀୟତା ସମ୍ପୂର୍ଣ୍ଣ ଭୂଲୁଣ୍ଠିତ ହୋଇଗଲା ।'' (War of the springing Tiger-175)

ନୌବିଦ୍ରୋହ ଆରମ୍ଭ ହେବା ପରଦିନ ୧୯ ଫେବୃୟାରୀରେ ଲଣ୍ଡନରେ ଘୋଷଣା କରିଦିଆଗଲା ଯେ ଭାରତକୁ ସ୍ୱାଧୀନତା ଦେବା ସକାଶେ ପନ୍ଥା ପଦ୍ଧତି ସ୍ଥିର କରିବା ପାଇଁ ଶ୍ରମିକ ଦଳ ସରକାରର ଏକ ତିନ ଜଣିଆ ମନ୍ତ୍ରୀ ମଣ୍ଡଳ ଦଳ ଖୁବ୍‌ଶୀଘ୍ର ଭାରତକୁ ପଠାଯାଉଅଛି ।

ବନ୍ଦୀ ଆଇ.ଏନ୍.ଏ. ବିଚାରର ପ୍ରଭାବରେ ଭାରତର ଜନମତ ବିକ୍ଷୁବ୍ଧ ହେବା ଫଳରେ କାର୍ଯ୍ୟରତ ସୈନ୍ୟ ବାହିନୀରେ ମଧ ବ୍ରିଟିଶ୍ ଶାସନ ବିରୁଦ୍ଧରେ ହୋଇଥିବା ପ୍ରକାଶ୍ୟ ବିଦ୍ରୋହର ଉପରୋକ୍ତ ବିବରଣୀ ଗୁଡ଼ିକ ବିଦେଶୀ ଐତିହାସିକ ମାନଙ୍କ ଦ୍ୱାରା ରଚିତ ହୋଇଥିଲା । ସେ ସବୁର ସତ୍ୟତାକୁ ଅଧିକ ବିଶ୍ୱାସନୀୟ କରିବା ପାଇଁ ସ୍ୱାଧୀନ ଭାରତର ଖୋଦ୍ କେନ୍ଦ୍ର ସରକାରଙ୍କ ଦ୍ୱାରା ସଙ୍କଳିତ 'Who's Who of Indian Martyrs Vol-II କୁ ନିମ୍ନରେ ଉଦ୍ଧୃତ କରାଯାଇଅଛି ।

"The events of INA Trial had a great impact on Indians serving in the armed forces under British Command. Not only they fraternised with defectors, who were regarded as true patriots but they also become conscious of their rights as Indian servicemen."

ଆଇ.ଏନ୍.ଏ. ବିଚାର ଗୁରୁତର ପ୍ରଭାବ ବ୍ରିଟିଶ୍ ଅଧୀନରେ ଯେ ପର୍ଯ୍ୟନ୍ତ କାର୍ଯ୍ୟ କରୁଥିବା ସୈନ୍ୟ ବାହିନୀ ଉପରେ ପଡ଼ିଲା ସେମାନେ କେବଳ ବନ୍ଦୀସୈନ୍ୟଙ୍କୁ ସମର୍ଥନ କରୁ ନଥିଲେ ସେମାନଙ୍କୁ ପ୍ରକୃତ ଦେଶପ୍ରେମୀ ବୋଲି ମନେ କରୁଥିଲେ ଏବଂ ସୈନ୍ୟ ବାହିନୀ ଜବାନ୍ ଭାବରେ ସେମାନଙ୍କ ଅଧିକାର ପ୍ରତି ଅତ୍ୟନ୍ତ ସଚେତନ ହୋଇଉଠିଲେ ।

ଭାରତୀୟ ସୈନ୍ୟ ଓ ଇଂରେଜ ସୈନ୍ୟମାନଙ୍କୁ ଦିଆଯାଉଥିବା ଖାଦ୍ୟ, ପୋଷାକ ଓ ଦରମାରେ ହେଉଥିବା ପାତର ଅନ୍ତର ବ୍ୟବହାର ତଥା ଜାତିଗତ ଘୃଣା ପ୍ରଭୃତି ଅଭିଯୋଗ ଭାରତୀୟ ସୈନ୍ୟଙ୍କ ମଧରେ ପୁଞ୍ଜିଭୂତ ହୋଇ ରହିଲା । ତାହାର ପ୍ରମାଣ ପ୍ରକାଶ ପାଇଥିଲା ୧୯୪୬ ଫେବୃୟାରୀରେ ହୋଇଥିବା ନୌ ବିଦ୍ରୋହରେ ।

"Starting from the Ratings of the Bombay signal school, the revolt made its repurcussion in other centres like Karachi, Madras and Calcutta. The Army and the Air Force were also affected by this nationalistic upsurge in the Navy. (Who's Who of Indian Martyrs.)

ବମ୍ବେ ସିଗ୍‌ନାଲ ସ୍କୁଲର ଶିକ୍ଷାର୍ଥୀମାନଙ୍କ ପାଖରୁ ଆରମ୍ଭ ହୋଇଥିବା ବିଦ୍ରୋହରେ ସମୁଦ୍ରରେ ଥିବା ଯୁଦ୍ଧ ଜାହାଜ ମାନଙ୍କରେ ବିଦ୍ରୋହ ଘୋଷିତ ହେଲା ଏବଂ ସେମାନେ ଜାହାଜର ତୋପ କମାଣକୁ ଉପକୂଳସ୍ଥ ବ୍ରିଟିଶ୍ ସୈନ୍ୟ ଆଡ଼କୁ ମୁହଁ କରି ଯୁଦ୍ଧ ଆରମ୍ଭ କରିବାକୁ ପ୍ରସ୍ତୁତ ହୋଇଗଲେ । କେବଳ ନୌ ବାହିନୀ ନୁହେଁ କ୍ରମେ ସ୍ଥଳ ବାହିନୀ ଓ ବିମାନ ବାହିନୀକୁ ମଧ୍ୟ ବିଦ୍ରୋହ ବ୍ୟାପି ଯାଇଥିଲା ବୋଲି ନୂଆ ଭାରତ ସରକାରଙ୍କ ଦ୍ୱାରା ସଙ୍କଳିତ ଗ୍ରନ୍ଥମାନଙ୍କରେ ମଧ୍ୟ ସେହି ନିର୍ମମ ସତ୍ୟକୁ ସ୍ୱୀକାର କରାଯାଇଛି ତାହାହିଁ ତାତ୍ପର୍ଯ୍ୟପୂର୍ଣ୍ଣ । ସରକାରୀ ପୁସ୍ତକମାନଙ୍କରେ ଏହା ମଧ୍ୟ ପ୍ରକାଶିତ ହୋଇଅଛି ଯେ ଫେବୃୟାରୀ ୧୫ରେ ନୌ ବିଦ୍ରୋହ ଆରମ୍ଭ ହେବା ଫଳରେ ବ୍ରିଟିଶ୍ ପ୍ରଶାସକ ମାନେ ସ୍ୱୀକାର କରିବାକୁ ବାଧ ହେଲେ ଯେ ଭାରତରେ ସେମାନଙ୍କର ଶେଷ ଏବଂ ଏକମାତ୍ର ରକ୍ଷାକର୍ତ୍ତା ସାମରିକ ବାହିନୀ ଯେତେବେଳେ ସେମାନଙ୍କ ବିରୁଦ୍ଧରେ ଯୁଦ୍ଧ ଆରମ୍ଭ କଲେଣି, ସେ ଦୃଷ୍ଟିରୁ ଭାରତରେ ଅଧିକ ଦିନ ରହିବା ଆଦୌ ନିରାପଦ ନୁହେଁ । ତେଣୁ ବ୍ରିଟିଶ ପ୍ରଧାନ ମନ୍ତ୍ରୀ ଅଟଲି ଘୋଷଣା କରିଦେଲେ ଯେ ''ଭାରତବାସୀଙ୍କ ହାତକୁ କ୍ଷମତା ଅର୍ପଣ କରିବାକୁ ଆମେ କ୍ୟାବିନେଟ୍ ମିଶନ ପଠାଉଛୁ ।''

ସେ ଯାହା ହେଉ, ନେତାଜୀଙ୍କ ଭବିଷ୍ୟତ ଗଣନା ଅକ୍ଷରେ ଅକ୍ଷରେ ସତ୍ୟ ହେଲା । ସେ କହିଥିଲେ ଆଇ.ଏନ୍.ଏ. ଅସ୍ତ୍ରଶସ୍ତ୍ର ଧରି କରୁଥିବା ଯୁଦ୍ଧରେ ସିନା ସମ୍ପୂର୍ଣ୍ଣ ସଫଳ ହୋଇପାରିଲା ନାହିଁ, କିନ୍ତୁ ଆଇ.ଏନ୍.ଏ.ର ବୀରତ୍ୱକୁ କେନ୍ଦ୍ର କରି ଭାରତରେ ଯେଉଁ ଗଣ ବିକ୍ଷୋଭ ସୃଷ୍ଟି ହେବ, ତାହାର ପରିଣତି ହେବ ଭାରତର ସ୍ୱାଧୀନତା । ବ୍ରିଟିଶ୍ ସାମ୍ବାଦିକ ଗେରାର୍ଡଙ୍କର ତାହା ଠିକ୍ ସେହି ଭାଷାରେ ହିଁ ନେତାଜୀଙ୍କ ଭବିଷ୍ୟତ ବାଣୀର ସତ୍ୟତାକୁ ସ୍ୱୀକାର କରିଅଛନ୍ତି- "The I.N.A.'s military campaign for swaraj had been and unmitigated disaster, but they nevertheless played a significant role in the granting of their contry's independence. The I.N.A. men marched on Delhi as patriotic soldiers and they arrived as prisoners, but ironically it was as prisoners that they made their greatest impact on the Indian people and the Government of India. Rarely have the vanquished helped win so much." page-176.

"ସ୍ୱରାଜ୍ୟ ପାଇଁ ଆଇ.ଏନ୍.ଏ.ର ସଶସ୍ତ୍ର ସଂଗ୍ରାମ ଏକ ଅବର୍ଣ୍ଣନୀୟ ବିପର୍ଯ୍ୟୟର ସମ୍ମୁଖୀନ ହୋଇଥିଲା । କିନ୍ତୁ ତା' ସତ୍ତ୍ୱେ ତାହା ସେମାନଙ୍କ ଦେଶକୁ ସ୍ୱାଧୀନ କରିବା ପାଇଁ ଗୁରୁତ୍ୱ ପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା । ସେହି ସୈନ୍ୟମାନେ ଦେଶପ୍ରେମୀ ବନ୍ଦୀ ସୈନିକ ଭାବରେ ଦିଲ୍ଲୀରେ ମାର୍ଚ୍ଚିଂ କରିଥିଲେ । କିନ୍ତୁ ବିଡ଼ମ୍ବନା ଯେ ସେମାନେ ବନ୍ଦୀ ଭାବରେ ହିଁ ଭାରତର ଜନମତ ଓ ଭାରତ ସରକାର ଉପରେ ଗୁରୁତର ପ୍ରଭାବ ବିସ୍ତାର କରି ପାରିଥିଲେ । ଯୁଦ୍ଧ କ୍ଷେତ୍ରରେ ପରାଜିତ ସୈନ୍ୟମାନେ ବନ୍ଦୀ ଅବସ୍ଥାରେ ଏଭଳି ବିଜୟଶ୍ରୀରେ ମଣ୍ଡିତ ହେବାର ଦୃଷ୍ଟାନ୍ତ କ୍ୱଚିତ୍ ଦେଖିବାକୁ ମିଳେ ।"

ହ୍ୟୁ ଟୋ ନିର୍ଦ୍ଦିଷ୍ଟ ଭାବରେ ସେ ସମ୍ପର୍କରେ କହି ଅଛନ୍ତି ଯେ "There can be little doubt that the Indian National Army not in its unhappy career on the battle field but in its thunderous disentegration hastened the end of the British Rule in India."- Page 175 (The Springing Tiger)

କେବଳ ଯୁଦ୍ଧାଭିଯାନ ଦ୍ୱାରା ନୁହେଁ, ଆଇ.ଏନ୍.ଏ. ଦ୍ୱାରା ସୃଷ୍ଟ ବୈପ୍ଳବିକ ଜାଗରଣ ଦ୍ୱାରା ମଧ ଭାରତରେ ବ୍ରିଟିଶ୍ ଶାସନର ଅବସାନ ତ୍ୱରାନ୍ୱିତ ହୋଇଥିଲ । । ତତ୍‌କାଳୀନ କଂଗ୍ରେସ ସଭାପତି ମୌଲାନା ଆବୁଲ କାଲାମ ଆଜାଦ୍ 'Indian Wins Freedom' ପୁସ୍ତକର ୧୪୨ ପୃଷ୍ଠାରେ ଲେଖିଛନ୍ତି- "The Trial of the I.N.A. and other developments convinced the British that they could no longer rely on the armed forces unless the political problems of India are satisfactorily solved." "ଆଇ.ଏନ୍.ଏ. ବିଚାର ଓ ସେନାବାହିନୀ ବିଦ୍ରୋହ ଦେଖି ବ୍ରିଟିଶ୍ ପ୍ରଶାସକ ମାନଙ୍କ ମନରେ ଆଉ କୌଣସି ସନ୍ଦେହ ରହିଲା ନାହିଁ ଯେ ସେମାନେ ସୈନ୍ୟବାହିନୀ ଉପରେ ଭରସା ରଖିପାରିବେ ନାହିଁ ।"

ବ୍ରିଟିଶ୍ ଅଧୀନରେ ସେହି ସମୟରେ ବିଶ୍ୱସ୍ତ ଭାବରେ କାର୍ଯ୍ୟ କରୁଥିବା ଲେଫ୍ଟନାଣ୍ଟ ଜେନେରାଲ୍ ବି. ଏମ୍. କାଉଲ୍ ନାମକ ଭାରତୀୟଙ୍କର ଅଭିମତ ଏହି ପୁସ୍ତକରେ ବିଶେଷ ଉଲ୍ଲେଖ ଯୋଗ୍ୟ । କାଉଲ ଜଣୈକ କାଶ୍ମୀର ଅଧିବାସୀ ଓ ନେହେରୁଙ୍କର ଅତ୍ୟନ୍ତ ଅନ୍ତରଙ୍ଗ ବନ୍ଧୁ ଭାବରେ ସୁପରିଚିତ ଥିଲେ । କ୍ଷମତା ହସ୍ତାନ୍ତର ପରେ ଅର୍ଥାତ୍ ୧୯୪୭ ପରେ ମଧ କାର୍ଯ୍ୟରୁ ସେ ଅବସର ନେବା ପର୍ଯ୍ୟନ୍ତ ସୈନ୍ୟବାହିନୀରେ କାର୍ଯ୍ୟକରୁ ଥିଲେ ଏବଂ ୧୯୪୩-୪୪ ରେ ବର୍ମାର ଆରାକାନ୍ ଯୁଦ୍ଧରେ ଆଇ.ଏନ.ଏ. ବିରୁଦ୍ଧରେ ପ୍ରତ୍ୟକ୍ଷ ଯୁଦ୍ଧରେ ଅଂଶ ଗ୍ରହଣ କରିଥିଲେ । ନେହେରୁ ୧୯୪୫ରେ ଜେଲରୁ ଖଲାସ ହେବା ପରେ ସିମଳାରେ ସେ ତାଙ୍କୁ ସାକ୍ଷାତ୍ କରିଥିଲେ ଏବଂ ଆରାକାନ ରଣ କ୍ଷେତ୍ରରେ ଆଇ.ଏନ୍.ଏ. ସୈନ୍ୟମାନଙ୍କ ଅପୂର୍ବ ଦେଶପ୍ରେମ ଓ କଠୋର କୃଚ୍ଛ୍ର ସାଧନାର ଚାକ୍ଷୁସ ଅନୁଭୂତି ସେ ପ୍ରକାଶ କରିଥିଲେ । ବ୍ରିଟିଶ୍ ଭାରତୀୟ ସୈନ୍ୟ ସେହି ଭାରତୀୟ ସୈନ୍ୟଙ୍କ ସହ ଲଢ଼ିବା କେତେ ଲଜ୍ଜାଜନକ

ତାହା ସେ ବର୍ଣ୍ଣନା କରିଥିଲେ । ସେମାନେ ଯୁଦ୍ଧ କ୍ଷେତ୍ରରେ ଖାଦ୍ୟପେୟ, ପୋଷାକ ପରିଚ୍ଛଦ ଓ ଯୁଦ୍ଧାସ୍ତ୍ରରେ ଯଥେଷ୍ଟ ଆରାମ୍ ଦାୟକ ପରିସ୍ଥିତିରେ ବ୍ରିଟିଶ୍ ପତାକା ପାଇଁ ଲଢୁଥିବାବେଳେ ଆଇ.ଏନ୍.ଏ.ର ତ୍ରିରଙ୍ଗା ପତାକା ସେମାନଙ୍କ ବିବେକକୁ କିପରି ତୀକ୍ଷ୍ଣ ଭାବରେ ଦଂଶନ କରୁଥିଲା ତାହା ମଧ୍ୟ ସେ ନେହେରୁଙ୍କୁ ଶୁଣାଉଥିବା ବିଷୟ ତାଙ୍କର ଆତ୍ମଜୀବନୀ (The Untold Story)ରେ ସ୍ୱୀକାର କରିଅଛନ୍ତି ।

ତାଙ୍କର ପ୍ରତ୍ୟକ୍ଷ ଅନୁଭୂତିରୁ ସେ ନେତାଜୀ ସୁଭାଷଙ୍କର ବିଶାଳ ବ୍ୟକ୍ତିତ୍ୱର ଭୂୟସୀ ପ୍ରଶଂସା କରିଛନ୍ତି । ''ସେହି ବିଖ୍ୟାତ ଦେଶ ପ୍ରେମୀ ଯୁଦ୍ଧ କରି ବ୍ରିଟିଶ୍ ଶାସକମାନଙ୍କ ହାତରୁ ଯଥା ଶୀଘ୍ର ଛଡ଼ାଇ ନେବାକୁ ଆଇ.ଏନ୍.ଏ. ଗଠନ କରିଥିଲେ । ତାଙ୍କ ବ୍ୟକ୍ତିତ୍ୱ ଓ ଦେଶପ୍ରେମ ସମ୍ପର୍କରେ ଜଣେ ହେଲେ ଭାରତୀୟ ମନରେ କୌଣସି ସନ୍ଦେହ ନଥିଲା । ଆଇ.ଏନ୍.ଏ. ଏକ ସୁସଙ୍ଗଠିତ ପରିବାର ଭାବରେ ପରିଚାଳିତ ହେଉଥିଲେ । ଏପରିକି ଜାତି ଧର୍ମ ନିର୍ବିଶେଷରେ ସମସ୍ତ ସୈନିକଙ୍କ ପାଇଁ ସାଧାରଣ ରନ୍ଧନଶାଳାରେ ସମସ୍ତଙ୍କ ପାଇଁ ଏକା ପ୍ରକାର ଖାଦ୍ୟ ପ୍ରସ୍ତୁତ ହେଉଥିଲା । ସେଭଳି ସାର୍ବଜନୀନ ବ୍ୟବସ୍ଥା ଆଜି ପର୍ଯ୍ୟନ୍ତ ଭାରତୀୟ ସୈନ୍ୟବାହିନୀରେ ମଧ୍ୟ ଚାଲୁ ହୋଇପାରିନାହିଁ । ("a feat which has not been achieved fully in the Army even to this day.)"

''କେବଳ ବ୍ରିଟିଶ୍ ଆନୁଗତ୍ୟ ନୁହେଁ, ସୈନ୍ୟବାହିନୀର ଶୃଙ୍ଖଳା ମଧ୍ୟ ତାହା ଦ୍ୱାରା ଭଙ୍ଗ ହୋଇଥିବା ସେମାନେ କେବେ ହେଲେ ଅନୁଭବ କରି ନାହାଁନ୍ତି । କାରଣ ଭାରତର ସ୍ୱାଧୀନତା ପ୍ରାପ୍ତିରେ ସହାୟତା କରିବା ପାଇଁ ସେମାନେ ସେ କାର୍ଯ୍ୟ କରୁଛନ୍ତି ବୋଲି ଦୃଢ଼ ଭାବରେ ବିଶ୍ୱାସ କରୁଥିଲେ । ଆଜାଦ୍ ହିନ୍ଦ୍ ରେଡ଼ିଓରେ ଯେଉଁ ପ୍ରଚାର କରାଯାଉଥିଲା, ତାହା ମଧ୍ୟ କାର୍ଯ୍ୟରତ ବ୍ରିଟିଶ୍ ଭାରତୀୟ ସୈନ୍ୟ ମନରେ ଗୁରୁତର ବିଚାର ସଙ୍କଟ ସୃଷ୍ଟି କରୁଥିଲା ।''

''ଆମ (କାଉଲ ପ୍ରଭୃତି ବ୍ରିଟିଶ୍ ଭାରତୀୟ ସୈନ୍ୟ) ବିରୁଦ୍ଧରେ କୁହାଯାଉଥିଲା ଯେ ଆପଣ ମାନେ ବ୍ରିଟିଶ୍ ପତାକା ତଳେ ଲଢୁଛନ୍ତି ଏବଂ ଆମ୍ଭେମାନେ ତ୍ରିରଙ୍ଗା ପତାକା ଧରି ଯୁଦ୍ଧ କ୍ଷେତ୍ରରେ ପ୍ରାଣ ବିସର୍ଜନ କରୁଅଛୁ ।''

''ଅତ୍ୟନ୍ତ ପ୍ରତିକୂଳ ପରିସ୍ଥିତିରେ ମଧ୍ୟ ସୁଭାଷ ଯେପରି ଭାବରେ ସଶସ୍ତ୍ର ବାହିନୀର ମନରୁ ବ୍ରିଟିଶ୍ ଆନୁଗତ୍ୟକୁ ଭାଙ୍ଗି ଚୁର୍‌ମାର୍ କରି ଦେଇଥିଲେ, ଅନ୍ୟ କୌଣସି ଭାରତୀୟ ନେତା ତାହା କରିବାକୁ ସମର୍ଥ ହୋଇ ପାରିନାହାନ୍ତି । ଏହିଭଳି ଭାବରେ ବ୍ରିଟିଶ୍ ପ୍ରଶାସନ ଛିଡ଼ା ହୋଇଥିବା ଗୋଟାଏ ପ୍ରଧାନ ଖମ୍ବକୁ ସେ ଭୂଲୁଣ୍ଠିତ କରି ଦେଇଥିଲେ । "The mutiny of Indian Navy, Army and the Air Force in 1946 sounded the death Knell of the British who at last realised that they could not hold the Indians down with the help of

Army, Navy and the Air Force any more. Bose also left no doubt on this point." (The untold story, - page-72 by Lt. General B.M. Kaul.)

"୧୯୪୬ରେ ନୌବାହିନୀ, ଆକାଶ ବାହିନୀ ଓ ସୈନ୍ୟ ବାହିନୀରେ ହୋଇଥିବା ବିଦ୍ରୋହ ଭାରତରେ ବ୍ରିଟିଶ୍ ଶାସନର ମୃତ୍ୟୁ ଘଣ୍ଟି ବଜାଇ ଦେଇଥିଲା ଏବଂ ସେମାନେ ହୃଦୟଙ୍ଗମ କଲେ ଯେ ସୈନ୍ୟବାହିନୀ ସାହାଯ୍ୟରେ ଭାରତୀୟମାନଙ୍କୁ ଆଉ ଦମନ କରିହେବ ନାହିଁ । ସୁଭାଷ ବୋଷଙ୍କ ଏହି ଉକ୍ତିର କାହାର କୌଣସି ସନ୍ଦେହ ନଥିଲା ।

"The trial dramatised and gave visible form to the old contest" "England versus India. It became a trial of strength between the Indian people and the will of those who held power in India. And it was the will of the people that triumphed in the end."

ଜର୍ନୈକ ମୋତିରାମଙ୍କ ଲାଲ୍‌କିଲ୍ଲା ବିଚାରର ମୂଲ୍ୟବାନ ଡକୁମେଣ୍ଟାରୀ ରେକର୍ଡର ଯେଉଁ ସଙ୍କଳନ କରିଥିଲେ ସେଥିରେ ନେହେରୁ ୧୯୪୬ ମସିହା ଜାନୁୟାରୀ ୧୬ ତାରିଖରେ ଏକ ମୁଖବନ୍ଧରେ ଏହା ଲେଖିଥିଲେ । ସେଥିରେ ସେ ଲେଖିଥିଲେ, "ଲାଲକିଲ୍ଲା ବିଚାରରେ 'ଭାରତ ବନାମ ଇଂଲାଣ୍ଡ'ର ଚିରନ୍ତନ ସଂଗ୍ରାମର ବାସ୍ତବ ଚିତ୍ର ନାଟକୀୟ ଶୈଳୀରେ ପ୍ରତିଫଳିତ ହୋଇଥିଲା । ଏହା ଏକ ଦିଗରେ ଭାରତୀୟ ମାନଙ୍କର ଦୃଢ଼ ଆତ୍ମ ବିଶ୍ୱାସର ଶକ୍ତି ସହ ଭାରତକୁ ଦଖଲ କରି ରହିଥିବା ବ୍ରିଟିଶ୍ ଶକ୍ତିର ଏକ ଲଢ଼େଇ ଥିଲା । ଶେଷରେ ଭାରତୀୟ ଆତ୍ମ ବିଶ୍ୱାସ ହିଁ ଜୟଯୁକ୍ତ ହେଲା ।"

"ଲାଲ୍‌କିଲ୍ଲା ବିଚାରର ପ୍ରଭାବ" ଶୀର୍ଷକ ଏହି ପରିଚ୍ଛେଦ ଶେଷ କରିବା ପୂର୍ବରୁ ଆଇ.ଏନ୍.ଏ.ର ଜଣେ ଭୁକ୍ତଭୋଗୀ ଓ ନେତାଜୀ ସୁଭାଷଙ୍କ ମନ୍ତ୍ରୀମଣ୍ଡଳର ପ୍ରଚାର ବିଭାଗ ମନ୍ତ୍ରୀଙ୍କର ଏ ସମ୍ପର୍କୀୟ ଅଭିମତ ଉଲ୍ଲେଖ କରିବା ଉଚିତ୍ ।

"ଲାଲ୍‌କିଲ୍ଲା ନାଟକର ଶେଷ ଯବନିକାର ପତନ ହୋଇ ପଡୁଥିବାବେଳେ ତେଣେ ଇଂରେଜ ଶାସନର ଅବସାନ ପାଇଁ ଯବନିକା ଉଠୁଥିଲା ଏବଂ ଆଇ.ଏନ.ଏ. ବିଚାର ଶେଷ ହେବାର ମାତ୍ର ଆଠ ମାସ ପରେ ସେହି ଯବନିକାର ପତନ ହେଲା । ଆଇ.ଏନ୍.ଏ. ଭାରତରେ ପହଞ୍ଚିବା ଓ ଲାଲ୍‌କିଲ୍ଲାରେ ସେମାନଙ୍କ ବିଚାର ପ୍ରଭାବ ଭାରତର ସଶସ୍ତ୍ର ବାହିନୀ ଉପରେ ବିଶେଷ ଭାବରେ ଅନୁଭୂତ ହୋଇଥିଲା । ଗୋଏନ୍ଦା ରିପୋର୍ଟରୁ ସରକାର ବୁଝି ପାରିଲେ ଯେ ଭାରତରେ ଶାସନ ଚଳାଇବା ପାଇଁ ଆଉ ସଶସ୍ତ୍ର ବାହିନୀ ଉପରେ ଭରସା କରିହେବ ନାହିଁ ।

ନୌବାହିନୀ ଓ ଆକାଶ ବାହିନୀ ସରକାର ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି ବ୍ରିଟିଶ୍ ସିଂହାସନର ମୂଳକୁ ହଲାଇ ଦେଲେ । ଫଳରେ ବ୍ରିଟିଶ୍ ସରକାର ଯଥାଶୀଘ୍ର ଭାରତ ତ୍ୟାଗ କରିବା ଛଡ଼ା ତାହାର ଗତ୍ୟନ୍ତର ନଥିଲା ।

(The Navy and the Air Force mutinied against authority and shook the very foundation of the British Empire. The British Govt. in India decided to quit India with the least delay." The story of the I.N.A.-page-83 by S.A. Ayer.)

ବ୍ରିଟିଶ୍ ସୈନ୍ୟବାହିନୀର ଭାରତୀୟ ସୈନ୍ୟମାନଙ୍କୁ ବ୍ୟାପକ ଭାବରେ ବ୍ରିଟିଶ୍ ଶାସନ ବିରୁଦ୍ଧରେ ପ୍ରୟୋଗ କରିବାର ଦୁଃସାହସ କେବଳ ନେତାଜୀ ସୁଭାଷଙ୍କ ଦ୍ୱାରା ସମ୍ଭବ ହୋଇଥିଲା ଏବଂ ସେଥିରେ ସେ ଆଶାତୀତ ଭାବରେ କିପରି ସଫଳ ହୋଇଥିଲେ, ଭାରତ ଇତିହାସରେ ତାହା ଏକ ବହୁ ଚର୍ଚ୍ଚିତ ଘଟଣା । କିନ୍ତୁ ନେତାଜୀଙ୍କ ପୂର୍ବରୁ ଅନ୍ୟ କୌଣସି ଭାରତୀୟ ନେତା ତାଙ୍କ ଭଳି ବୀରତ୍ୱ ଓ ବ୍ୟକ୍ତିତ୍ୱ ସମ୍ପନ୍ନ ହୋଇନଥିବାରୁ ତାହା ସମ୍ଭବ ହୋଇ ନଥିଲା । ଏପରିକି ଯେଉଁ ହଜାର ହଜାର ଭାରତୀୟ ଯୁଦ୍ଧବନ୍ଦୀ ନେତାଜୀଙ୍କୁ ମିଳିଥିଲେ ସେ ସୁଯୋଗ ଯଦି ଅନ୍ୟ କୌଣସି ଭାରତୀୟ ନେତାଙ୍କ ସମ୍ମୁଖରେ ପହଞ୍ଚି ଥାନ୍ତା, ସେ ତାହାର କଦାପି ଉପଯୋଗ କରିପାରି ନଥାନ୍ତେ । ଜବାହାର ଲାଲ ନେହେରୁଙ୍କୁ ନେତାଜୀଙ୍କ ସମକକ୍ଷ ବୋଲି କେତେକ ମନେ କରନ୍ତି । କେତେକ ତାଙ୍କଠାରୁ ଅଧିକ ଯୋଗ୍ୟତା ସମ୍ପନ୍ନ ବୋଲି ମନେ କରନ୍ତି ।

କିନ୍ତୁ ସୈନ୍ୟ ମାନଙ୍କ ସମ୍ପର୍କରେ ତାଙ୍କର ମତ ଥିଲା ସମ୍ପୂର୍ଣ୍ଣ ଓଲଟା "Nehru simply rejected military and militarism as viable instruments or targets for the nationalist movement." Indian Army- Page-104 ଅର୍ଥାତ୍ ଏକ ରାଜନୀତିକ ଅସ୍ତ୍ରଭାବରେ ସୈନ୍ୟ ବାହିନୀକୁ ବ୍ୟବହାର କରିବା ନୀତିକୁ ସେ ସିଧା ପ୍ରତ୍ୟାଖ୍ୟାନ କରି ଦେଉଥିଲେ । "But he was neither a pacifist." (କିନ୍ତୁ ସେ ଶାନ୍ତି ବାଦୀ ମଧ୍ୟ ନଥିଲେ ।)

ନେହେରୁ ତାଙ୍କର ପ୍ରସିଦ୍ଧ ଗ୍ରନ୍ଥ 'The Discovery of India'ର ୨୮୭ ପୃଷ୍ଠାରେ ଲେଖିଛନ୍ତି, "When there is a conflict between races and countries even an attempt at impartiality is considered a betrayal." ଯୁଦ୍ଧ ଏକ ଏଭଳି ଭୟାବହ ବ୍ୟାପାର ଯେ ଜାତି ଜାତି ବା ଦେଶ ଦେଶ, ଭିତରେ ଚାଲିଥିବା ଯୁଦ୍ଧରେ 'ନିରପେକ୍ଷତା'କୁ ମଧ୍ୟ 'ବିଶ୍ୱାସ ଘାତକତା' ବୋଲି ମନେକରାଯାଏ ।

ଅହିଂସାର ପୂଜାରୀ ମହାତ୍ମା ଗାନ୍ଧୀଙ୍କର ହିଂସା ସମ୍ପର୍କରେ ବକ୍ତବ୍ୟ ଥିଲା ଅତିଶୟ ସ୍ପଷ୍ଟ ଓ ନିର୍ବିବାଦୀୟ । My Nonviolence ପୁସ୍ତକରେ 'The Doctrine of Sword' ଶୀର୍ଷକରେ ହିଂସା ଓ ଅହିଂସା ସମ୍ପର୍କରେ ଲେଖିଥିଲେ, "If pacifism means cowardice, then he was for violence, although he prefered non-violent resistance to violence. page-5. ''ଯଦି କାପୁରୁଷତାକୁ, 'ଶାନ୍ତିବାଦ' ବୋଲି କୁହାଯାଏ, ତେବେ ସେ ହିଂସା ସପକ୍ଷରେ, ଯଦିଓ 'ହିଂସା' ଅପେକ୍ଷା

ଅହିଂସ ପ୍ରତିରୋଧକୁ ହିଁ ସେ ଅଧିକ ପସନ୍ଦ କରିବେ ।'' ଗାନ୍ଧୀଜୀଙ୍କ ଉପରୋକ୍ତ ଅଭିମତ ଦୃଷ୍ଟିରୁ ସେ ଯେ ସୈନ୍ୟ ବାହିନୀ ସାହାଯ୍ୟରେ ସ୍ୱାଧୀନତା ସଂଗ୍ରାମକୁ ସମର୍ଥନ କରିବେ ଏଭଳି ଆଶା କରିବା ଅତିଶୟୋକ୍ତି ବ୍ୟତୀତ ଅନ୍ୟ କିଛି ନୁହେଁ । ନେହେରୁଙ୍କ ପ୍ରଶ୍ନ ଉଠୁଛି ବା କେଉଁଠି ?

ନେତାଜୀଙ୍କ ପୂର୍ବରୁ ଭାରତୀୟ ନେତାମାନଙ୍କ ମଧ୍ୟରୁ କେବଳ ଲୋକମାନ୍ୟ ତିଳକ ହିଁ ସ୍ୱାଧୀନତା ସଂଗ୍ରାମରେ 'ହିଂସା'କୁ ଏକ ଅସ୍ତ୍ର ଭାବରେ ସମର୍ଥନ କରୁଥିଲେ । ଗାନ୍ଧିଜୀ ଉପରୋକ୍ତ ଅଭିମତ ୧୯୨୦ ମସିହାରେ ବ୍ୟକ୍ତ କରିଥିଲେ । କିନ୍ତୁ ତାହା ପୂର୍ବରୁ ୧ମ ମହାଯୁଦ୍ଧ (୧୯୧୪-୧୮)ରେ ଇଂରେଜ ମାନଙ୍କୁ ଯୁଦ୍ଧରେ ସାହାଯ୍ୟ କରିବା ପାଇଁ ଗାନ୍ଧିଜୀ ପ୍ରତି ଗ୍ରାମରୁ ଯୁବକମାନଙ୍କୁ ସୈନ୍ୟବାହିନୀରେ ଯୋଗଦେବା ପାଇଁ ନିବେଦନ କରିଥିଲେ । ସେ ଦୃଷ୍ଟିରୁ ଐତିହାସିକ ମାନେ ତାଙ୍କୁ "Self appointed surgent of the British Army. (ବ୍ରିଟିଶ୍ ସୈନ୍ୟ ବାହିନୀରେ ସ୍ୱୟଂ-ନିଯୁକ୍ତ ସର୍ଜେଣ୍ଟ ଭାବେ ରେ ବ୍ୟଙ୍ଗ କରନ୍ତି । ଅବଶ୍ୟ ଅହିଂସା ବ୍ରତର ପ୍ରବକ୍ତା ଗାନ୍ଧିଜୀ ମହାଯୁଦ୍ଧରେ କମାଣ ମୁହଁକୁ ଭାରତୀୟ ଯୁବକ ମାନଙ୍କୁ ପଠାଇବା ପାଇଁ ଲାଗି ପଡ଼ିବା ଏକ ବିରୋଧାଭାସ ବୋଲି କୁହାଯାଇ ପାରେ । ଭାରତକୁ ଡୋମିନିୟନ୍ ଷ୍ଟାଟସ୍ ଦେବା ପାଇଁ ଘୋଷଣା କରିଥିବା ବ୍ରିଟିଶ୍ ସମ୍ରାଟ ଯୁଦ୍ଧ ବିପଦରେ ପଡ଼ିଥିବା ବେଳେ ବ୍ରିଟିଶ୍‌ର ଜଣେ ବିଶ୍ୱସ୍ତ ବନ୍ଧୁ ଭାବରେ ଗାନ୍ଧିଜୀ ଭାରତରୁ ସୈନ୍ୟ ସଂଗ୍ରହକୁ ସମର୍ଥନ କରୁଥିଲେ ।

ସେହି ସମାନ କାରଣରୁ କଂଗ୍ରେସ ମଧ୍ୟ ବ୍ରିଟିଶ୍ ରାଜଭକ୍ତ ପ୍ରଦର୍ଶନ କରିବାକୁ ଯୁଦ୍ଧ ପାଇଁ ସୈନ୍ୟ ସଂଗ୍ରହକୁ ସମର୍ଥନ କରି 'ପ୍ରସ୍ତାବ' ଗ୍ରହଣ କରିଥିଲେ ।

କିନ୍ତୁ ତିଲକଜୀଙ୍କ ସମେତ ସମସ୍ତଙ୍କର ଆଉ ଏକ ଉଦ୍ଦେଶ୍ୟ ଥିଲା ଯେ 'ଭାରତୀୟ ଯୁବକମାନେ ସେହି ସୁଯୋଗରେ ଯୁଦ୍ଧ ଟ୍ରେନିଂ ପାଇ ପାରିଲେ ସେମାନଙ୍କ ଶରୀର ବଳବାନ ହେବା ସଙ୍ଗେ ସଙ୍ଗେ ସୈନ୍ୟବାହିନୀରେ କମିସନ୍ ଓ ଅଫିସର ମଧ୍ୟ ହୋଇ ପାରିବେ । ତାହା ଫଳରେ ସେମାନଙ୍କର ସମ୍ମାନ ଦୁଇଗୁଣ ହୋଇଯିବ ।'' "If you want Home Rule be prepared to defend your Home. Had it not been for my age, I would have been the first to volunteer." (Tilak's Speech at Poona 2nd May, 1917.) ତୁମେ ଯଦି ହୋମ୍ ରୁଲ୍ ବା ସ୍ୱାୟତ୍ତଶାସନ ଚାହୁଁଛ ଆଗେ 'ହୋମ୍'କୁ (ଘରକୁ) ରକ୍ଷା କରି ଶିଖ । ମୋତେ ଯଦି ଏତେ ବର୍ଷ ବୟସ ହୋଇନଥାନ୍ତା । ମୁଁ ସର୍ବ ପ୍ରଥମେ ସୈନ୍ୟ ବାହିନୀରେ ଯୋଗ ଦେଇଥାନ୍ତି ।''

୧୯୧୭ରେ କଂଗ୍ରେସର କଲିକତା ଅଧିବେଶନରେ ସେ ସମ୍ପର୍କରେ ଗୃହୀତ ପ୍ରସ୍ତାବରେ ମୁଖ୍ୟ ସମର୍ଥକ J.N. Roy କହିଥିଲେ, " I happen to be one of those who beleive that we could do little with responsible

Government in this country, if we have not military training( Here, Here). In fact speaking for myself, had I a choice between responsible Government and military Training. I would unhesitatingly choose Military Training (proceedings of the Thirty second congress, Calcutta, 1917.) ଅର୍ଥାତ୍ ଯେଉଁମାନେ ବିଶ୍ୱାସ କରନ୍ତି ଯେ ମିଲିଟାରୀ ଟ୍ରେନିଂ ନ ହେଲେ ଆମେ ଦାୟିତ୍ୱ ପୂର୍ଣ୍ଣ ସରକାରରେ ବିଶେଷ କିଛି କରିପାରିବା ନାହିଁ । ମୁଁ ସେମାନଙ୍କ ଭିତରୁ ଜଣେ । ମୋ ନିଜ କଥା କହିବାକୁ ଗଲେ ମୁଁ କହିପାରେ ଯେ ଦାୟିତ୍ୱ ସମ୍ପନ୍ନ ସରକାର ଓ ମିଲିଟାରୀ ଟ୍ରେନିଂ ଏହି ଦୁଇଟିରୁ ଗୋଟିଏ ବାଛିବାକୁ ଯଦି ମୋତେ କୁହାଯାଏ, ତେବେ ମୁଁ ବିନା ଦ୍ୱିଧାରେ ମିଲିଟାରୀ ଟ୍ରେନିଂକୁ ହିଁ ପସନ୍ଦ କରିବି ।''

ତତ୍‌କାଳୀନ କଂଗ୍ରେସ ନେତାମାନେ ଉପରୋକ୍ତ ସିଦ୍ଧାନ୍ତ ଅନୁସାରେ ଯେଉଁ ଭାରତୀୟ ଯୁବକମାନଙ୍କୁ ମିଲିଟାରୀ ଟ୍ରେନିଂ ନେବାକୁ ଉତ୍ସାହିତ କଲେ, ସେହି ଯୁବକ ମାନେ ଭାରତର ସ୍ୱାଧୀନତା ପ୍ରାପ୍ତିରେ ସହଯୋଗ କରିବା ଦୂରେ ଥାଉ ସୈନ୍ୟବାହିନୀରେ ଯୋଗ ଦେଇ ଦେଶ ପ୍ରେମୀ ଭାରତୀୟମାନଙ୍କୁ ହତ୍ୟା କରିବାରେ ବ୍ରିଟିଶ୍ ସୈନ୍ୟମାନଙ୍କୁ ସାହାଯ୍ୟ ହିଁ କରିଥିବେ ।

କଂଗ୍ରେସର ଏ ପ୍ରକାର କାର୍ଯ୍ୟକଳାପ ଭାରତର ବ୍ରିଟିଶ ଶାସକ ମାନଙ୍କୁ ବରଂ ଅଧିକ ଶକ୍ତିଶାଳୀ ହିଁ କରିଥିଲା । ତାହା ହିଁ ଥିଲା କଂଗ୍ରେସର ନୀତି ଓ ଆଦର୍ଶ । ବ୍ରିଟିଶ୍ ରାଜଶକ୍ତିକୁ ଅଧିକ ବଳଶାଳୀ କଲେ ସେମାନେ ଭାରତବାସୀଙ୍କର ରାଜଭକ୍ତି ଓ ରାଜାନୁଗତ୍ୟରେ ସନ୍ତୁଷ୍ଟ ହୋଇ ସେମାନଙ୍କୁ ସ୍ୱାୟତ୍ତ ଶାସନ ବ୍ୟବସ୍ଥାର ପୁରସ୍କାର ପ୍ରଦାନ କରିବେ । ୧ମ ମହାଯୁଦ୍ଧ ବେଳେ ଏହାହିଁ ଥିଲା କଂଗ୍ରେସର ମାନସିକତା । ସେ ଦୃଷ୍ଟିରୁ ବ୍ରିଟିଶ୍ ସୈନ୍ୟ ବାହିନୀ ଭିତରେ ସାମାନ୍ୟ 'ବିଶୃଙ୍ଖଳା' ବ୍ରିଟିଶ୍ ପ୍ରଶାସକମାନଙ୍କ ଅପେକ୍ଷା କଂଗ୍ରେସ ନେତାମାନଙ୍କୁ ବେଶୀ ବାଧୁଥିଲା ।

ତେଣୁ ସୈନ୍ୟବାହିନୀରେ 'ଦେଶପ୍ରେମୀ' ମାନଙ୍କର ଅନୁପ୍ରବେଶକୁ ସେମାନେ ପ୍ରାଣ ପଣେ ବିରୋଧ କରୁଥିଲେ । ରାଜନୈତିକ ଦଳ ଭାବରେ କେବଳ ପଞ୍ଜାବର ଅକାଳୀ ଦଳ ଓ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଦେଶପ୍ରେମୀ ବିପ୍ଳବୀମାନଙ୍କୁ ଚୁପ୍ ଚାପ୍ ବ୍ରିଟିଶ୍ ସୈନ୍ୟ ବାହିନୀରେ ରିକ୍ରୁଟ୍ କରିବାକୁ ଚେଷ୍ଟା କରୁଥିଲେ । କିନ୍ତୁ ପୂର୍ବ ଏସିଆରେ ୧୯୪୩ ମସିହାରେ 'ଆଜାଦ୍ ହିନ୍ଦ୍ ଫୌଜ' ଗଢ଼ାଯିବା ପରେ ଭାରତରେ ସୈନ୍ୟ ବାହିନୀ ଭିତରେ କିପରି ବ୍ୟାପକ ଅନୁପ୍ରବେଶ କରାଇଥିଲେ, ପରବର୍ତ୍ତୀ ଅଧ୍ୟାୟରେ ତାହାର ବିସ୍ତୃତ ଆଲୋଚନା କରାଯାଇଛି ।



# ସୈନ୍ୟବାହିନୀରେ ଅନୁପ୍ରବେଶ

ପ୍ରଥମ ମହାଯୁଦ୍ଧ ସମୟରେ ପଞ୍ଜାବରେ ଅକାଳୀ ଆନ୍ଦୋଳନ ଓ ଯୁକ୍ତରାଷ୍ଟ୍ର ଆମେରିକା ତଥା କାନାଡ଼ାରେ ବାସ କରୁଥିବା ଶିଖମାନଙ୍କର 'ଗଦର' ଦଳର ବ୍ୟାପକ ବୈପ୍ଳବିକ କାର୍ଯ୍ୟକଳାପ ପଞ୍ଜାବକୁ ମଧ୍ୟ ସମ୍ପ୍ରସାରିତ ହୋଇଥିଲା । ୧ମ ମହାଯୁଦ୍ଧରେ ଭାରତ ବାହାରେ ଯେଉଁ ଶିଖ ସୈନ୍ୟମାନେ ଇଂରେଜମାନଙ୍କ ପାଇଁ ଲଢ଼ିଥିଲେ, ସେମାନେ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିବା ପରେ ଅକାଳୀ ଆନ୍ଦୋଳନ ଅତ୍ୟନ୍ତ ଉଗ୍ରରୂପ ଧାରଣ କରିଥିଲା । ମେଜର୍ ଏ. ଇ. ବ୍ୟାରେଷ୍ଟୋଙ୍କ ତଥ୍ୟ ଅନୁସାରେ "ଯୁଦ୍ଧ ଫେରନ୍ତା ଶିଖ ସୈନ୍ୟ ମାନଙ୍କୁ ଅକାଳୀ ନେତୃମଣ୍ଡଳୀ ଆନ୍ତରିକ ସ୍ୱାଗତ ଜଣାଇଥିଲେ । ସେମାନେ କାର୍ଯ୍ୟରତ ଶିଖ୍ ସୈନ୍ୟମାନଙ୍କ ମଧ୍ୟରେ ଅକାଳୀ ଆନ୍ଦୋଳନ ସମ୍ପର୍କରେ ପ୍ରଚାର କରୁଥିଲେ ।" According to several British officers, there was much trouble with the infilitrators and sympathisers. After NanKana Massacre Black turbans appeared among Sikh soldiers ××××. For the first time in history of this agitation recruiting officers reported difficulties in obtaining Jat Sikhs for the Army. (Major A.E. Barstow's 'SIKHS', Page-44.) ଅର୍ଥାତ୍ କେତେକ ବ୍ରିଟିଶ୍ ଅଫିସରଙ୍କର ତଥ୍ୟ ଅନୁସାରେ ସୈନ୍ୟବାହିନୀରେ ଅନୁପ୍ରବେଶ ଓ ସହାନୁଭୂତି ଯୋଗୁଁ ବହୁ ଅସୁବିଧା ସୃଷ୍ଟି ହୋଇଥିଲା, 'ନାନ୍‌ଖାନ୍' ଗଣହତ୍ୟା'ର ପ୍ରତିବାଦରେ ଶିଖ ସୈନ୍ୟମାନେ 'କଳାପଗଡ଼ି' ବାନ୍ଧିବା ଦେଖା ଯାଇଥିଲା । ସୈନ୍ୟ ବାହିନୀରେ ଯୋଗଦେବା ପାଇଁ ଜାଠ ଶିଖ ବେଶି ମିଳିଲେ ନାହିଁ ।

ସୈନ୍ୟବାହିନୀରେ ଅସନ୍ତୁଷ୍ଟ ଶିଖ୍ ସୈନ୍ୟମାନଙ୍କ ଦ୍ୱାରା ପଞ୍ଜାବର ଫିରୋଜ ପୁର ଓ ଲାହୋର କାଣ୍ଟନ୍‌ମେଣ୍ଟର ଶିଖ ସୈନ୍ୟମାନଙ୍କ ଦ୍ୱାରା ୧୯୧୫ ଫେବୃୟାରୀ ୨୨ ତାରିଖରେ ଯେଉଁ ବିଦ୍ରୋହ ହୋଇଥିଲା, ତାହା ୧୮୫୭ର ମହାବିଦ୍ରୋହ ପରେ ସ୍ୱାଧୀନତା ସଂଗ୍ରାମର ପ୍ରଥମ ସଶସ୍ତ୍ର ବିଦ୍ରୋହ । ସେ ସମ୍ପର୍କରେ ବିସ୍ତୃତ ଆଲୋଚନା ପୂର୍ବବର୍ତ୍ତୀ ଅଧ୍ୟାୟମାନଙ୍କରେ କରାଯାଇଛି । ଅକାଳୀମାନଙ୍କ ବ୍ୟତୀତ ଅନ୍ୟ କୌଣସି ରାଜନୀତିକ ଦଳ ସୈନ୍ୟ ବାହିନୀରେ ବିପ୍ଳବୀ ମାନଙ୍କର ଅନୁପ୍ରବେଶ କରାଇ ନଥିଲେ ।

"Efforts were made by the Communist Party of India in later years for infilitration." (Major A.E. Barstow). ପରବର୍ତ୍ତୀ

କାଳରେ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଦ୍ୱାରା ସୈନ୍ୟବାହିନୀରେ ଅନୁପ୍ରବେଶ କରିବାକୁ ଉଦ୍ୟମ ହୋଇଥିଲା । ୧୯୩୦ ମସିହାରେ ମହାତ୍ମା ଗାନ୍ଧୀଙ୍କ ଦ୍ୱାରା ଆହୂତ ଲବଣ ସତ୍ୟାଗ୍ରହ ସମୟରେ ପେଶୱାରରେ ଅବସ୍ଥାପିତ 'ରୟାଲ ଗରୱାଲ ରେଜିମେଣ୍ଟ' ଶାନ୍ତିପୂର୍ଣ୍ଣ ଧର୍ମଘଟକାରୀଙ୍କ ଉପରେ ଗୁଳିଚାଳନା ପାଇଁ ବ୍ରିଟିଶ୍ ଅଫିସରଙ୍କ ଅର୍ଡରକୁ ପାଳନ ନ କରିବା ଘଟଣା ବ୍ରିଟିଶ୍ ପ୍ରଶାସକ ମାନଙ୍କ ମଧରେ ଯେଉଁ ବିସ୍ମୟ ସୃଷ୍ଟି କରିଥିଲା, ତାହାକୁ କେବଳ ଅନୁପ୍ରବେଶ ନ କହି 'ଜାତୀୟ ସଂଗ୍ରାମ' ଆହ୍ୱାନର ସଂକ୍ରମଣ ବୋଲି ମଧ କୁହାଯାଉଥାଏ । ସେ ଯାହା ହେଉ 'ରୟାଲ୍ ଗରୱାଲ୍ ରେଜିମେଣ୍ଟ'ର ସେହି ଅବାଧତା ବା 'ବିଦ୍ରୋହ' ବ୍ରିଟିଶ୍ ସାମରିକ ପ୍ରଶାସକ ମାନଙ୍କ ଭିତରେ ଦିଲ୍ଲୀରୁ ଲଣ୍ଡନ ପର୍ଯ୍ୟନ୍ତ ବିପୁଳ ଆଲୋଡ଼ନ ସୃଷ୍ଟି କରିଥିଲା । ସରକାର 'ମୁହଁ' ରକ୍ଷା କରିବାକୁ ଯଦିଓ କହିଲେ ଯେ ସେହି ସ୍ଥାନରେ କୌଣସି ଉଚ୍ଚ ପଦସ୍ଥ ବ୍ରିଟିଶ୍ ସାମରିକ ଅଧିକାରୀ ନଥିବାରୁ ଗୁଳି କରିବାକୁ 'ଅନିଚ୍ଛୁକ' ରେଜିମେଣ୍ଟକୁ ବୁଝାଇ ପାରିଲେ ନାହିଁ । କିନ୍ତୁ ବାସ୍ତବ କ୍ଷେତ୍ରରେ ଥିବା ଅନ୍ୟ ସୈନ୍ୟମାନେ ସରକାରଙ୍କ ସେହି ପ୍ରଚାରକୁ ଗ୍ରହଣ କରି ନଥିଲେ । କିନ୍ତୁ ପରବର୍ତ୍ତୀ ସମୟରେ ସେହି ବ୍ରିଟିଶ୍ ଐତିହାସିକମାନେ ଲେଖିଲେ ଯେ "The most notorious loss of control occured at Peswar on April 23 & 25, 1930. When two platoons of the Royal Garhwal Rifles' mutinied. ଅର୍ଥାତ୍ ୧୯୩୦ରେ ପେଶ୍ୱାରରେ ଅବସ୍ଥାପିତ ରୟାଲ୍ ଗରୱାଲ ରାଇଫଲ୍‌ର ବିଦ୍ରୋହ ସର୍ବାପେକ୍ଷା 'ଶୃଙ୍ଖଳା ଭଙ୍ଗ' ଘଟଣା ଥିଲା । (Stephen P. Cohan, page-96) ସେ ସମ୍ପର୍କରେ ଗଠିତ 'Court of Enquiry'ର ବିଚାର ପରେ କେତେକ ଭାରତୀୟ ପେଟି ଅଫିସରଙ୍କୁ ଭର୍ତ୍ସନାଓ ଦଣ୍ଡ ପ୍ରଦାନ କରାଯାଇଥିଲା । ଏହି ଭର୍ତ୍ସନା ଓ ଦଣ୍ଡ ପ୍ରଦାନର ପ୍ରତିବାଦ କରି ଗୋଟିଏ ପ୍ଲାଟୁନ୍ ଗରୱାଲ ସୈନ୍ୟ ସୈନ୍ୟ ବାହିନୀରୁ ବିଦାୟ ବା ଡିସ୍‌ଚାର୍ଜ ହେବାପାଇଁ ଏକ ମିଳିତ ଦରଖାସ୍ତ ଦେଇଥିଲେ । ସେଦିନ ପେଶୱାରରେ ଅନ୍ୟତ୍ର 'ଡ୍ୟୁଟି'ରେ ଯୋଗଦେବା ପାଇଁ ଆସିଥିବା ବାସ୍ (Bus)ରେ କେହି ବସିଲେ ନାହିଁ । ସେମାନଙ୍କ ଏହି ଅବାଧତା ପାଇଁ କୌଣସି ଦଣ୍ଡ ନ ଦେଇ ଶାନ୍ତିପୂର୍ଣ୍ଣ ଭାବେ ନିରସ୍ତ୍ର କରିଦିଆଗଲା ଓ ତା'ପରେ ଅନ୍ୟ କୌଣସି ଅଘଟଣ ହୋଇ ନଥିଲା । ଏହାକୁ ବ୍ରିଟିଶ୍ ପ୍ରଶାସକମାନଙ୍କର ଏକ ନୈତିକ ପରାଜୟ ବୋଲି ମଧ କୁହାଯାଏ । ତଦନ୍ତ କୋର୍ଟରେ ୧୭ ଜଣ ଗରୱାଲ୍ ବାସୀ ସୈନ୍ୟଙ୍କୁ କଠୋର ଦଣ୍ଡ ଦିଆଯାଇଥିଲା । ଦୁଇଜଣ NCO (ନନ୍ କମିଶନ୍‌ଡ୍ ଅଫିସର) ଧର୍ମୀୟ ସଂକ୍ରମଣରେ ଆକ୍ରାନ୍ତ ହୋଇଥିବା 'ଘଟଣା ଜଣାଇ ନଥିବାରୁ ଜଣେ ହାବିଲଦାର ମେଜରଙ୍କୁ ଭର୍ତ୍ସନା କରାଯାଇଥିଲା । 'ରାଜଦ୍ରୋହ' ପ୍ରଚାରର ପ୍ରଭାବ ସେମାନଙ୍କ ଉପରେ ପଡ଼ିଥିବା ଏବଂ କ୍ୟାଣ୍ଟନ୍‌ମେଣ୍ଟ ଅଞ୍ଚଳରେ ରାଜଦ୍ରୋହୀ ପ୍ରଚାରକମାନଙ୍କ ସମ୍ପର୍କରେ ସୈନ୍ୟମାନେ ଆସୁଥିବା କଥା କମିସନ୍ ଦୃଢ଼ ମତ ପ୍ରକାଶ କରିଥିଲେ । ଉକ୍ତ ତଦନ୍ତ ରିପୋର୍ଟକୁ

ସାଧାରଣରେ ପ୍ରକାଶ ନକରି ସରକାର ଗୋପନ ରଖିଥିଲେ । କିନ୍ତୁ ତା' ସହ ନିକଟତର ସମ୍ପର୍କ ରଖିଥିବା ସୈନ୍ୟ ଓ ସିଭିଲିଆନ୍‌ମାନେ ଜାଣି ପାରିଲେ ଯେ "They beleived that the Garh wallis had been infected with political ideas. If other units could be similarly motivated, they might also revolt. If the Army could not be trusted to control politically inspired crowds the entire fabric of army discipline and ultimately British might be unravelled with relative ease. These expectations were short lived. Although many rumors circulated, no other military unit suffered serious breach of discipline until the Indian National Army (INA) was created in World War - II.

(ସେମାନେ ବୁଝିପାରିଲେ ଯେ ଗଡ଼ୱାଲିମାନେ ରାଜନୀତିକ ଆଦର୍ଶରେ ସଂକ୍ରମିତ ହୋଇ ଅଛନ୍ତି । ଅନ୍ୟାନ୍ୟ ରେଜିମେଣ୍ଟ ମଧ୍ୟ ସେଭଳି ସକ୍ରମିତ ହୋଇପାରନ୍ତି । ରାଜନୀତି ସଂକ୍ରମିତ ଜନତାକୁ ପରାଭୂତ କରିବା ପାଇଁ ଯଦି ସୈନ୍ୟବାହିନୀ ସମର୍ଥନ ହୁଏ, ତାହାହେଲେ ସୈନ୍ୟବାହିନୀରୁ ଆରମ୍ଭ କରି ସମଗ୍ର ବ୍ରିଟିଶ୍ ପ୍ରଶାସନ ଶୃଙ୍ଖଳା ମଧ୍ୟ ଅତି ସହଜରେ ବିପର୍ଯ୍ୟସ୍ତ ହୋଇପଡ଼ିବ । ଅବଶ୍ୟ ସେଭଳି ଆଶଙ୍କା କ୍ଷଣସ୍ଥାୟୀ ଥିଲା ଭାରତୀୟ ଜାତୀୟ ବାହିନୀ ବା ଆଜାଦ୍ ହିନ୍ଦ୍ ଫୌଜ ଗଠିତ ନହେବାଯାଏ ସୈନ୍ୟ ବାହିନୀ ଭିତରେ ରାଜନୀତିକ ସଂକ୍ରମଣ ହୋଇନଥିଲା ।

୧୯୪୩ ମସିହା ମାର୍ଚ୍ଚ ୭ ତାରିଖରେ କଲିକତାର ରସା ରୋଡ୍ ସ୍ଥିତ ନକିପୁର ଜମିଦାରଙ୍କ ଘରେ ନୌବିଦ୍ରୋହ ପ୍ରସ୍ତୁତି ପାଇଁ ପ୍ରଥମ ଆଲୋଚନା ବୈଠକ ବସିଥିଲା । ଏହି ବୈଠକ ମୁଖ୍ୟତଃ ଅଚ୍ୟୁତ ପଟ୍ଟବର୍ଦ୍ଧନ ଓ ଅନ୍ୟାନ୍ୟ କଂଗ୍ରେସ ସୋସିଆଲିଷ୍ଟ ପାର୍ଟିର ମିଲିଟାଣ୍ଟ ନେତାମାନଙ୍କ ଦ୍ୱାରା ଆହୂତ ହୋଇଥିଲା । ବିପ୍ଳବିଣୀ ଅରୁଣା ଆସଫ୍‌ଅଲୀ ତାହାର ଅନ୍ୟତମ୍ ଆବାହିକା ଥିଲେ । ଶ୍ରୀମତୀ ଅଲ୍ଲୀ ସେତେବେଳେ ଅଣ୍ଡରଗ୍ରାଉଣ୍ଡରେ ରହି 'ଅଗଷ୍ଟ ବିପ୍ଳବ' ପରିଚାଳନା କରୁଥିବାରୁ ଅତି ସ୍ୱାଭାବିକ ଭାବରେ ସେ ମଧ୍ୟ 'ନୌବିଦ୍ରୋହ'ର ପ୍ରସ୍ତୁତି କାର୍ଯ୍ୟରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ଏତଦ୍‌ବ୍ୟତୀତ ଫରୱାର୍ଡ଼ ବ୍ଲକର ବୁଇକାର ପ୍ରଭୃତି ଆଗଧାଡ଼ିର ନେତାମାନେ ମଧ୍ୟ ସେହି କାର୍ଯ୍ୟରେ ମନପ୍ରାଣ ଢାଳି ଦେଇଥିଲେ । ନେତାଜୀ ସୁଭାଷଙ୍କର 'ଭାରତ ତ୍ୟାଗ' ଏବଂ ଜର୍ମାନୀରେ ବନ୍ଦୀ ଭାରତୀୟ ସୈନ୍ୟମାନଙ୍କୁ ସଙ୍ଗଠିତ କରୁଥିବାରୁ ଭାରତରେ ଥିବା ତାଙ୍କର ଦଳଭୁକ୍ତ ସଭ୍ୟମାନେ ମଧ୍ୟ ନେତାଜୀଙ୍କ କାର୍ଯ୍ୟରେ ସାହାଯ୍ୟ କରିବା ପାଇଁ 'ସେନାବାହିନୀ' ଭିତରେ ବିଦ୍ରୋହ ସୃଷ୍ଟି କରିବାକୁ ସ୍ୱତଃ ବିଶେଷ ସକ୍ରିୟ ଥିଲେ । ଏହି ପରିପ୍ରେକ୍ଷୀରେ କଲିକତା ବୈଠକ ନୌବାହିନୀ ବିଦ୍ରୋହ ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଅଛି ।

ଭାରତର ତତ୍‌କାଳୀନ ରାଜନୈତିକ ପରିସ୍ଥିତି ତଥା ବିଶ୍ୱ ଯୁଦ୍ଧର ସେ ସମୟର ଗତି ଓ ପ୍ରକୃତିକୁ ଆଲୋଚନା କରି ଯେଉଁ ସିଦ୍ଧାନ୍ତ ନିଆଯାଇଥିଲା ତାହାହିଁ ଥିଲା 'ନୌବିଦ୍ରୋହ'ର ଭିତ୍ତି ପ୍ରସ୍ତର । ନେତୃବୃନ୍ଦଙ୍କର ଆଲୋଚନା ଓ ବକ୍ତବ୍ୟରେ ଏହାହିଁ ପ୍ରକାଶିତ ହେଉଥିଲା ଯେ ସୈନ୍ୟବାହିନୀରେ ବିଦ୍ରୋହ ସୃଷ୍ଟି ନ ହେଲେ ଇଂରେଜମାନଙ୍କୁ ସହଜରେ ଭାରତରୁ ନିଷ୍କାସିତ କରି ହେବ ନାହିଁ । ସୈନ୍ୟବାହିନୀର ସଂଖ୍ୟା ଗରିଷ୍ଠ ସିପାହୀ ଓ ଅଫିସରମାନଙ୍କର ଆନୁଗତ୍ୟ କାରଣରୁ ହିଁ ଭାରତ ଅଧିକାର କରିବା ଦିନୁ ଆଜିଯାଏଁ ଇଂରେଜ ଶାସକ ବୃନ୍ଦ ଏ ଦେଶରେ ନିର୍ବିଘ୍ନରେ ଶାସନ ଗାଦିରେ ରହି ପାରି ଅଛନ୍ତି । ଜାତୀୟ ଆନ୍ଦୋଳନ ଓ ମୁକ୍ତି ସଂଗ୍ରାମର ସଂକ୍ରମଣରୁ ସୈନ୍ୟବାହିନୀକୁ ମୁକ୍ତ ରଖିବାରେ ସମର୍ଥ ହୋଇପାରିଥିବାରୁ ହିଁ ଏହା ସମ୍ଭବ ହୋଇଛି । କିନ୍ତୁ ବର୍ତ୍ତମାନ ପରିସ୍ଥିତି ସମ୍ପୂର୍ଣ୍ଣ ବଦଳି ଯାଇଛି । ସୈନ୍ୟବାହିନୀରେ ଥିବା ପୁଞ୍ଜିଭୂତ ଅସନ୍ତୋଷ ଓ କ୍ରମେ ଉତ୍ତାଳ ହୋଇ ଉଠୁଥିବା ଜାତୀୟ ମୁକ୍ତି ସଂଗ୍ରାମ ସେହି ଅସନ୍ତୋଷକୁ କ୍ରମେ ଅଧିକ ବିସ୍ଫୋରଣ ମୁଖୀ କରୁଅଛି । ତେଣୁ ସୈନ୍ୟବାହିନୀରେ କିଛି ମିଲିଟାଣ୍ଟ ବା ଲଢୁଆ ଟାଇପର ରାଜନୈତିକ ସଚେତକ ଯୁବକଙ୍କୁ ରିକ୍ରୁଟ କରିବାର ଉଦ୍ୟମ ପାଇଁ ଏହି ବୈଠକ ଆହୁତ ହୋଇଅଛି, ଏହା ହିଁ ଥିଲା କଲିକତାରେ ଆହୁତ ସେହି ଗୋପନୀୟ ବୈଠକର ଉଦ୍ଦେଶ୍ୟ ।

କଠୋର ନିରାପତ୍ତାର ବଳୟକୁ ଭେଦ କରି ରାଜନୈତିକ ଉଦ୍ଦେଶ୍ୟରେ ସୈନ୍ୟବାହିନୀରେ ପ୍ରବେଶ କରୁଥିବା ସାଧାରଣ ସମୟରେ ମଧ୍ୟ ଏକ ଅଚିନ୍ତନୀୟ ଓ ଅସମ୍ଭବ ବ୍ୟାପାର ହୋଇଥିଲେ ସୁଦ୍ଧା ବହୁ ବର୍ଷ ବ୍ୟାପି ବିଶ୍ୱଯୁଦ୍ଧ ଏବଂ ତଦ୍‌ଜନିତ ଦୁଃଖ ଦୁର୍ଦ୍ଦଶା, ରଣ କ୍ଷେତ୍ରରେ ଇଂରେଜ ସୈନ୍ୟମାନଙ୍କର ବାରମ୍ବାର ପରାଜୟ ତଥା ଶତ୍ରୁ ପକ୍ଷ ଜର୍ମାନୀ-ଜାପାନ ଶକ୍ତି ନିକଟରେ ପରାଜୟ ବରଣ କରିବା ଓ ଦେଶ ଭିତରେ ସରକାର ବିରୋଧୀ ଅଶାନ୍ତ ବାତାବରଣ ସମସ୍ତ ପରିସ୍ଥିତିକୁ କେତେକାଂଶରେ ଯେ ବିଶୃଙ୍ଖଳ ଓ ଅନୁଶାସନ ହୀନତାରେ ପହଞ୍ଚାଇ ଦେଇଥିଲା ଏହା ଉଲ୍ଲେଖ କରିବା ନିଷ୍ପ୍ରୟୋଜନ ଅଟେ । ସେହି ପରିସ୍ଥିତିର ଉପଯୋଗ କରି ସ୍ୱାଧୀନତା ଲାଭ କରିବାକୁ ଜୀବନ ପଣ କରିଥିବା ଅକୁତୋଭୟ ବିପ୍ଳବୀ ଯୁବକମାନେ ଶହ ଶହ ସଂଖ୍ୟାରେ ସୈନ୍ୟ ବାହିନୀରେ ଯେପରି ଅନୁପ୍ରବେଶ କରିଥିଲେ, ତାହାର ସ୍ମୃତି ଚାରଣ କେବଳ ରୋମାଞ୍ଚକର ନୁହେଁ, ରହସ୍ୟ ଗୋଏନ୍ଦା ଉପନ୍ୟାସ ଭଳି ଅତୀବ ଚିତ୍ତାକର୍ଷକ ଓ କୌତୁହଳ ପ୍ରଦ ।

ସେହି ସମସ୍ତ ଦୁଃସାହସିକ କାର୍ଯ୍ୟ ତଥା ବିଦ୍ରୋହ ଆରମ୍ଭ ହେଲେ ତାହାର ନିୟନ୍ତ୍ରଣ ଏବଂ ଦିଗ୍‌ଦର୍ଶନ ଦେବାପାଇଁ ଅଧିକାଂଶ ବାମପନ୍ଥୀ ଦଳର ବିପ୍ଳବବାଦୀ ଅତି ବିଶ୍ୱସ୍ତ ନେତାମାନଙ୍କୁ ନେଇ ଅଚ୍ୟୁତ ପଟ୍ଟବର୍ଦ୍ଧନଙ୍କ ଅଧ୍ୟକ୍ଷତାରେ ଏକ "କେନ୍ଦ୍ରୀୟ ଆକ୍‌ସନ୍ କମିଟି" ଗଠିତ ହୋଇଥିଲା । ସେହି କମିଟିରେ ପଟ୍ଟବର୍ଦ୍ଧନଙ୍କ ବ୍ୟତୀତ ଥିଲେ ଭୁଲା ଭାଇ ଦେଶାଇ, ଆର.ଏନ. ରୁଇକର, ଡକ୍ଟର ଗଙ୍ଗାଧର ଅଧିକାରୀ, ଡକ୍ଟର ୟୁସୁଫ୍, ଶ୍ରୀମତୀ କମଳା

ଡୋଣ୍ଡେ, ବି.ଟି. ରଣଦିବେ, ଅରୁଣା ଆସଫ ଅଲ୍ଲୀ, ସାହାଦାର ଅଲ୍ଲୀ ଏବଂ ସୈନ୍ୟବାହିନୀର ତିନିଜଣ ପ୍ରତିନିଧି ଯଥା: ଚନ୍ଦ୍ର ସିଂ ଗଡଓ୍ୱାଲ୍ (ସ୍ଥଳ ବାହିନୀ) ପି. କୋଟ୍‌ଟାୟମ୍ (ଆକାଶ ବାହିନୀ) ଓ 'ମଦନଲାଲ ସାକ୍‌ସେନା (ନୌବାହିନୀ) । ଶେଷୋକ୍ତ ତିନିଜଣଙ୍କୁ ସ୍ୱ ସ୍ୱ ବାହିନୀ ଶାଖାର କନଭେନର୍ ବା ଆବାହକ ଭାବରେ ମନୋନିତ କରାଯାଇଥିଲା । ଏହା ଉଲ୍ଲେଖ କରିବା ନିଷ୍ପ୍ରୟୋଜନ ଯେ ସୈନ୍ୟବାହିନୀ ଭଳି ମାଛି ନବ ଖଣ୍ଡ ହେଉଥିବା ବିଭାଗରେ ଏ ସମସ୍ତ କାର୍ଯ୍ୟ ଅତିଶୟ ଗୋପନ ଭାବରେ କରିବାର ଆବଶ୍ୟକତା ଥିଲା । ତେଣୁ ତାହା ମଧ୍ୟ ଥିଲା ଅତିଶୟ ବିପଜ୍ଜନକ, ଧରା ପଡ଼ିଲେ ଜେଲ-ଜୋରିମାନା ନୁହେଁ- କୋର୍ଟ ମାର୍ଶାଲ୍ ପରେ କମାଣ ମୁହଁରେ ଧୂଆଁ ସହିତ ଉଡ଼ିଯିବାର ଆଶଙ୍କା ଥିଲା ପ୍ରତି ପଦକ୍ଷେପରେ ।

ସେତେବେଳେ ଭାରତରେ ସରକାରୀ ସୈନ୍ୟବାହିନୀରେ ମୋଟ ସଂଖ୍ୟା ଥିଲା ବାଇଶି ଲକ୍ଷ ପନ୍ଦର ହଜାର ସାତ ଶହ ପଚାଶ ସ୍ଥଳବାହିନୀ ୨୦ ଲକ୍ଷ ୫୩ ହଜାର, ନୌବାହିନୀ ୩୨ ହଜାର ୯ ଶହ ଓ ବିମାନ ବାହିନୀ ପ୍ରାୟ ୩୦ ହଜାର ୫ଶହ । ତିନହଜାର ପାଞ୍ଚଶହ ଓ ଦୁଇ ହଜାର ପାଞ୍ଚ ଶହ ଜଣ ବିପ୍ଳବୀ ଯୁବକଙ୍କୁ ସେଥିରେ ଭର୍ତ୍ତୀ କରାଯାଇଥିଲା ।



# ପ୍ରଥମ ନୌ ବିଦ୍ରୋହ

୧୯୪୩ ମସିହା ମଝି ପହିଲାରେ ''ଆକ୍ସନ୍ କମିଟି'' ସୈନ୍ୟବାହିନୀରେ ବିଦ୍ରୋହ ପରିବେଶ ସୃଷ୍ଟି କରିବା ପାଇଁ ଗୋଟିଏ ଦୁଃସାହସିକ ଓ ବିପଦ୍ଜନକ କାର୍ଯ୍ୟକ୍ରମ ସ୍ଥିରକରି ବିଭିନ୍ନ ବାହିନୀ ଶାଖାରେ ଥିବା ପ୍ରତିନିଧିମାନଙ୍କୁ ଜଣାଇ ଦେଇଥିଲେ । ସେ ଗୁଡ଼ିକ ହେଲା-

(କ) ନୌବାହିନୀରେ ଥିବା ଅସନ୍ତୋଷ ଗୁଡ଼ିକୁ ଖୋଜି ଖୋଜି ତାକୁ ଅଧିକରୁ ଅଧିକତର ଉସ୍କେଇବାକୁ ଚେଷ୍ଟା କରିବା ଏବଂ ତାହା ସମ୍ପୂର୍ଣ୍ଣ ଚୁପ୍ ଚାପ୍ ବା ଗୋପନରେ ଚଳାଇବାକୁ ପଡ଼ିବ । ଏହି ପଦ୍ଧତିକୁ ଇଂରାଜୀରେ Whispering Campaign ବୋଲି କୁହାଯାଉଥିଲା । ଅର୍ଥାତ୍ କାନକୁହା ପ୍ରଚାର ।

(ଖ) ଜାହାଜ, ବ୍ୟାରକ୍ ଓ ସେନାବାହିନୀର ଅନ୍ୟାନ୍ୟ ସଙ୍ଗଠନରେ ବିଶୃଙ୍ଖଳ ସୃଷ୍ଟି କରିବାକୁ ଚେଷ୍ଟା କରିବା AGENT PROVOCATEURS.

(ଗ) ପୋଷ୍ଟରିଂ ସହ ଅନ୍ୟାନ୍ୟ ଧ୍ୱଂସ ମୂଳକ କାର୍ଯ୍ୟ କରି ସୈନ୍ୟବାହିନୀରେ ବ୍ରିଟିଶ୍ ବିରୋଧୀ ମନୋଭାବକୁ ଅଧିକ କଠୋର ଓ ଅନମନୀୟ କରିବା ।

(ଘ) ସମସ୍ତ ବାହିନୀରେ ଜାତି, ଧର୍ମ, ବର୍ଣ୍ଣ ଓ ସମ୍ପ୍ରଦାୟ ନିର୍ବିଶେଷରେ ଜାତୀୟବୋଧ ଆଦର୍ଶକୁ ଉଜ୍ଜିବିତ କରିବା ।

ଉପରୋକ୍ତ କାର୍ଯ୍ୟକ୍ରମ ସୈନ୍ୟବାହିନୀର ସମସ୍ତ ଶାଖା ପାଇଁ ଉଦ୍ଦିଷ୍ଟ ହୋଇଥିଲେ ସୁଦ୍ଧା, ନୌବାହିନୀରେ ଅପେକ୍ଷାକୃତ ଅଧିକ ସଂଖ୍ୟକ ମିଲିଟାଣ୍ଟ ଓ ଉଚ୍ଚଶିକ୍ଷିତ ଯୁବକ ଥିବାରୁ ସେଠାରେ ସେହି କାର୍ଯ୍ୟ ଅଧିକ ନିପୁଣତା ସହକାରେ ସମ୍ପନ୍ନ ହୋଇଥିଲା ।

କମିଟିର ନିର୍ଦ୍ଦେଶ ଅନୁସାରେ 'କାନକୁହା' ପ୍ରଚାର ପୁରାଦମ୍‌ରେ ଚାଲିଲା, ଅନ୍ୟାନ୍ୟ କାର୍ଯ୍ୟ ମଧ୍ୟରେ ସ୍ୱାଧୀନତା ସଂଗ୍ରାମର ଶହୀଦ ମାନଙ୍କର ଜୀବନଗାଥା ଗଳ୍ପ ଛଳରେ ପ୍ରଚାର କରିବା ଖୁବ୍ ଆକର୍ଷଣୀୟ ହେଉଥିଲା, ଝାନ୍ସୀରାଣୀଙ୍କ ବୀରତ୍ୱ, ଟୀପୁମୀରଙ୍କର ଦୁଃସାହସିକ ଯୁଦ୍ଧ, ଶହୀଦ ଭଗତ ସିଂ, ସୂର୍ଯ୍ୟ ସେନ୍‌ଙ୍କ ଆଲୌକିକ ଆତ୍ମତ୍ୟାଗ ସମ୍ବଳିତ ରୋମାଞ୍ଚକର ଇତିହାସ, ଅର୍ଦ୍ଧଶିକ୍ଷିତ ଓ ଅଶିକ୍ଷିତ ସିପାହୀମାନଙ୍କ ହୃଦୟରେ ସୃଷ୍ଟି କରୁଥିଲା ଅଶେଷ କୌତୁହଳ ଓ ଆଗ୍ରହ । ଗୋଳା, ବନ୍ଧୁକ, କମାଣ ସହ ନେତାଜୀଙ୍କ ଜର୍ମାନିରେ କାର୍ଯ୍ୟ କଳାପ ସେମାନଙ୍କ ମନରେ ଭରି ଦେଉଥିଲା ସାହସ ଓ ପ୍ରେରଣା । ସେମାନେ କ୍ରମେ କ୍ରମେ ବୁଝିଥିଲେ କିପରି ବ୍ରିଟିଶ୍ ବ୍ୟବସାୟୀମାନେ ଭାରତବର୍ଷରେ ବେପାର କରିବାକୁ ଆସି ଶାସକ ହୋଇଛନ୍ତି; କିପରି ଭାରତବର୍ଷ ଲୋକଙ୍କ ସାହାଯ୍ୟରେ ଭାରତକୁ ପରାଧୀନ କରି ରଖିଛନ୍ତି । ଦେଶର ସମସ୍ତ ଦୁଃଖ ଦୁର୍ଦ୍ଦଶା କାରଣ ହେଉଛି ସେହି ପରାଧୀନତା, ଏବଂ

ସେହି ପରାଧୀନତାର ଅଭିଶାପରୁ ଦେଶକୁ ମୁକ୍ତ କରିବାପାଇଁ ହିଁ ନେତାଜୀ ଆରମ୍ଭ କରି ଅଛନ୍ତି ଯୁଦ୍ଧ ଏବଂ ସେହି ଯୁଦ୍ଧରେ ଛାମୁଆ ବାହିନୀ ହେଉଛନ୍ତି ଜାପାନରେ ବନ୍ଦୀ ଭାରତୀୟ ସୈନ୍ୟ ! ବ୍ରିଟିଶ୍ ଅଧୀନରେ ଚାକିରି କରିଥିବା ସିପାହୀମାନେ ସେହି ବ୍ରିଟିଶ୍ ଶାସନ ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରୁଛନ୍ତି ଜାଣି ସେମାନେ ସ୍ତବ୍ଧ ହୋଇଯାଆନ୍ତି । କ୍ରମେ ସେମାନଙ୍କ ମନରେ ଦୃଢ଼ ଧାରଣା ସୃଷ୍ଟି ହୁଏ ଯେ ସେମାନେ କେବଳ ଭଡ଼ାଟିଆ ବା ଦରମାଖିଆ ଚାକର ନୁହଁନ୍ତି କିମ୍ବା ବିଦେଶୀ ଶାସକମାନଙ୍କର ଜଗୁଆଳ ନୁହଁନ୍ତି । ଇଚ୍ଛା କଲେ ସେମାନେ ମଧ ହୋଇ ପାରନ୍ତି ଅଶେଷ ଗୌରବର ଅଧିକାରୀ ସ୍ୱାଧୀନତା ସଂଗ୍ରାମୀ ଭାବରେ ।

ଏତଦ୍ ବ୍ୟତୀତ ସୈନ୍ୟମାନଙ୍କର ଅନ୍ୟାନ୍ୟ ଅସଂଖ୍ୟ ଅଭିଯୋଗ ରହିଥିଲା ସରକାର ବିରୁଦ୍ଧରେ । ସେମାନଙ୍କର ବେତନର ପରିମାଣ ଯଥେଷ୍ଟ ନଥିଲା । ସେଥିରେ ପୁଣି ଯୁଦ୍ଧ ଯୋଗୁଁ ଆକାଶ ଛୁଆଁ ମୂଲ୍ୟ ବୃଦ୍ଧି ସୃଷ୍ଟି କରୁଥିଲା ନିଅଣ୍ଟ ଓ ସଙ୍କଟ, ବେତନ ବି ଠିକ୍ ସମୟରେ ମିଳୁନଥିଲା । ୧୯୪୩ ମସିହାର ଦୁର୍ଭିକ୍ଷରେ ତିରିଶ ଲକ୍ଷ ଭାରତବାସୀ ଅନାହାରରେ ପ୍ରାଣତ୍ୟାଗ କରିଥିଲେ, ସେହି ଭୟାବହ ଦୁର୍ଭିକ୍ଷ ଭାରତୀୟ ଜନ ଜୀବନକୁ କରି ଦେଇଥିଲା ଅଧିକ ଦୁର୍ବିସହ । ସିପାହୀମାନଙ୍କ ପରିବାରରୁ ଆସୁଥିବା ଚିଠିରେ ଫୁଟି ଉଠୁଥିଲା ସେହି ଦୁଃଖ ଦୁର୍ଦ୍ଦଶାର କରୁଣ ଚିତ୍ର, ସିପାହୀମାନେ ବିଚଳିତ ହୋଇ ପଡୁଥିଲେ । ବିଦ୍ରୋହୀ ନେତା ମାନଙ୍କର 'କାନକୁହା' ପ୍ରଚାର ଅସନ୍ତୋଷାଗ୍ନିରେ ଘୃତ ବର୍ଷଣ କରୁଥିଲା ।

ସେହି ବର୍ଷ ଅଗଷ୍ଟ ୯ ତାରିଖରେ 'ଅଗଷ୍ଟ ବିପ୍ଳବ' ଦିବସ ଉପଲକ୍ଷେ ସେନାବାହିନୀରେ ତିନିଗୋଟି ଲୋକାଲ କମିଟି ଗଢ଼ିବାର ସିଦ୍ଧାନ୍ତ ହୋଇଥିଲା କେନ୍ଦ୍ରିୟ ଆକ୍ସନ୍ କମିଟିର । ଏବଂ ସେହି ସିଦ୍ଧାନ୍ତ ଅନୁସାରେ ସ୍ଥଳ ବାହିନୀରେ ଚନ୍ଦ୍ର ସିଂ ଗଡୱାଲଙ୍କ ନେତୃତ୍ୱରେ, ନୌବାହିନୀରେ ମଦନଲାଲ ସାକ୍ସେନା ଓ ଆକାଶ ବାହିନୀରେ ପି କୋଟ୍ରାୟମ୍‌ଙ୍କ ନେତୃତ୍ୱରେ ତିନି ଗୋଟି ତେର ଜଣିଆ କମିଟି ଗଠିତ ହୋଇଥିଲା । ଏକଥା ମଧ ସ୍ଥିର ହୋଇଥିଲା ଯେ ଏକ ନିର୍ଦ୍ଦିଷ୍ଟ ଦିନରେ ତିନି ବାହିନୀରେ ଏକା ସାଙ୍ଗରେ ବିଦ୍ରୋହ ଆରମ୍ଭ ହେବ । ୧୯୪୩ ଫେବୃୟାରୀ ୧୮ ତାରିଖ ଥିଲା ସେନା ବାହିନୀରେ ଏକ ସ୍ମରଣୀୟ ଦିବସ । ସେହିଦିନ ଫୋର୍ଥ ମାଡ୍ରାସ୍ କୋଷ୍ଟାଲ୍ ଡିଫେନ୍‌ସ ବ୍ୟାଟେରୀର ୯ ଜଣ ସିପାହୀ ସୈନ୍ୟ ବାହିନୀରେ ବିଦ୍ରୋହ ଘଟାଇବା ଅଭିଯୋଗରେ ପାଇଥିଲେ ଫାଶୀ ଦଣ୍ଡର ପୁରସ୍କାର । ସ୍ଥିର ହେଲା ଯେ ମାନ୍ଦ୍ରାଜ ସାଥୀମାନଙ୍କ ପବିତ୍ର ସ୍ମୃତିରେ ସେହି ଫେବୃଆରୀ ୧୮ ତାରିଖରେ ହିଁ ହେବ ସେନା ବାହିନୀରେ ବିଦ୍ରୋହ ଘୋଷଣା ।

'ବିଦ୍ରୋହ' ବାସ୍ତବରେ ସକାଳ 'ଚାହାପାନ' ଠାରୁ ଆରମ୍ଭ ହେବ ବୋଲି ସ୍ଥିର ହୋଇଥିଲା । ସୈନିକର ଦୈନନ୍ଦିନ ଜୀବନଚର୍ଯ୍ୟାରେ ସକାଳ ଚା-ବିସ୍କୁଟ୍ ଅର୍ଥାତ୍ ପ୍ରାତଃଭୋଜନ ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମ, ଯେଉଁଥିରେ କି ସବୁ ସିପାହୀ ନିଶ୍ଚିତ ଭାବେ ଏକତ୍ରିତ ହୁଅନ୍ତି ! ଏକେତ ସକାଳଖିଆ ଖୁବ୍ ନିକୃଷ୍ଟ ଧରଣର ହେଉ ଥିବାରୁ ତା ବିରୁଦ୍ଧରେ ସିପାହୀଙ୍କ କ୍ରୋଧ

ଥିଲା ଅତିଶୟ ଗଭୀର ତଥା ପୁଞ୍ଜିଭୂତ । ଅର୍ଥାତ୍, ଭାରତୀୟ ଅଫିସରମାନଙ୍କ ଅପେକ୍ଷା ଗୋରା ଅଧିକାରୀମାନଙ୍କୁ ଉତ୍କୃଷ୍ଟତର ଖାଦ୍ୟ ଦିଆଯାଉଥିଲା ସୁତରାଂ ସକାଳ ଚା'କୁ ବର୍ଜନ କଲେ ସିପାହୀମାନଙ୍କର ଅସନ୍ତୋଷ ପ୍ରକଟିତ ହେବ । ତା ପରେ ସ୍ଲୋଗାନ ହେବ "ଚାହା ନାହିଁ ତ କାମ ନାହିଁ" । ନୋ ଫୁଡ୍ ନୋ ୱାର୍କ । ପଛକୁ ଆନ୍ଦୋଳନ ଜମିଗଲେ, ଦାନା ବାନ୍ଧି ଗଲେ ସେଥିରେ ରାଜନୈତିକ ସ୍ଲୋଗାନ ମାନ ଯୋଗ କରାଯିବ । ଯଥା- "ବ୍ରିଟିଶ୍ ତୁମେ ଭାରତ ଛାଡ଼ । ବ୍ରିଟିଶ୍ ସାମ୍ରାଜ୍ୟ ବାଦ ନିପାତ ହେଉ । କଂଗ୍ରେସ ଲିଗ୍ ଏକ ହୁଅ । ଆମେ ପ୍ରଥମେ ଆଜାଦ୍ ହିନ୍ଦ୍ । ଗୋରାମାନଙ୍କୁ ନିପାତ କର, ସ୍ୱାଧୀନ ଭାରତ ଜିନ୍ଦାବାଦ୍," ଇତ୍ୟାଦି ।

## ଖାଇବର ଜାହାଜ ଧ୍ୱଂସ

୧୯୪୩ ଅକ୍ଟୋବର ବେଳକୁ ବିଶ୍ୱଯୁଦ୍ଧ ଭୟଙ୍କର ହୋଇ ଉଠିଥାଏ ବମ୍ବେ ବାରାକ୍‌ରେ ପ୍ରବଳ ଜନରବ ଯେ ୟୁରୋପର ଯୁଦ୍ଧ ସାମ୍ମୁଖ୍ୟରେ ଜର୍ମାନୀ ଓ ଇଟାଲୀର ଚାପ ହାଲୁକା କରିବାକୁ ଉତ୍ତର ଆଫ୍ରିକା ରଣାଙ୍ଗନରେ ଆଉ ଏକ ଫ୍ରଣ୍ଟ ଖୋଲିବାକୁ ପାଞ୍ଚଗୋଟି ଯୁଦ୍ଧ ଜାହାଜ ପଠାଯିବ । ପୁଣି ଏକ ଜନରବ ପ୍ରବଳ ବେଗରେ ପ୍ରଚାରିତ ହୋଇଗଲା ଯେ ଆଫ୍ରିକାରେ ନୂଆ ରଣ କ୍ଷେତ୍ର ଖୋଲା ହେବା ବିଷୟ ତୁଚ୍ଛା ଏକ ମିଥ୍ୟା ପ୍ରଚାର । ବାସ୍ତବ ସତ୍ୟଥିଲା ଏହା ଯେ ଯୁଦ୍ଧ କ୍ଷେତ୍ରକୁ ନେଇଯିବା ବାହାନାରେ କେତେକ 'ଅବାଧ ଓ ସନ୍ଦେହ ଜନକ ସିପାହୀ ଓ ଅଫିସର୍‌ଙ୍କୁ ଆରବ ମହାସାଗରରେ ନିକ୍ଷେପ କରିଦେବା । ସତ୍ୟ ହେଉ ବା ମିଥ୍ୟା ହେଉ, ଏଭଳି ଜନରବ ଭାରତୀୟ ସିପାହୀମାନଙ୍କ ମଧ୍ୟରେ ପ୍ରବଳ ବିରକ୍ତି କ୍ରୋଧ ଓ ଉତ୍ତେଜନା ସୃଷ୍ଟି କରିଥିଲା । ହଠାତ୍ ସତକୁ ସତ ଏକ ଦୁର୍ଘଟଣା ଘଟି ଯାଇଥିଲା ଅଗଷ୍ଟ ୧୬ ତାରିଖରେ । ଇଟାଲୀର ଏକ ଡେଷ୍ଟ୍ରୟର୍ ବା ଜାହାଜ ବିଧ୍ୱଂସୀ ବୁଡ଼ାଜାହାଜ ଆକ୍ରମଣରେ "ଏଚ୍. ଏମ୍. ଆଇ.ଏସ୍. ଖାଇବର" ଜାହାଜ ଭୂମଧ୍ୟ ସାଗରରେ ବୁଡ଼ି ଯାଇଥିବାରୁ ସେଥିରେ ଥିବା ବହୁ ସଂଖ୍ୟକ ଭାରତୀୟ ସିପାହୀ ମଧ୍ୟ ପ୍ରାଣ ତ୍ୟାଗ କରିଥିଲେ । ଯୁଦ୍ଧରେ ବିଶେଷତଃ ଦ୍ୱିତୀୟ ମହାଯୁଦ୍ଧରେ ଉଭୟ ପକ୍ଷରୁ ଅସଂଖ୍ୟ ଯୁଦ୍ଧ ଜାହାଜ ସାଗର ବକ୍ଷରେ ନିମଜ୍ଜିତ ହୋଇଥିଲା । ଯୁଦ୍ଧର ଅର୍ଥ କେବଳ ବିଜୟ ବା ପରାଜୟ ନୁହେଁ । ବିଜର ହେଉ ବା ନ ହେଉ ଜନ କ୍ଷୟ ଅବଧାରିତ । ବିଶେଷତଃ ନୌଯୁଦ୍ଧ ବା ଆକାଶ ଯୁଦ୍ଧରେ ଆକ୍ରମଣର ଅନ୍ୟ ନାମ ମୃତ୍ୟୁ । ସୁତରାଂ ସୈନ୍ୟ ଛାଉଣୀରେ କାହାର ମୃତ୍ୟୁ ସମ୍ବାଦ-ଏକ ମାମୁଲି ସମ୍ବାଦ । ବରଂ ସେହି ଭୟାବହ ଦ୍ୱିତୀୟ ବିଶ୍ୱ ଯୁଦ୍ଧରେ ନିରାପଦରେ କେହି ଜୀବନ୍ତ ଅବସ୍ଥାରେ ଯୁଦ୍ଧ କ୍ଷେତ୍ରରୁ ଫେରି ଆସିବା ହିଁ ଥିଲା ଅପ୍ରତ୍ୟାଶିତ ଓ ଆଶ୍ଚର୍ଯ୍ୟ ଜନକ । ଭାରତୀୟ ସୈନ୍ୟମାନଙ୍କ ପକ୍ଷରେ କିନ୍ତୁ "ମୃତ୍ୟୁ" ଟା ମାମୁଲି ନଥିଲା । ତାହା ଥିଲା ସ୍ୱପକ୍ଷର ଇଚ୍ଛାକୃତ ମୃତ୍ୟୁ ବା ହତ୍ୟା । ତାହାର କାରଣ ହେଲା ଏହା ଯେ ବ୍ରିଟିଶ୍ ସେନାପତିମାନେ ସେମାନଙ୍କର ଗୋରା ସୈନ୍ୟମାନଙ୍କୁ ଅପେକ୍ଷାକୃତ ନିରାପଦ ସ୍ଥାନରେ ଅବସ୍ଥାପିତ କରି

କାଲା ଆଦମିମାନଙ୍କୁ ଶତ୍ରୁ ପକ୍ଷ କମାଣ 'ର ପାଖାପାଖି ରଖିଥାନ୍ତି ଯେପରିକି ଯୁଦ୍ଧର 'ପ୍ରଥମ ପାହାର' ଟା ଭାରତୀୟ ସୈନ୍ୟମାନଙ୍କ ଉପରେ ପଡ଼ିବ ଏବଂ ସେହି ଅବସରରେ ଗୋରା ସୈନ୍ୟ ସେନାପତିମାନେ ନିଜକୁ ଅଧିକ ନିରାପଦ ଦୂରତ୍ୱକୁ ପଳାଇ ଯାଇ ପାରିବେ ।

ଜଣା ଯାଇଥିଲା ଯେ 'ଖାଇବର' ଯୁଦ୍ଧ ଜାହାଜକୁ ସେହି କାରଣରୁ ଧ୍ୱଂସର ସମ୍ମୁଖିନ ହେବାକୁ ପଡ଼ିଥିଲା । ଜୀର୍ଣ୍ଣ ଶୀର୍ଣ୍ଣ ଏହି ଯୁଦ୍ଧ ଜାହାଜଟି ସମ୍ମୁଖ ଯୁଦ୍ଧ ପାଇଁ ସମ୍ପୂର୍ଣ୍ଣ ଅନୁପଯୁକ୍ତ ଥିଲା । ସେହିଭଳି ଏକ ମୁମୁର୍ଷୁ ଜାହାଜକୁ ଆଗରେ ରଖି ପଛରେ ଗୋରା ସୈନ୍ୟଭରା 'ନରଫୋକ' 'ଗ୍ଲୋରି' ଏବଂ 'ଗ୍ଲୁଷ୍ଟର' ତିନିଗୋଟି ଯୁଦ୍ଧ ତରୀ ଇଟାଲୀ ଅଭିମୁଖେ ଭୂମଧ ସାଗରରେ ଯିବାବେଳେ ତାହା ଶତ୍ରୁପକ୍ଷ ଦ୍ୱାରା ଆକ୍ରାନ୍ତ ହୋଇଥିଲା । ସ୍ୱଭାବତଃ ଆଗରେ ଥିବା କଙ୍କାଳସାର ଖାଇବର ଜାହାଜ ଉପରେ ପଡ଼ିଲା ସେହି ଦୁର୍ଦ୍ଧର୍ଷ ଆକ୍ରମଣ ଏବଂ ଶତାଧିକ ଭାରତୀୟ ସୈନ୍ୟକୁଧରି 'ଖାଇବର' ଭୂମଧ ସାଗରର ଅତଳ ଗର୍ଭରେ ଲୀନ ହୋଇଥିଲା । ଏବଂ ଗୋରା ସୈନ୍ୟ ଥିବା ଅନ୍ୟ ତିନିଗୋଟି ଜାହାଜ ଉକ୍ତ ଆକ୍ରମଣରୁ ରକ୍ଷା ପାଇ ଯାଇଥିଲା ।

ଖାଇବର ଜାହାଜର ସେହି ନିମଜ୍ଜନ ସମ୍ବାଦ ବମ୍ବେର 'ଓ୍ୱାଟର ଫ୍ରଣ୍ଟ ଏରିଆ'ର ସୈନିକ କଲୋନୀରେ ଶୋକର ଲହରୀ ଖେଳାଇ ଦେଲା । କାରଣ ସେହି ଏରିଆରେ 'ଖାଇବର ନାବିକ'ଙ୍କର ଥିଲା ସରକାରୀ କ୍ୱାଟର୍‌ସ୍ ।

ବ୍ରିଟିଶ୍ ଶାସକମାନେ ଜାଣିଶୁଣି ଏହା କରିଛନ୍ତି ବୋଲି ନାବିକ ପରିବାରର ଥିଲା ଦୃଢ଼ ବିଶ୍ୱାସ । ଏହାକୁ କେନ୍ଦ୍ର କରି ସୈନିକ ଶିବିରରେ ଶୋକ ତଥା ଅସନ୍ତୋଷର ଗୁଞ୍ଜରଣ ବଢ଼ି ଚାଲିଥିବା ବେଳେ ହଠାତ୍ ଗୋଟାଏ ଭୟାବହ କାଣ୍ଡ ଘଟିଗଲା ।

୧୯୪୪ ମସିହାରେ ଭାରତୀୟ ନୌବାହିନୀରେ ବିଦ୍ରୋହ ସୃଷ୍ଟି ହେବାପାଇଁ ଅନୁକୂଳ ପରିସ୍ଥିତି ଥିଲା । ସାମାନ୍ୟ ସାମାନ୍ୟ ଘଟଣାରୁ ଭୟାବହ ଗଣ୍ଡଗୋଳ ହୋଇ ଯାଉଥିଲା । ୧୯୪୪ ଜାନୁୟାରୀ ୨୮ ତାରିଖ ବମ୍ବେର ଏସ୍. ଆର. ବାରାକ୍‌ସର ନୌବାହିନୀ ରେଟିଂ ବ୍ରିଜଲାଲ ତାଙ୍କର ପୋଷାକ ପୁରୁଣା ଓ ବ୍ୟବହାର ଅନୁପଯୋଗୀ ହୋଇଥିବାରୁ ନୂଆ ପୋଷାକ ଆଣିବାପାଇଁ ଷ୍ଟୋରରୁମକୁ ଯାଇଥିଲେ । ସୈନ୍ୟବାହିନୀର ନିୟମାନୁଯାୟୀ ପୁରୁଣା ପୋଷାକ୍ ଫେରାଇବା କଥା । ତାହା ଅତ୍ୟଧିକ ଛିଡ଼ି ଯାଇଥିବାରୁ ସେ ତାହାକୁ ପିନ୍ଧି ନପାରି ପୋଷାକକୁ କାନ୍ଧରେ ପକାଇ ଏକ ଅଣ୍ଡରଓୟାର ପିନ୍ଧି ଷ୍ଟୋର ରୁମକୁ ଯାଇଥିଲେ । ସେଭଳି ପରିଚ୍ଛଦକୁ ମିଲିଟାରୀ ଶୃଙ୍ଖଳାରେ 'ଅଶାଳୀନ' ବୋଲି ମନେ କରାଯାଇଥାଏ । କିନ୍ତୁ ସେଭଳି ଏକ ସ୍ପର୍ଶକାତର ବିଷୟଟିକୁ ସହଜଭାବରେ ଗ୍ରହଣ ନ କରି ଷ୍ଟୋର ଦାୟିତ୍ୱରେ ଥିବା ଗୋରା ଅଫିସର ଡେନହାମ୍ ରାଗି ନିଆଁ ହୋଇଗଲା ଏବଂ ସେହି ଔଦ୍ଧତ୍ୟ ପାଇଁ ଶିକ୍ଷା ଦେବାକୁ ବ୍ରିଜଲାଲଙ୍କୁ ବେଟେନ୍ ବା ଲାଠି ଚାର୍ଯ କରିବାକୁ ଅନ୍ୟ

ଏକ ରେଟିଂକୁ ନିର୍ଦ୍ଦେଶ ଦେଲା । ଭାରତୀୟ ରେଟିଂ ଗଫୁଲ ମୋଲ୍ଲା ଡେନହାମ୍‌ର ସେହି ଅନ୍ୟାୟ ଆଦେଶକୁ କାର୍ଯ୍ୟକାରୀ କରିବାକୁ ଅନିଚ୍ଛୁକ ହେଲା, ବ୍ରିଜ୍‌ଲାଲ ମଧ ବିବ୍ରତ ନହୋଇ ଧୀର ସ୍ଥିର ଭାବରେ ଡେନ୍‌ହାମ୍‌କୁ ବୁଝାଇବାକୁ ଚେଷ୍ଟାକଲେ ଯେ ତାଙ୍କର ପୋଷାକ ଦୁଇଟି ଛିଡ଼ି ଯାଇଥିବାରୁ ସେ ନିରୁପାୟ ହୋଇ ଅଣ୍ଡରଓୟାର ପିନ୍ଧି ଅଛନ୍ତି । କିନ୍ତୁ ଡେନ୍‌ହାମ୍ ବ୍ରିଜ୍‌ଲାଲଙ୍କର କୌଣସି କଥା ଶୁଣିବାକୁ ପ୍ରସ୍ତୁତ ନଥିଲା । ସେ ତାଙ୍କୁ 'ଫଲଇନ୍' ଆଦେଶ ଦେବାମାତ୍ରେ ବ୍ରିଜଲାଲ 'ଫଲଇନ୍'ପୋଜିସନ୍‌ରେ ରହି ଡେନ୍‌ହାମକୁ ତାଙ୍କର ଅସୁବିଧା କଥା ପୁନର୍ବାର କହିଲେ । କିନ୍ତୁ ଡେନ୍‌ହାମ୍ ପୁନର୍ବାର ଗଫୁର ମୋଲ୍ଲାକୁ ନିର୍ଦ୍ଦେଶ ଦେଲା କି ବ୍ରିଜଲାଲ୍‌ଙ୍କୁ ବ୍ୟାଟେନ୍ ଚାର୍ଯ କରିବାକୁ । ଗଫୁର ମୁଲ୍ଲା କିନ୍ତୁ ଅଟଳ ଅଟଳ । ସେ ଯେମିତି କାଠ ଭଳି ଛିଡ଼ା ହୋଇ ରହିଲା । ଡେନ୍‌ହାମ୍‌କୁ ସମ୍ଭାଳେ କିଏ ? ସେ ନିଜେ ବ୍ୟାଟେନ୍ ଧରି ଗଫୁର ଉପରେ କୁଦି ପଡ଼ିଲା ଏବଂ ଚାହୁଁ ଚାହୁଁ ଗଫୁରକୁ ତିନି ଚାରି ପାହାର ପିଟି ଦେଲା, ଏହା ବ୍ରଜଲାଲ ପକ୍ଷରେ ଥିଲା ଅସହ୍ୟ । ସେ ସଙ୍ଗେ ସଙ୍ଗେ ନିଜର 'ଫଲ୍‌ଇନ୍' ପୋଜିସନକୁ ଭାଙ୍ଗି ଦେଇ ଡେନ୍‌ହାମ୍ ଉପରେ ଚଢ଼ିଗଲା । ଗୋରା ଅଫିସର ଓ ଭାରତୀୟ ରେଟିଂ ତିନିଜଣଙ୍କ ମଧରେ ଗୋଟାଏ ଗିତିମତ ମଲ୍ଲଯୁଦ୍ଧ ଲାଗିଗଲା । ଗଣ୍ଡଗୋଳ ଓ ଧସ୍ତାଧସ୍ତି ଶବ୍ଦ ଶୁଣି ନିକଟସ୍ଥ ବାରାକରୁ ଆଉ କେତେଜଣ ଭାରତୀୟ ଓ ଗୋରା ଅଫିସର ସେଠାକୁ ଦୌଡ଼ି ଆସିଲେଏବଂ ବ୍ରିଜଲାଲ ଓ ଡେନ୍‌ହାମ୍‌କୁ ଛଡ଼ାଇବାକୁ ଚେଷ୍ଟାକଲେ । କିନ୍ତୁ, ସବୁ ବୃଥା ହେଲା, ତେଣୁ ଡାକରା ପଡ଼ିଲା କ୍ୟାପ୍‌ଟେନ୍ ଇନିଗୋଜୋନ୍‌ସକୁ । ସେ ପହଞ୍ଚିବା ସଙ୍ଗେ ସଙ୍ଗେ ପାଖ ବାରାକ୍‌ରେ ଥିବା ନେତୃସ୍ଥାନୀୟ ଭାରତୀୟ ରେଟିଂ ମାନେ ମଧ ସେଠାରେ ପହଞ୍ଚି ଗଲେ । ଇଂରେଜ ଅଫିସରଙ୍କ ସହ ବିଦ୍ରୋହୀ ରେଟିଂମାନଙ୍କର ସେହି ଅପ୍ରତ୍ୟାଶିତ ସଂଘର୍ଷ ଖବର ସେମାନଙ୍କୁ ବଡ଼ ବିବ୍ରତ କରିଦେଲା । କାରଣ ବ୍ୟାପକ ପ୍ରସ୍ତୁତି ଓ ପୂର୍ବ ସତର୍କତା ବିନା ସେହି ସଂଘର୍ଷ ଅତିଶୟ ଅବାଞ୍ଛନୀୟ ଥିଲା । ତେଣୁ ସେମାନେ ସେହି ସଂଘର୍ଷକୁ ଅଧିକ ନ ବଢ଼ାଇ ନିର୍ବାପିତ କରିବାକୁ ଚେଷ୍ଟା କରି ବିବ୍ରତ ଓ ଉତ୍ତେଜିତ ସିପାହୀମାନଙ୍କୁ ବୁଝାଇ ସୁଝାଇ ଓ ଭବିଷ୍ୟତ ବିଦ୍ରୋହ ବିଷୟରେ ସ୍ମରଣ କରାଇ ଦେଇ ବାରାକ୍‌ରୁ ଫେରାଇ ଦେଲେ । ଯାହା ହେଲେ ବି ବିଦ୍ରୋହୀ ନେତାମାନେ ବେଶ୍ ଉପଲବ୍‌ଧି କଲେ ଯେ ପ୍ରକାଶ୍ୟ ବିଦ୍ରୋହ ଘୋଷଣା କରିବାକୁ ପରିସ୍ଥିତି ପାଚି ଆସିଲାଣି ଏବଂ ବିଦ୍ରୋହୀ ରେଟିଂମାନେ ଚରମ ପରିଣତି ପାଇଁ ମାନସିକ ପ୍ରସ୍ତୁତ ହୋଇଗଲେଣି । ତଥାପି ଗିରଫ ହୋଇଥିବା ମୁଷ୍ଟିମେୟ ରେଟିଂ କେତେଜଣ ''କୋର୍ଟ ମାର୍ଶାଲ'' ରାୟକୁ ଧ୍ୟାନଦେ ଅପେକ୍ଷା କରି ରହିଲେ ।

ଅନ୍ୟମାନେ ଭବିଷ୍ୟତ ବିଦ୍ରୋହ ପାଇଁ ପ୍ରସ୍ତୁତ ହେଉଥିବା ବେଳେ ସରକାର ପକ୍ଷ ବାହାରକୁ ଗୁମ୍‌ସୁମ୍ ଦିଶୁଥିଲେ ବି ଭିତରେ ଭିତରେ ବିଦ୍ରୋହ ଦମନ ପାଇଁ ପ୍ରସ୍ତୁତି ଚଳାଇ ରଖିଲେ । ବିଦ୍ରୋହୀମାନଙ୍କ ଗୋପନ ସମ୍ବାଦ ସଂଗ୍ରହ କରିବା ପାଇଁ ସରକାର ବିଶ୍ୱପ୍ରସିଦ୍ଧ

ଗୋୟେନ୍ଦା ପୋଲିସ୍ ସ୍କଟଲ୍ୟାଣ୍ଡ ୟାର୍ଡ୍ ପୋଲିସକୁ କାମରେ ଲଗାଇଦେଲେ । ସେମାନେ ସୈନ୍ୟବାହିନୀର ବିଭିନ୍ନ ଅଫିସର ପୋଷାକ ପିନ୍ଧି ବୁଲା ବୁଲି କଲେ, ୧୯୪୪ ଫେବୃୟାରୀ ୮ ତାରିଖରେ ଖବର ଜଣାଗଲା ଯେ "ଉଇମେନ୍‌ସ ରୟାଲ ଇଣ୍ଡିଆନ ନାଭି" ସଂକ୍ଷେପରେ W.R.I.Nର ଦୁଇଜଣ ସେବିକା, ବଙ୍ଗଳାର ଅନୁଭା ସେନ୍ ଓ ମହାରାଷ୍ଟ୍ରର ଉର୍ମିଳା ବାଇ ଗିରଫ ହୋଇଛନ୍ତି । ସେହି ଦୁଇଜଣଙ୍କ ଶୟନ କକ୍ଷରୁ ବିଦ୍ରୋହ ସମ୍ପର୍କୀୟ କିଛି କାଗଜ ପତ୍ର ଏବଂ କେନ୍ଦ୍ରୀୟ କମିଟିର କିଛି ଚିଠିପତ୍ର ଜବତ କରାଯାଇଥିଲା । ବିଶେଷତଃ ପ୍ୟାରେଲେ ବସ୍ତିର ମହିଳା ସମିତି ସଭାନେତ୍ରୀ ଶ୍ରୀମତୀ କମଳା ପାଣ୍ଡେଙ୍କର କେତେକ ଆପତ୍ତି ଜନକ ଚିଠି ଅନୁଭାଙ୍କ ନିକଟରୁ ଧରା ହୋଇଥିଲା ବୋଲି ଅଭିଯୋଗ ହୋଇଥିଲା । ଅନୁଭା ଉର୍ମିଳାଙ୍କ ଅପ୍ରତ୍ୟାଶିତ ଗିରଫଦାରୀରେ ସମସ୍ତେ ବିସ୍ମିତ ହୋଇଥିଲେ ମଧ ‌କେହି ଭାଙ୍ଗି ପଡ଼ି ନଥିଲେ । ବରଂ ଭିତରେ ଅତିଶୟ ଗୋପନୀୟତା ଓ ସତର୍କତା ସହକାରେ ଆଗାମୀ ବିଦ୍ରୋହ ପାଇଁ ମଧ ପ୍ରସ୍ତୁତି ଚାଲିଲା । ଫେବୃୟାରୀ ୯ ତାରିଖ ରାତିରେ 'ତଲୱାର' ନାମକ ଜାହାଜରେ ଆକସନ୍ କମିଟିର ବୈଠକ ବସିଥିଲା । ସେହି ବୈଠକରେ ସଭାପତି ମଦନଲାଲ ସାକସେନା ସଭ୍ୟ ଶେଖ ସାହାବତ ଅଲ୍ଲୀ ଓ ବି.ପି. ଧର ପ୍ରଭୃତି ନେତୃ ସ୍ଥାନୀୟ ବ୍ୟକ୍ତିମାନେ ପ୍ରସ୍ତାବିତ ବିଦ୍ରୋହ ସମ୍ପର୍କରେ ପୁଙ୍ଖାନୁପୁଙ୍ଖ ଆଲୋଚନା କରିଥିଲେ, ବ୍ରିଜଲାଲ ଓ ଡେନହାମଙ୍କ ସଂଘର୍ଷରେ ଗଫୁର ମୋଲ୍ଲାଙ୍କ ଭୂମିକାକୁ ସମସ୍ତେ ଭୂୟସୀ ପ୍ରଶଂସା କରିଥିଲେ ।

ସେନା ବିଦ୍ରୋହରେ ହିନ୍ଦୁ ମୁସଲମାନଙ୍କ ମଧରେ ନିବିଡ଼ ଭାତୃତ୍ୱର ଯେଉଁ ଉଜ୍ଜ୍ୱଳ ଦୃଷ୍ଟାନ୍ତର ପରିଚୟ ମିଳିଥିଲା, ତାହା ସମସ୍ତଙ୍କୁ ମୁଗ୍ଧ କରିଥିଲା । ଅନୁଭା-ଉର୍ମିଳାଙ୍କ ଉପରେ ହେଉଥିବା ଅକଥ୍ୟ ଅତ୍ୟାଚାର ସତ୍ତ୍ୱେ ସେମାନଙ୍କର ଅନମନୀୟ ଦୃଢ଼ତା ସମସ୍ତଙ୍କୁ ବିଶେଷ ଉତ୍ସାହିତ କରିଥିଲା । ବିଦ୍ରୋହର ଚରମ ପର୍ଯ୍ୟାୟରେ ମୁଲନ୍ଦ ବନ୍ଦୀ ଶିବିର (ବମ୍ବେ)କୁ ଦଖଲ କରି ସେହି ବିରାଙ୍ଗନା ଦ୍ୱୟଙ୍କୁ ମୁକ୍ତ କରିବାକୁ ମଧ ବୈଠକରେ ସିଦ୍ଧାନ୍ତ ନିଆଯାଇଥିଲା । ଆକ୍‌ସନ୍ କମିଟି ଆଶା କରୁଥିଲା ଯେ ସରକାରୀ ପକ୍ଷ ବଡ଼ଲାଟ୍ ଲର୍ଡ ଓ୍ୟାଭେଲଙ୍କ ନେତୃତ୍ୱରେ ଜାତୀୟ ନେତୃବୃନ୍ଦଙ୍କର ଯେଉଁ ଆଲୋଚନା ସେତେବେଳେ ଚାଲିଥିଲା ତାହା ଜନଗଣଙ୍କ ମଧରେ ଏକ ମିଥ୍ୟାମୋହ ସୃଷ୍ଟି କରୁଅଛି ବୋଲି ବିଦ୍ରୋହୀ ସୈନ୍ୟମାନେ ମନେ କରୁଥିଲେ । ବିଦ୍ରୋହ ଆରମ୍ଭ ହେଲେ ଜନଗଣ ସେହି ମୋହ ଜାଲରୁ ମୁକ୍ତ ହୋଇ ସଶସ୍ତ୍ର ସଂଗ୍ରାମରେ ଲମ୍ଫ ପ୍ରଦାନ କରିବେ ବୋଲି ସେମାନେ ଦୃଢ଼ ଆଶା ପୋଷଣ କରିଥିଲେ ।

ପୂର୍ବରୁ ଆକ୍‌ସନ୍ କମିଟି ବିଦ୍ରୋହ ଆରମ୍ଭ କରିବା ପାଇଁ ଫେବୃୟାରୀ ୧୮ ତାରିଖକୁ ଧାର୍ଯ୍ୟ କରିଥିଲେ, କିନ୍ତୁ ଏକ ଅପ୍ରତ୍ୟାଶିତ କାରଣରୁ ତାରିଖକୁ ଆଉ ଏକ ସପ୍ତାହ ପଛାଇ ଆଣିଥିଲେ ଅର୍ଥାତ୍ ଫେବୃୟାରୀ ଏଗାର ତାରିଖରେ ବିଦ୍ରୋହ ଆରମ୍ଭ କରାଯିବ ବୋଲି ସ୍ଥିର ହେଲା । କାରଣ ଏହାର ବର୍ଷକ ତଳେ ଭୂମଧ ସାଗର ଗର୍ଭରେ 'ଖାଇବର' ଜାହାଜର ନିମଜ୍ଜନ ଏବଂ ସେଥି ସହ ଶହ ଶହ ଭାରତୀୟ ସୈନ୍ୟଙ୍କର ମୃତ୍ୟୁର ପରିପ୍ରେକ୍ଷୀରେ ଏକ

ନୂତନ ପରିସ୍ଥିତି ସୃଷ୍ଟି ହୋଇଥିଲା । ଫେବୃୟାରୀ ୮ ତାରିଖ ଅନୁଭା-ଉର୍ମିଳାଙ୍କ ଗିରଫଦାରୀ ଏବଂ ବ୍ରିଜଲାଲ ଡେନ୍‌ହାମ୍ ସଂଘର୍ଷରେ କେତେକ ସନ୍ଦିଗ୍ଧ ବିଦ୍ରୋହୀ ବନ୍ଦୀ ହେବା ଘଟଣା ପରେ ସରକାର ଅନ୍ୟାନ୍ୟ ସନ୍ଦିଗ୍ଧ ବିଦ୍ରୋହୀଙ୍କୁ ମୂଳପୋଛ କରିବା ପାଇଁ କୃତ ସଂକଳ୍ପ ହୋଇଥିବା ଜନରବ କ୍ରମେ ଘନୀଭୂତ ହୋଇଥିଲା । ସୁତରାଂ ଉତ୍ତରଆଫ୍ରିକାର ରଣାଙ୍ଗନରେ ଯୋଗ ଦେବାକୁ ପାଞ୍ଚଗୋଟି ଯୁଦ୍ଧ ଜାହାଜରେ ଭାରତୀୟ ସୈନ୍ୟମାନଙ୍କୁ ନେବାପାଇଁ ହୋଇଥିବା ସରକାରୀ ନିଷ୍ପତ୍ତିକୁ ବିଦ୍ରୋହୀମାନେ ସରକାରର ସେହି 'ହୀନ ଷଡ଼ଯନ୍ତ୍ର' ବୋଲି ମନେ କରିବା ଅତିଶୟ ସ୍ୱାଭାବିକ ଥିଲା । ସ୍ପଷ୍ଟ ବୁଝା ପଡୁଥିଲା ଯେ ସନ୍ଦିଗ୍ଧ ଓ ବିପଦ୍ଜନକ ସୈନ୍ୟମାନଙ୍କୁ ସମୁଦ୍ର ଗର୍ଭରେ ନିକ୍ଷେପ କରିବା ପାଇଁ ତାହା ଥିଲା ଏକ କୌଶଳ ମାତ୍ର । ଆକ୍‌ସନ୍ କମିଟି ସରକାରର ସେ ଷଡ଼ଯନ୍ତ୍ର ଜାଲରେ ପଡ଼ିବାକୁ ଆଦୌ ପ୍ରସ୍ତୁତ ନଥିଲେ । ଯେଉଁ ଏଗାର ତାରିଖରେ ଜାହାଜ ପାଞ୍ଚ ଗୋଟି ଆଫ୍ରିକା ରଣାଙ୍ଗନ ଉଦ୍ଦେଶ୍ୟରେ ଯାତ୍ରାରମ୍ଭ କରିବାକୁ ସରକାର ସ୍ଥିର କରିଥିଲେ ସେହିଦିନ ସକାଳୁ ବିଦ୍ରୋହ ଆରମ୍ଭ କରିବାକୁ ନିଷ୍ପତ୍ତି ନିଆଗଲା । ବିଦ୍ରୋହର ବିସ୍ତୃତ କାର୍ଯ୍ୟକ୍ରମକୁ ବିଶ୍ଳେଷଣ କଲେ ବୁଝାଯାଏ ଯେ ଭାରତୀୟ ସେନ୍ୟମାନଙ୍କର ଦୈନନ୍ଦିନ ଅଭାବ ଅସୁବିଧାର ପ୍ରତିକାର ପାଇଁ ବିଦ୍ରୋହ ଆରମ୍ଭ ହୋଇ ''ବ୍ରିଟିଶ୍ ଭାରତ ଛାଡ଼'' ଦାବିରେ ଚୂଡ଼ାନ୍ତ ରୂପ ଗ୍ରହଣ କରାଯିବ ବୋଲି ମୂଳରୁ ଯେଉଁ ନୀତି ସ୍ଥିର ହୋଇଥିଲା ''ଆକ୍‌ସନ୍ କମିଟି'' ସେହି ନୀତି ପ୍ରତି ସେମାନଙ୍କ ବିଶ୍ୱାସକୁ ପୁନର୍ବାର ବ୍ୟକ୍ତ କରିଥିଲେ । ଏକେତ ଭାରତୀୟ ସୈନ୍ୟମାନଙ୍କ ସମସ୍ୟା ଏଭଳି ଉତ୍କଟ ଥିଲା ଯେ ତାହାର ସମାଧାନ ପାଇଁ 'ଖାନାବନ୍ଦ' ହେଉଥିବା ସଂଗ୍ରାମରେ ସମସ୍ତଙ୍କୁ ଏକଜୁଟ କରିବା ଅପେକ୍ଷାକୃତ ଅଧିକ ସହଜ ଥିଲା; ଗଭୀର ଭାବରେ ବିଚାର କରି ଏହା ମଧ୍ୟ ସମସ୍ତେ ଉପଲବ୍‌ଧି କରୁଥିଲେ ଯେ ସେମାନଙ୍କର ସମସ୍ତ ସମସ୍ୟା ସମାଧାନର ମୂଳ ଚାବି କାଠି ହେଉଛି ଭାରତର ସ୍ୱାଧୀନତା । ସେହି ସ୍ୱାଧୀନତା ସଂଗ୍ରାମରେ ସେମାନଙ୍କୁ ଝାସ ଦେବାକୁ ପଡ଼ିବ କୋଟି କୋଟି ଜନଗଣଙ୍କ ସହିତ । ଚରମ ଯୁଦ୍ଧରେ ସେନାବାହିନୀ ଓ ଜନଗଣ ଏକାକାର ନହେଲେ ଏହା ଯେ କଦାପି ସଫଳ ହୋଇ ପାରିବ ନାହିଁ ଏହା ବିଦ୍ରୋହୀ ନୌ-ସେନାମାନେ ମର୍ମେ ମର୍ମେ ଅନୁଭବ କରିଥିଲେ ।

ସାକ୍‌ସେନା କହିଲେ ସୈନ୍ୟବାହିନୀର ଅନ୍ୟାନ୍ୟ ଶାଖା ଯଥା- ପଦାତିକ ବାହିନୀ ଓ ବିମାନ ବାହିନୀରେ ଗଠିତ ଆକ୍‌ସନ୍ କମିଟିମାନଙ୍କୁ ଫେବୃୟାରୀ ୧୧ ତାରିଖ ସିଦ୍ଧାନ୍ତକୁ ମଧ୍ୟ ରାତ୍ରୀ ମଧ୍ୟରେ ଜଣାଇ ଦେବାକୁ ହେବ, ତାହାହିଁ କରାଯାଇଥିଲା ।

ପର୍ଯ୍ୟାୟକ୍ରମେ 'ବିଦ୍ରୋହ' ପରିଚାଳନା ଓ ଏହି ବିଦ୍ରୋହକୁ କ୍ରମେ ଜନ ବିପ୍ଳବରେ ପରିଣତ କରିବାକୁ ମୋଟା ମୋଟି ସ୍ଥିର ହୋଇଥିଲା ଯେ ୧୧ ତାରିଖ ସକାଳୁ ପ୍ରଥମେ ପ୍ରାତଃରାସ ବା ସକାଳ ଚା ଜଳଖିଆ ଖାଇବା ବନ୍ଦ କରାଯିବ, ଯେହେତୁ ଖାଇବା ବନ୍ଦ ହେବା ମାନେ କାମ କରିବା ମଧ୍ୟ ବନ୍ଦ ହେବ । ସ୍ଲୋଗାନ୍ ହେବ ''ନୋ ଫୁଡ୍ ନୋ ୱାର୍କ'' ।

ମଧ୍ୟାହ୍ନ ବେଳକୁ ସେହି ସ୍ଲୋଗାନ୍ ରାଜନୈତିକ ସ୍ଲୋଗାନରେ ପରିଣତ ହେବ ଏବଂ ଷ୍ଟୋର ରୁମ ଭଙ୍ଗା ହୋଇ ଅସ୍ତ୍ରଶସ୍ତ୍ର ବିଦ୍ରୋହୀ ସୈନ୍ୟମାନଙ୍କର ହାତରେ ଧରାଇ ଦେବାକୁ ପଡ଼ିବ । ପରେ ପରେ ଅଧିକ ଅସ୍ତ୍ରଶସ୍ତ୍ର ଆବଶ୍ୟକ ହେଲେ ଜାହାଜ ଓ ତଟବର୍ତ୍ତୀ ସ୍ଥାନରେ ଥିବା ମ୍ୟାଗାଜିନ ବା ଅସ୍ତ୍ରଭଣ୍ଡାରକୁ ଲୁଟ୍ କରି ତାହା ସବୁ ବିଦ୍ରୋହୀ ସୈନ୍ୟ ଏବଂ ବିଦ୍ରୋହର ସମର୍ଥକ ଜନଗଣଙ୍କ ହାତରେ ଦେଇ ଦେବାକୁ ହେବ । ଗୋରା ସୈନ୍ୟମାନଙ୍କ ସହ ବିଦ୍ରୋହୀ ସୈନ୍ୟମାନଙ୍କ ସଂଘର୍ଷ ଯେତେ ତୀବ୍ର ହେବ ବିଦ୍ରୋହ ମଧ୍ୟ ହେବ ସେହି ଅନୁପାତରେ ବ୍ୟାପକ ଓ ତୀବ୍ର ଏବଂ ଯୋଜନା ଅନୁସାରେ ଯଦି ପଦାତିକ ଓ ଆକାଶ ବାହିନୀରେ ମଧ୍ୟ ଏକ ସଙ୍ଗେ ବିଦ୍ରୋହ ଆରମ୍ଭ ହୁଏ ତେବେ ସାରା ଦେଶରେ ଚାଲିଥିବା ବିକ୍ଷିପ୍ତ ଜନ ଆନ୍ଦୋଳନର ଏକ ତୁମୂଳ ଗୁଣାତ୍ମକ ପରିବର୍ତ୍ତନ ହେବ- ଏଥିରେ କାହାରି ସାମାନ୍ୟ ସନ୍ଦେହ ମଧ୍ୟ ନଥିଲା ।

ବିଦ୍ରୋହର ପ୍ରଥମ ଅବସ୍ଥାରେ ସରକାରୀ ପକ୍ଷ ବିଦ୍ରୋହୀ ସୈନ୍ୟମାନଙ୍କ ସମ୍ମୁଖରେ ଥିବା ବିଭିନ୍ନ ରାଜନୈତିକ ଦାବୀ ସମ୍ପର୍କରେ କୌଣସି ସୂଚନା ଯେପରି ନପାଆନ୍ତି ସେଥିପାଇଁ ଅରାଜନୈତିକ ଦାବି ଗୁଡ଼ିକର ଏକ ଖସଡ଼ା ମଧ୍ୟ ପ୍ରସ୍ତୁତ ହୋଇଥିଲା । ସେଗୁଡ଼ିକ ଏହି ଭଳି ଥିଲା-

୧. ଭାରତୀୟ ସୈନ୍ୟମାନଙ୍କୁ ବ୍ରିଟିଶ୍ ସୈନ୍ୟମାନଙ୍କ ଭଳି ଭଲ ଖାଦ୍ୟ ଦେବାକୁ ହେବ ।

୨. ବ୍ରିଟିଶ୍ ସୈନ୍ୟଙ୍କ ଭଳି ଭଲ ପୋଷାକ ଦେବାକୁ ହେବ ।

୩. ପ୍ରତିମାସ ଦୁଇ ତାରିଖ ଭିତରେ ଭାରତୀୟ ସୈନ୍ୟମାନଙ୍କ ପରିବାରକୁ ବେତନ ପଠାଇ ଦେବାକୁ ହେବ ।

୪. ଭାରତୀୟ ସୈନ୍ୟମାନଙ୍କ ପ୍ରତି ପକ୍ଷପାତ ମୂଳକ ବା ବୈଷମ୍ୟ ମୂଳକ ବ୍ୟବହାର ବନ୍ଦ କରିବାକୁ ହେବ ।

୫. ଯେଉଁ ମହିଳା କର୍ମଚାରୀ ଦୁଇଜଣଙ୍କୁ ଗିରଫ କରାଯାଇଛି ସେମାନଙ୍କୁ ମୁକ୍ତ କରିବାକୁ ହେବ ।

୬. ସୈନ୍ୟବାହିନୀକୁ ସର୍ବବିଧ ସୁବିଧା ସୁଯୋଗ ଯୋଗାଇବାକୁ ହେବ ।

ଦଶ ଫେବୃୟାରୀ ସାରା ରାତି ଘୋର ଉଦ୍‌ବେଗ ଉତ୍କର୍ଣ୍ଠା ଓ ଉତ୍ତେଜନା ଭିତରେ ବହୁ ଇପ୍‌ସିତ ୧୧ ତାରିଖ ସକାଳ ପହଞ୍ଚିଗଲା......

ଫେବୃୟାରୀ ୧୧ ତାରିଖରେ ସକାଳ ଚା'ଖିଆ ବନ୍ଦରୁ ବିଦ୍ରୋହ ଆରମ୍ଭ ହେଲା । ଚା' ଜଳଖିଆ ନଷ୍ଟ ହେଲା । ମଧ୍ୟାହ୍ନ ଭୋଜନର ଅବସ୍ଥା ମଧ୍ୟ ସେୟା । ଚତୁର୍ଦ୍ଦିଗରେ ପୁଞ୍ଜିଭୂତ କ୍ରୋଧର ଗୁଞ୍ଜରଣ । ଗୋରା ସୈନ୍ୟମାନଙ୍କୁ ଦେଖିବାମାତ୍ରେ ବିଦ୍ରୋହୀମାନଙ୍କର ଥଟ୍ଟା ତାମସା, କମେଣ୍ଟ ମାରିବା ଚାଲିଲା ନିରବଚ୍ଛିନ୍ନ ଭାବରେ । ପ୍ରଥମ ଅବସ୍ଥାରେ ଗୋରା ସୈନ୍ୟମାନେ ଏଭଳି ଅପ୍ରତ୍ୟାଶିତ ଅସନ୍ତୋଷକୁ କିଭଳି ଭାବରେ ସମ୍ମୁଖୀନ ହେବେ ସ୍ଥିର

କରି ନପାରି ନିଜ ନିଜ ବ୍ୟାରାକ୍‌ରେ ଆତ୍ମ ଗୋପନ କରିବାକୁ ଲାଗିଲେ । ଏଥିରେ ବିଦ୍ରୋହୀମାନେ ଅଧିକ ଉତ୍ସାହ ବୋଧ କଲେ । ପୁଣି ଖବର ମିଳିଲା ଯେ ପୂର୍ବରୁ ଗିରଫ ହୋଇଥିବା 'ଓମ୍ୟାନ୍ ଉଇଙ୍ଗ' ନର୍ସ ଦୁଇଜଣ ଅନୁରା ଓ ଉର୍ମିଳାଙ୍କ ଉପରେ ହୋଇଛି ଅକଥ୍ୟ ଅତ୍ୟାଚାର । ଉତ୍ସାହ କ୍ରମେ କ୍ରୋଧରେ ପରିଣତ ହେଲା । ଖବର ମିଳିଲା ବିଦ୍ରୋହୀ ଏମ୍.ଆର. ବାରାକ୍‌ସରେ ଗୁଳି ଚାଳନା ହୋଇଛି । ଗୁଞ୍ଜରଣ ବିସ୍ଫୋରଣରେ ପରିଣତ ହେଲା । ବିଦ୍ରୋହୀମାନେ ନିଜ ନିଜ ବାରାକସ୍ ଛାଡ଼ି ଏମ. ଆର. ବାରାକ୍‌ସ ଆଡ଼କୁ ଦୌଡ଼ିଲେ । ସ୍ଲୋଗାନ୍ ହେଲା "ଇଂରେଜ ଭାରତ ଛାଡ଼" । ଉକ୍ତ ବାରାକସ୍‌ରେ ଥିବା କ୍ଷୁଦ୍ର ମ୍ୟାଗାଜିନ (ଅସ୍ତ୍ର ଭଣ୍ଡାର) ଲୁଟ ହେଲା । ପ୍ରଥମ ଗେଟ୍‌ରେ ଥିବା ପହରାରତ ଭାରତୀୟ ସିପାହୀମାନେ ସେମାନଙ୍କୁ ଭିତରକୁ ବାଟ ଛାଡ଼ି ଦେଲେ । ଭିତର ଗେଟ୍‌ରେ ଥିବା ଗୋରା ସିପାହୀ ଦୁଇଜଣଙ୍କୁ ହତ୍ୟା କରିଦେବା ପରେ ମାଗ୍ୟାଜିନ୍‌ଟି ବିଦ୍ରୋହୀମାନଙ୍କ ଦଖଲକୁ ଆସିଗଲା । ମହା ଆନନ୍ଦରେ ସମସ୍ତ ବନ୍ଧୁକ ଓ ଗୁଳି ଗୋଳା ଧରି ସେମାନେ ଗୋରା ସୈନ୍ୟମାନଙ୍କର ସମ୍ମୁଖୀନ ହେଲେ । ଏକ ଖଣ୍ଡ ଯୁଦ୍ଧ ଲାଗିଗଲା । ବିଦ୍ରୋହୀମାନେ ଏଭଳି ଖୋଲାଖୋଲି ଯୁଦ୍ଧ କରିବେ ବୋଲି ଗୋରାମାନଙ୍କ ପକ୍ଷରେ ଥିଲା ସମ୍ପୂର୍ଣ୍ଣ ଅପ୍ରତ୍ୟାଶିତ । କାରଣ କମାଣ୍ଡର ଇନିଗୋଜୋନ୍‌ସର ଧାରଣା ଥିଲା ଯେ ବିଦ୍ରୋହର ପ୍ରଧାନ କେନ୍ଦ୍ର ଏମ.ଆର.ବାରାକସ୍ ଉପରେ ଆକ୍ରମଣ ହେଲେ ବିଦ୍ରୋହୀମାନେ ହୁଏତ ଆତ୍ମ ସମର୍ପଣ କରିଦେବେ । ସୁତରାଂ ବିଦ୍ରୋହୀମାନଙ୍କର ସେହି ସମ୍ମୁଖ ଯୁଦ୍ଧରେ ସେମାନେ ସ୍ତମ୍ଭୀତ ହୋଇଯିବା ଅତ୍ୟନ୍ତ ସ୍ୱାଭାବିକ ଥିଲା । ତେଣୁ କମାଣ୍ଡରମାନେ ସ୍ଥିର କଲେ, ଅନ୍ୟତମ ବିଦ୍ରୋହ କେନ୍ଦ୍ର କ୍ୟାସେଲ ବ୍ୟାରକ୍ସ ଉପରେ ଚଢ଼ାଉ କଲେ ବିଦ୍ରୋହର ତୀବ୍ରତା ହୁଏତ ଭଣା ପଡ଼ିଯିବ । କ୍ୟାସେଲ ବ୍ୟାରାକ୍ ଉପରେ ଆକ୍ରମଣ ହେବା ସଙ୍ଗେ ସଙ୍ଗେ ବିଦ୍ରୋହୀ ରେଟିଂମାନେ ଖବର ଦେଲେ ବିଦ୍ରୋହୀ 'ତଲୱାର' ଜାହାଜକୁ । ସେଠାରୁ ସମୁଦ୍ର ଭିତରେ ଲଙ୍ଗର କରିଥିବା ଅନ୍ୟାନ୍ୟ ଯୁଦ୍ଧ ଜାହାଜଗୁଡ଼ିକୁ ମଧ୍ୟ ସଙ୍ଗେ ସଙ୍ଗେ ଖବର ଚାଲିଗଲା ।

ବିଦ୍ରୋହୀ ଜାହାଜ ଗୁଡ଼ିକରୁ ଭାସି ଆସିଲା ଲାଉଡ୍ ସ୍ପିକରରେ ଆଗ୍ନେୟ ଆହ୍ୱାନ । ବମ୍ବେଉପକୂଳସ୍ଥ ଜନସାଧାରଣଙ୍କ ଉଦ୍ଦେଶ୍ୟରେ - "ଭାଇମାନେ ଏ ବିଦ୍ରୋହ ଆମ ନିଜ ସ୍ୱାର୍ଥରେ ନୁହେଁ । ଏହା ଆରମ୍ଭ ହୋଇଛି ଦେଶର ସ୍ୱାର୍ଥରେ, ଦେଶର ମୁକ୍ତି ପାଇଁ, ବିଦେଶୀ ଶାସନର ମୂଳୋତ୍ପାଟନ ପାଇଁ, ଶୈତାନ ଗୋରା ସୈନ୍ୟମାନେ ଏନ.ଆର. ବ୍ୟାରକ୍‌ସ୍ ଓ କ୍ୟାସେଲ ବ୍ୟାରାକ୍‌ସରେ ଗୁଳି ଚଳାଇ ବହୁ ଭାରତୀୟ ସୈନ୍ୟଙ୍କୁ ମୃତାହତ କରି ସାରିଲେଣି । ଜନସାଧାରଣ କଣ ଚୁପ୍ ହୋଇ ବସି ରହିବେ, ଭାରତମାତାର ଏହି ଦୁର୍ଦ୍ଧର୍ଷ ସନ୍ତାନମାନଙ୍କ ଆତ୍ମଦାନରେ" ?

ଠିକ୍ ସେହି ସମୟରେ ଆଫ୍ରିକାର ରଣାଙ୍ଗନ ଉଦ୍ଦେଶ୍ୟରେ ପ୍ରସ୍ତୁତ ହୋଇ ରହିଥିବା ପାଞ୍ଚଟି ଯାକ ଯୁଦ୍ଧ ଜାହାଜରେ ହଠାତ୍ ଏକସଙ୍ଗେ ବିସ୍ଫୋରଣ ହୋଇ ସେ ଗୁଡ଼ିକରେ ନିଆଁ

ଲାଗିଗଲା । କ୍ୟାସେଲ ବାରାକ୍‌ରେ ମଧ୍ୟ ଯୁଦ୍ଧ ଚାଲିଥାଏ ଜୋର୍‌ସୋର୍‌ରେ । ବିଦ୍ରୋହୀ ତଲୱାର ଯୁଦ୍ଧ ଜାହାଜରେ ବେତାର ଖବର ପହଞ୍ଚିଲା ଯେ କରାଚୀ ବନ୍ଦରରେ ଥିବା ନୌଘାଟୀରେ ମଧ୍ୟ ଭାରତୀୟ ସୈନ୍ୟମାନେ 'ଖାନାବନ୍ଦ' କରିଦେଇ ବିଦ୍ରୋହରେ ଯୋଗ ଦେଇ ଅଛନ୍ତି । ସେଠାରେ ମଧ୍ୟ ଗୋରା ସୈନ୍ୟମାନଙ୍କ ସହ ବିଦ୍ରୋହୀମାନଙ୍କର ସଶସ୍ତ୍ର ଯୁଦ୍ଧ ଆରମ୍ଭ ହୋଇଯାଇଛି । କରାଚୀରେ ଅବସ୍ଥାପିତ ସୈନ୍ୟବାହିନୀରେ ମଧ୍ୟ ବ୍ୟାପକ ବିଦ୍ରୋହ ।

ବମ୍ବେ ଅବସ୍ଥା ଆହୁରି ଖରାପ । ତୀବ୍ର ସଂଘର୍ଷ କମିଗଲା ପରେ ଦେଖାଗଲା ଯେ ଏଥିରେ ମୃତ୍ୟୁ ବରଣ କରିଛନ୍ତି ୩୫ ଜଣ ଗୋରା ସୈନ୍ୟ ଓ ଆହତ ହୋଇଛନ୍ତି ତିନିଶହ । କିନ୍ତୁ ବିଦ୍ରୋହୀ ସୈନ୍ୟଙ୍କ ମୃତାହତ ସଂଖ୍ୟା କେତେ ? ଆହତ ଦୁଇଶହ ପଚିଶ ଓ ମୃତ ମାତ୍ର ଏଗାର ଜଣ । ବିସ୍ମୟ ଜନକ ହେଲେ ବି ସତ୍ୟ । କିନ୍ତୁ ସବୁଆଡ଼େ ନିସ୍ତବ୍ଧତାର ରାଜତ୍ୱ । କାରଣ ଇଂରେଜ ସୈନ୍ୟ ସମସ୍ତେ ଅନ୍ତର୍ଦ୍ଧାନ । ମୃତାହତ ବିଦ୍ରୋହୀ ସୈନ୍ୟମାନଙ୍କୁ ବୋହି ନିଆଗଲା ବ୍ୟାରାକ୍ ଭିତରକୁ ଚିହ୍ନଟ କରିବା ପାଇଁ । ବ୍ୟାରେକ୍ ଭିତରେ ସମସ୍ତେ ନତଜାନୁ ହୋଇ ଜଣାଇଲେ ସଶ୍ରଦ୍ଧ ସମ୍ମାନ ଶହୀଦମାନଙ୍କ ଉଦ୍ଦେଶ୍ୟରେ । ପୁନର୍ବାର ପ୍ରତିଜ୍ଞାବଦ୍ଧ ହେଲେ ସମବେତ ବିଦ୍ରୋହୀ ସିପାହୀଗଣ ''ଦେଶ ଜନନୀର ଶୃଙ୍ଖଳ ମୋଚନ କରି ପରାଧୀନତାର ଅଭିଶାପରୁ ତାହାକୁ ମୁକ୍ତ କରିବା ପାଇଁ ଶେଷ ରକ୍ତ ବିନ୍ଦୁ ସମର୍ପଣ କରିବାକୁ ଶପଥ କରୁଅଛୁଁ । ହେ ବିପ୍ଳବୀ କମ୍ରେଡ଼ ଶହିଦ ଗଣ, ଇନ୍‌କ୍ୱିଲାବ୍ ଜିନ୍ଦାବାଦ୍ ।'' ବିଜୟର ଆନନ୍ଦ ଓ ସାଫଲ୍ୟର ଉଲ୍ଲାସରେ ମୁହ୍ୟମାନ ସମସ୍ତେ ।

କିନ୍ତୁ ସରକାର ପକ୍ଷର ନୀରବତାର ରହସ୍ୟ ଭେଦ କରିବାକୁ ଅଧିକ ସମୟ ଅପେକ୍ଷା କରିବାକୁ ପଡ଼ିଲା ନାହିଁ ବିଦ୍ରୋହୀମାନଙ୍କୁ । ନେତୃସ୍ଥାନୀୟ ସୈନ୍ୟମାନେ ଏକତ୍ରିତ ହୋଇ ଭବିଷ୍ୟତ କର୍ମପନ୍ଥା ଓ ତୀବ୍ରତର ଆକ୍ରମଣର ସମ୍ମୁଖୀନ ହେବାର ଟିକିନିଖି ପ୍ରସ୍ତୁତି ଆରମ୍ଭ କରିଦେଲେ । ସ୍ଥିର ହେଲା ସମୁଦ୍ରତୀରରେ ଅବସ୍ଥିତ ଓ ଜାହାଜ ଭିତରେ ଥିବା ଅସ୍ତ୍ରଭଣ୍ଡାର (ମ୍ୟାଗାଜିନ) ଲୁଟ କରି ସମସ୍ତ ବିଦ୍ରୋହୀଙ୍କ ମଧ୍ୟରେ ପୂର୍ବରୁ ବାଣ୍ଟି ନ ଦେଲେ ଆସନ୍ନ ଯୁଦ୍ଧର ସମ୍ମୁଖୀନ ହେବା କଷ୍ଟ ସାଧ୍ୟ ହୋଇ ପଡ଼ିବ । ଅସ୍ତ୍ରାଭାବ ହିଁ ପ୍ରଥମ ବିଦ୍ରୋହର ସୀମିତ ସାଫଲ୍ୟର ମୂଳ କାରଣ ବୋଲି ନେତାମାନେ ସର୍ବସମ୍ମତ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ।

କିନ୍ତୁ ଶତ୍ରୁପକ୍ଷର ରଣ କୌଶଳ ଥିଲା ସମ୍ପୂର୍ଣ୍ଣ ବିପରିତ, ବମ୍ବେ ନୌବାହିନୀର ସର୍ବୋଚ୍ଚ କର୍ତ୍ତା ରିଅର ଆଡମିରାଲ ର୍‌ୟାଟେଟ୍ରେ ବିଦ୍ରୋହ ସମ୍ବାଦ ଏବଂ ସେଥିରେ ବିଦ୍ରୋହୀମାନଙ୍କର ପ୍ରାଥମିକ ବିଜୟ ସମ୍ବାଦରେ ବିବ୍ରତ ନ ହୋଇ ଶାନ୍ତ ଏବଂ ଧୀର ଚିତ୍ତରେ ନୂତନ ଯୋଜନା କରିସାରିଥିଲା । ବିକ୍ଷୁବ୍ଧ ରେଟିଂ ମାନଙ୍କୁ ଶାନ୍ତ କରିବା ପାଇଁ କ୍ୟାପ୍‌ଟେନ୍ ଇନିଗୋଜୋନ୍‌ସ ପରିବର୍ତ୍ତେ କ୍ୟାପ୍‌ଟେନ୍ କିଙ୍ଗ୍‌କୁ ଅବସ୍ଥାପିତ କରିବା ଥିଲା ର୍‌ୟାଟେଟ୍ରେର ସର୍ବ ପ୍ରଥମ କୌଶଳ ।

ଏହି କୂଟନୈତିକ କୌଶଳ ପ୍ରୟୋଗ କରି ସେ ଦେଖାଇ ଦେବାକୁ ଚାହୁଁଥିଲା ଯେ କ୍ୟାପ୍ଟେନ୍ ଇନ୍‌ଗୋ ପ୍ରଥମେ ସତର୍କ ନ କରି ବିଦ୍ରୋହୀମାନଙ୍କ ଉପରେ ଗୁଳିଚାଳନା କରିବା ଏବଂ ଦଳେ ସୈନ୍ୟ ଧରି ପ୍ରଥମେ ଏମ.ଆର. ବାରାକସ୍ ଉପରେ ଆକ୍ରମଣ କରିବା ବିଦ୍ରୋହ ବିସ୍ତାରର ମୁଖ୍ୟ କାରଣ ହୋଇଥିବାରୁ ତାଙ୍କୁ ସେଠାରୁ ବଦଳି କରାଯାଇଛି । କିନ୍ତୁ ସେହି କୌଶଳ ବିଦ୍ରୋହୀମାନଙ୍କ ଉପରେ କୌଣସି ପ୍ରଭାବ ପକାଇବାର କାରଣ ନଥିଲା । ଦେଶର ସ୍ୱାଧୀନତା ଅର୍ଜନ ପାଇଁ ଉଦ୍ଦିଷ୍ଟ ଏକ ବିଦ୍ରୋହ କୌଣସି ଅଫିସର ବଦଳିରେ ଯେ ପ୍ରଭାବିତ ହୁଏ ନାହିଁ, ଏହା ହୁଏତ ର୍‍ୟାଟ୍‌ଟ୍ରେ ସେ ପର୍ଯ୍ୟନ୍ତ ବୁଝିନଥିଲା । କିନ୍ତୁ ବିଦ୍ରୋହୀମାନେ ଠିକ୍ ବୁଝିଥିଲେ ଯେ ସେ ଯୁଦ୍ଧରେ ସେମାନେ ହାସଲ କରିଥିବା ସାଫଲ୍ୟ କ୍ଷଣିକ ଅଟେ । ଯେ କୌଣସି ମୁହୂର୍ତ୍ତରେ ସେମାନଙ୍କୁ ହୁଏତ ସମ୍ମୁଖୀନ ହେବାକୁ ପଡ଼ିବ ଶତ୍ରୁ ପକ୍ଷର କ୍ରମ ବର୍ଦ୍ଧମାନ ସାମରିକ ଶକ୍ତି ଓ ଉନ୍ନତତର ଯୁଦ୍ଧାସ୍ତ୍ରର । ସେ ଯୁଦ୍ଧର ସାମ୍ଭାବ୍ୟ ପରିଣତି ବିଷୟରେ କାହାରି କୌଣସି ସନ୍ଦେହ ନଥିଲା । କିନ୍ତୁ ସେଥିରେ କେହି ଆତଙ୍କିତ ମଧ ହୋଇ ନଥିଲେ । ଶେଷ ସଂଗ୍ରାମର ତାହା ଥିଲା ଅୟମାରମ୍ଭ ମାତ୍ର । ସୁତରାଂ ଅଗଣିତ ବିଦ୍ରୋହୀଙ୍କର ବିପୁଳ ରକ୍ତ କ୍ଷୟ ବ୍ୟତୀତ ସେ ଯୁଦ୍ଧରେ ବିଜୟ ଯେ ଅସମ୍ଭବ, ଏହା ସମସ୍ତେ ଜାଣି ସୁଦ୍ଧା ସେହି ଜୀବନ ମରଣ ଯୁଦ୍ଧରେ ସମସ୍ତେ ଯୋଗ ଦେଇଥିଲେ । ବରଂ କିଏ ସର୍ବ ପ୍ରଥମେ ମାତୃ ମୁକ୍ତି ଯଜ୍ଞରେ ନିଜକୁ ଆହୁତି ଦେଇ ପାରିବ, ସେଥିପାଇଁ ଚାଲିଥିଲା ପ୍ରତିଯୋଗିତା । ସେହି ପରିପ୍ରେକ୍ଷୀରେ ଶାନ୍ତି ସ୍ଥାପନା ଛଳନା କରି ଆସିଥିବା ରିଅର ଆଡ୍‌ମିରାଲ ର୍‍ୟାଟ୍‌ଟ୍ରେ ରାତ୍ରୀର ଅନ୍ଧକାର ଭିତରେ ବହୁ ସଂଖ୍ୟକ ଗୋରା ସୈନ୍ୟ ନେଇ ବିଦ୍ରୋହୀମାନଙ୍କ ଦୁଇଟି ପ୍ରଧାନ କେନ୍ଦ୍ର ଯଥା- ଏମ୍.ଆର. ବ୍ୟାରାକସ୍ ଓ କ୍ୟାସେଲ ବାରାକସ୍‌କୁ ଘେରାଉ କରି ଦେଲା । କରାଚୀରେ ମଧ ସେହି ଅବସ୍ଥା । ବିଦ୍ରୋହୀମାନେ ସମ୍ପୂର୍ଣ୍ଣ ଅପ୍ରସ୍ତୁତ ଥିବା ଅବସ୍ଥାରେ ହୋଇଥିଲା ସେହି ଅପ୍ରତ୍ୟାଶିତ ଆକ୍ରମଣ । ସୁତରାଂ ବିନା ଯୁଦ୍ଧରେ ବନ୍ଦୀ ହେଲେ ପାଞ୍ଚହଜାର ପାଞ୍ଚଶହ ବିଦ୍ରୋହୀ ନୌସେନା । ପ୍ରଥମେ ସେମାନଙ୍କୁ ବମ୍ବେର ଉପକଣ୍ଠରେ ଅବସ୍ଥିତ ମୁଲନ ବନ୍ଦୀ ଶିବିରରେ ଏବଂ ପରେ ସେମାନଙ୍କୁ ସ୍ଥାନାନ୍ତରିତ କରାଯାଇଥିଲା ମୁଲତାନ ଠାରେ ଥିବା ମିଲିଟାରୀ ବନ୍ଦୀ ଶିବିର 'ମୁଲତାନ ଯମାଳୟ'କୁ । ଏତ ଗଲା ନୌବାହିନୀରେ ସଂଘଟିତ ବିଦ୍ରୋହର ମର୍ମନ୍ତୁଦ ପରିଣତି । ତେବେ ସେନାବାହିନୀର ଅନ୍ୟ ଦୁଇଗୋଟି ଶାଖାରେ କଣ ଘଟିଲା ।

ପ୍ରଥମେ ସ୍ଥିର ହୋଇଥିଲା ଯେ ଫେବୃୟାରୀ ୧୮ ତାରିଖରେ ସ୍ଥଳବାହିନୀ, ନୌବାହିନୀ ଓ ଆକାଶବାହିନୀ ଏକ ସଙ୍ଗେ ବିଦ୍ରୋହ ଆରମ୍ଭ ହେବ । କିନ୍ତୁ ପରବର୍ତ୍ତୀ ଅବସ୍ଥାରେ ୧୮ ତାରିଖ ପରିବର୍ତ୍ତେ ୧୧ ତାରିଖରେ ବିଦ୍ରୋହ ଆରମ୍ଭ କରିବାକୁ ''କେନ୍ଦ୍ର ଆକ୍‌ସନ୍ କମିଟି'' ସ୍ଥିର କରିଥିଲେ । ନୌବାହିନୀ ଶାଖାରେ ଅନୁଷ୍ଠିତ ବୈଠକରେ ସେହି ସିଦ୍ଧାନ୍ତ ହୋଇଥିବାରୁ ଅନ୍ୟ ଦୁଇ ବାହିନୀର ଭାରପ୍ରାପ୍ତ ନେତାମାନଙ୍କୁ ଜଣାଇବାର ଦାୟିତ୍ୱ

ଭୁଲା ଭାଇ ଦେଶାଇଙ୍କ ଉପରେ ଥିଲା ବୋଲି "ନୌବିଦ୍ରୋହର ଇତିହାସ" ବହିରେ ଉଲ୍ଲେଖ କରାଯାଇଅଛି । କିନ୍ତୁ କୌଣସି ଅପ୍ରତି ବିଧେୟ ଅସୁବିଧା ବଶତଃ ସେହି ପରିବର୍ତ୍ତିତ ସିଦ୍ଧାନ୍ତଟି ଯଥା ସମୟରେ ବମ୍ବେ ଓ ପୁନେଠାରେ ଅବସ୍ଥାପିତ ସ୍ଥଳବାହିନୀ ଓ ଆକାଶ ବାହିନୀ ଶାଖାରେ ଜଣାଇ ଦିଆଯାଇ ପାରିଲା ନାହିଁ । ଫଳରେ ସମଗ୍ର ବିଦ୍ରୋହ ପରିଚାଳନାରେ ଗୁରୁତର ବିଭ୍ରାଟ ସୃଷ୍ଟି ହୋଇଥିଲା ଏବଂ ବିପୁଳ ସଂଖ୍ୟକ ବିଦ୍ରୋହୀ ହତାହତ ହୋଇଥିଲେ ।

୧୧ ତାରିଖରେ ବିଦ୍ରୋହ କରିବାକୁ ପରିବର୍ତ୍ତିତ ପ୍ରୋଗ୍ରାମ୍ ନଜାଣିବା ଅଶେଷ କ୍ଷତି ହେଲା । ସ୍ଥଳ ବାହିନୀର ମୁଖ୍ୟ ବିଦ୍ରୋହୀ ନେତା ଶହୀଦ ଚନ୍ଦ୍ର ସିଂ ଗଡଓ୍ୱାଲ୍‌ଙ୍କ ଦ୍ୱାରା ପ୍ରଦତ୍ତ ବିବରଣୀ ଅନୁସାରେ "ଆମ୍ଭେମାନେ ପ୍ରଥମରୁ ନିର୍ଦ୍ଧାରିତ ତିଥିରେ ଅର୍ଥାତ୍ ୧୮ ତାରିଖ ସକାଳୁ 'ଖାନାବନ୍ଦ' ଠାରୁ ହିଁ ବିଦ୍ରୋହ ଆରମ୍ଭ କରିଦେଇଥିଲୁ । କିନ୍ତୁ ସେତେବେଳକୁ ନୌବାହିନୀ ବିଦ୍ରୋହକୁ ଅବଦମିତ କରି ସାରିଥିବାରୁ ଆମ ବାହିନୀ ଉପରେ ଚଢ଼ାଉ କରିବାକୁ ସରକାରଙ୍କୁ ଅଧିକ ସହଜ ହୋଇଥିଲା । ଆମର ବହୁସଂଖ୍ୟକ ବିଦ୍ରୋହୀଙ୍କୁ ପ୍ରାଣଦାନ କରିବାକୁ ହେଲା ।" ସରକାରୀ ପକ୍ଷର ପ୍ରବଳ ପ୍ରତିରୋଧର ସମ୍ମୁଖୀନ ହୋଇ ନ ପାରି ପାଞ୍ଚଶହ ବିଦ୍ରୋହୀଙ୍କୁ ଧରି କମ୍ରେଡ୍ ଗଡଓ୍ୱାଲ୍ ସୈନ୍ୟ ଛାଉଣୀରୁ ଗୋପନରେ ପଳାୟନ କରିଥିଲେ, ସେମାନେ ଆଶା କରିଥିଲେ ଯେ ବଣ ଜଙ୍ଗଲରେ କିଛି ଦିନ ଆତ୍ମଗୋପନ କରି ସୁବିଧା ଦେଖି ପୁନର୍ବାର ଆକ୍ରମଣ ରଚନା କରିବେ, କିନ୍ତୁ ତାହା କାର୍ଯ୍ୟତଃ ଏକ ଅସମ୍ଭବ ବ୍ୟାପାର ଥିଲା । ସେମାନଙ୍କର ପଶ୍ଚାଦ୍‌ଧାବନ କରି ସରକାରୀ ପକ୍ଷ ବିଦ୍ରୋହୀମାନଙ୍କର ଅଶେଷ କ୍ଷତି ସାଧନ କରିଥିଲେ । ଶେଷ ସୁଦ୍ଧା ପଳାୟନ କରିଥିବା ପାଞ୍ଚଶହ ବିଦ୍ରୋହୀ ସୈନ୍ୟଙ୍କ ମଧ୍ୟରୁ ମାତ୍ର ପଇଁତ୍ରିଶ ଜଣ ଅବଶିଷ୍ଟ ରହିଥିଲେ ଏବଂ ସେମାନେ ଗଡ଼ଓ୍ୱାଲଙ୍କ ନେତୃତ୍ୱରେ ସରକାରୀ ସୈନ୍ୟମାନଙ୍କ ନିକଟରେ ଆତ୍ମ ସମର୍ପଣ କରିବାକୁ ବାଧ ହୋଇଥିଲେ । ବନ୍ଦୀ ସୈନ୍ୟମାନେ ମୁଲତାନ ମିଲିଟାରୀ ବନ୍ଦୀ ଶିବିରକୁ ପ୍ରେରିତ ହୋଇଥିଲେ ।

ସେହିଭଳି ଦୁର୍ଭାଗ୍ୟ ଜନକ ଘଟଣା ପୁନାସ୍ଥିତ ଆକାଶବାହିନୀ ରେ ମଧ ଘଟିଥିଲା । ସେଠାରେ ମଧ ୧୧ ତାରିଖରେ ବିଦ୍ରୋହ କରିବାର ସିଦ୍ଧାନ୍ତ ୧୮ ତାରିଖରେ ଜଣାଇ ଦିଆଗଲା । ଆକାଶ ବାହିନୀର ବିଦ୍ରୋହୀ ନେତା ପି. କୋଟୟାମ୍‌ଙ୍କ ଦ୍ୱାରା ପ୍ରଦତ୍ତ ତଥ୍ୟ ଅନୁସାରେ "୧୮ ତାରିଖ ସକାଳୁ ଆମ୍ଭେମାନେ ଭାରତୀୟ ପାଇଲଟ୍ ଗ୍ରାଉଣ୍ଡ ଇଞ୍ଜିନିୟର ଓ ଅନ୍ୟାନ୍ୟ କର୍ମୀ 'ଖାନା ବନ୍ଦ'ରୁ ଆନ୍ଦୋଳନ ଆରମ୍ଭ କରିଥିଲେ ସୁଦ୍ଧା ଦିନ ଗୋଟାଏ ବେଳେ ଗୋପନ ସଂସ୍ଥାର "୧୧ ତାରିଖ ସିଦ୍ଧାନ୍ତ ସମ୍ବଳିତ ପ୍ରସ୍ତାବଟି ଆମର ହସ୍ତଗତ ହୋଇଥିଲା । ବାର୍ତ୍ତାବହ ମହୋଦୟ ଆମକୁ ଅବଶ୍ୟ ଏ ସମ୍ବାଦ ମଧ ଦେଇଥିଲେ ଯେ ବମ୍ବେର ନୌବାହିନୀର ବିଦ୍ରୋହ ଚରମ ନିଷ୍ଠୁରତା ସହକାରେ ଅବଦମିତ ହୋଇ ସାରିଛି ।

ବହୁ ଅପରିହାର୍ଯ୍ୟ କାରଣରୁ ଯଥା ସମୟରେ ''୧୧ ତାରିଖ'' ସିଦ୍ଧାନ୍ତ ଏଠାକୁ ଆସିପାରି ନାହିଁ । ତଥାପି ଆପଣମାନେ ବିଦ୍ରୋହ ଆରମ୍ଭ କରିଦେଇଛନ୍ତି, ତାହାହିଁ ଆନନ୍ଦର କଥା । କିନ୍ତୁ ଅଧିକ ବାଟ ନ ଯାଇ ବିଦ୍ରୋହକୁ ଯଥା ସମ୍ଭବ ସହଜ ସର୍ତ୍ତରେ ସମାଧାନ କରିନେବା ବରଂ ଉଚିତ୍ ହେବ । କାରଣ ନୌବାହିନୀ ବିଦ୍ରୋହ ଅବଦମିତ ହୋଇ ସାରିଥିବାରୁ ସରାକାରୀ ପକ୍ଷ ଅଧିକ ପ୍ରତିଶୋଧ ପରାୟଣ ହୋଇ ପଡ଼ିଅଛନ୍ତି । କମ୍ରେଡ୍ ଭୁଲାଭାଇଙ୍କ ଠାରୁ ଏଭଳି ପରାମର୍ଶ ଆମ୍ଭମାନଙ୍କ ଅତିଶୟ ଅବାସ୍ତବ ଓ ଅଶ୍ୱସ୍ତିଜନକ ବୋଧ ହେଲା । ତଥାପି ସେତେବେଳକୁ ଆମ୍ଭମାନଙ୍କର ଆଉ ଅଧିକ କିଛି କରିବାର ନଥିଲା । କାରଣ ଆମେ ସକାଳୁ ଖାନାବନ୍ଦ କରି ବିଦ୍ରୋହ ଘୋଷଣା କରି ସାରିଥିଲୁ, ସୁତରାଂ ସେତେବେଳେ ଆଉ ଫେରିବାର ସମୟ ନଥିଲା କିମ୍ବା ମାନସିକ ଭାବରେ ସେଥିପାଇଁ କେହି ପ୍ରସ୍ତୁତ ନଥିଲେ । ଆଗକୁ ଯିବାର ଅର୍ଥାତ ଶତ୍ରୁ ଉପରେ ଆକ୍ରମଣ କରିବାର ସାମର୍ଥ୍ୟ ଓ ସୁଯୋଗ କ୍ରମଶଃ ସଂକୀର୍ଣ୍ଣ ହୋଇ ଆସୁଥିଲା । କାରଣ ନୌବିଦ୍ରୋହର ତିକ୍ତ ଅନୁଭୂତି ଅର୍ଜନ କରି ସରକାରୀ ପଯ ଖୁବ୍ ସତର୍କ ଓ ସାବଧାନ ହୋଇ ଯାଇଥିଲେ । ଆମେ ମଧ ପରିଣତି ପାଇଁ ପ୍ରସ୍ତୁତ ହୋଇସାରିଥିଲୁ. କାରଣ ଆମେ ସମସ୍ତେ ଜାଣିଥିଲୁ ଯେ କେବଳ ସ୍ୱପ୍ନ ବିଳାସରେ ସ୍ୱାଧୀନତା ଅର୍ଜନ ହୁଏ ନାହିଁ । କ୍ରୁରତାର ଅଗ୍ନିକୁଣ୍ଡରେ ତାହା ଜନ୍ମ ଲାଭ କରେ । ସୁତରାଂ ଭୁଲାଭାଇଙ୍କର ସାବଧାନ ବାଣୀ ଏବଂ ପରାମର୍ଶ ସହ ଆମର କିଛି ଯାଏ ଆସେ ନ ଥିଲା ।

ସେଦିନିଦିନ ଅନ୍ଧକାରର ଅସତର୍କ ମୁହୂର୍ତ୍ତ ରେ ସରକାରୀ ସୈନ୍ୟମାନେ ବମ୍ବାର୍ଡକାର ଓ ମେସିନଗନ୍ ସହ ଆକ୍ରମଣ ଚଳାଇଲେ । ବିଦ୍ରୋହୀମାନେ ଏହାର ପ୍ରତିରୋଧ କରିଥିଲେ ସୁଦ୍ଧା ଗୋରା ପାଇଲଟ୍ ମାନଙ୍କ ସାହାଯ୍ୟରେ ଆକାଶମାର୍ଗରେ ଆକ୍ରମଣ ଚଳାଇ ବିଦ୍ରୋହୀମାନଙ୍କ ଦୁର୍ଭେଦ୍ୟ ଦୁର୍ଗକୁ ସମ୍ପୂର୍ଣ୍ଣ ବିକଳ ଓ ବିପର୍ଯ୍ୟସ୍ତ କରି ଦେବାକୁ ସମର୍ଥ ହେଲେ, ଏହା ଫଳରେ ପଞ୍ଚସ୍ତରୀ ଜଣ ଗ୍ରାଉଣ୍ଡକର୍ମୀ, ସାତଜଣ ଗ୍ରାଉଣ୍ଡ ଇଞ୍ଜିନିୟର ଏବଂ ପଇଁତିରିଶ ଜଣ ପାଇଲଟ୍ ଶହିଦ ହେଲେ ।

ସେନାବାହିନୀର ବିଭିନ୍ନ ଶାଖା ଭିତରେ ଯୋଗାଯୋଗ ବ୍ୟବସ୍ଥା ବିପର୍ଯ୍ୟସ୍ତ ହୋଇ ନଥିଲେ ଏବଂ ଏକା ଦିନରେ ସ୍ଥଳବାହିନୀ, ଆକାଶ ବାହିନୀ ଓ ନୌବାହିନୀରେ ବିଦ୍ରୋହ ହୋଇଥିଲେ ତାହାର ଏଭଳି ଦୟନୀୟ ପରିସମାପ୍ତି ହୋଇ ନଥାନ୍ତା- ମିଳିତ ବିଦ୍ରୋହ ହୋଇଥାନ୍ତା ଅଧିକ ସଫଳ ଏବଂ ତାହାର ପ୍ରଭାବ ହୋଇଥାନ୍ତା ସୁଦୂର ପ୍ରସାରୀ, ସେ ଯାହା ହେଉ ଆକାଶ ବାହିନୀର ବିଦ୍ରୋହୀମାନଙ୍କର ସାମୟିକ ପରାଜୟ ହୋଇଥିଲେ ସୁଦ୍ଧା ତାହା ଯେ ଭବିଷ୍ୟତରେ ବିପୁଳ ବିଜୟର ସଙ୍କେତ ବହନ କରୁଥିଲା, ଏଥିରେ ସନ୍ଦେହର କୌଣସି ଅବକାଶ ନଥିଲା ।

ପି. କୋଟାୟମ୍ ଓ ତାଙ୍କ ସହ ବନ୍ଦୀଥିବା ପଚାଶ ଜଣ ବିଦ୍ରୋହୀ ସୈନିକ ବନ୍ଦୀ ହୋଇ ସେହି ମୁଲତାନ ବନ୍ଦୀ ଶିବିରକୁ ପ୍ରେରିତ ହେଲେ ୧୯୪୪ର ଏପ୍ରିଲ ଦୁଇ ତାରିଖରେ ।

**ରକ୍ତସ୍ନାତା :**

୧୯୪୪ ର ସେହି ପ୍ରଥମ ସେନାବିଦ୍ରୋହରେ ବନ୍ଦୀ ସମସ୍ତ ବିଦ୍ରୋହୀଙ୍କୁ ପ୍ରଥମେ ମୁଲନ୍ଦ (ବମ୍ବେ) ବନ୍ଦୀ ଶିବିର ଓ ପରେ ମୁଲତାନ (ବର୍ତ୍ତମାନ ପାକିସ୍ଥାନ) ର ମିଲିଟାରୀ ଜେଲରେ ହୁଏତ ହତ୍ୟା ବା ଆଜୀବନ ବନ୍ଦୀ ଭାବରେ ରଖି ଅଶେଷ ନିର୍ଯ୍ୟାତନା ଦିଆଯାଉଥିଲା । ଶତ ସହସ୍ର ଶହୀଦର ରକ୍ତ ଓ ଅସ୍ଥିର ସ୍ତୂପ ଉପରେ ନିର୍ମିତ ସେହି ଯମାଳୟ ଦୁଇଟିକୁ ଯଥାର୍ଥରେ ଦୁଇଟି ତୀର୍ଥ କ୍ଷେତ୍ର କହିଲେ ଅତ୍ୟୁକ୍ତି ହେବନାହିଁ ।

ମୁଲତାନ ଜେଲର ପ୍ରାଚୀର ପାର୍ଶ୍ୱରେ ଶହୀଦମାନଙ୍କ କଙ୍କାଳରେ ସୃଷ୍ଟି ହୋଇଥିବା କୃତ୍ରିମ ପର୍ବତ ଯେମିତି ଏକଦା ପ୍ରାକ୍ ସ୍ୱାଧୀନତା ଯୁଗରେ ଆକୁମାରୀ ହିମାଳୟ ଖେଳାଇ ଦେଇଥିଲା ଲୋମହର୍ଷଣ କାରୀ ସ୍ପନ୍ଦନ, କମ୍ପନ ଓ କ୍ରୋଧର ଉତ୍ତାଳ ତରଙ୍ଗ, ସେମିତି ନୌବାହିନୀର ପ୍ରଥମ ନାରୀ ଶହୀଦ ଦୁଇଟିଙ୍କ ରକ୍ତରେ ପ୍ଲାବନ କରି ମୁଲନ୍ଦ ବନ୍ଦୀ ଶିବିରକୁ ପରିଣତ କରି ଦେଇଥିଲା ଏକ ଐତିହାସିକ ସ୍ମାରକୀରେ ।

ନୌବାହିନୀର ଯେଉଁ ନର୍ସିଂ କର୍ମଚାରୀ ଦୁଇ ମହିଳା - ଅନୁଭା ଓ ଉର୍ମିଳାଙ୍କୁ ସେମାନଙ୍କ ଶୟନ କକ୍ଷରୁ ବିଦ୍ରୋହ ସମ୍ପର୍କୀୟ କେତେକ ଆପତ୍ତିଜନକ ଚିଠିପତ୍ର ଜବତ କରାଯାଇ ଥିବାରୁ ଗିରଫ କରାଯାଇଥିଲା, ସେହି ମହିଳା ଦୁଇଜଣଙ୍କ ସମେତ ଅଧିକାଂଶ ବିଦ୍ରୋହୀ ନେତା ମାନଙ୍କର ମଧ୍ୟ ସେହିଠାରେ କୋର୍ଟମାର୍ଶାଲ୍ କରାଯାଇଥିଲା ।

ସେହି ମହିଳା ଦ୍ୱୟଙ୍କର ଅନ୍ତିମ ମୁହୂର୍ତ୍ତର ଚାକ୍ଷୁଷ ବିବରଣୀ ନୌବିଦ୍ରୋହର ଅନ୍ୟତମ ନେତା ପେଟି ଅଫିସର ଫଣୀଭୂଷଣ ଭଟ୍ଟାଚାର୍ଯ୍ୟଙ୍କ ଲେଖନୀରେ ଅମର ହୋଇ ରହିଛି କାଳ କାଳକୁ ଉତ୍ତର ପୁରୁଷମାନଙ୍କ ପାଇଁ । ସ୍ୱୟଂ ଫଣିବାବୁ ଅନ୍ୟାନ୍ୟ ନୌବିଦ୍ରୋହୀ ନେତାମାନଙ୍କ ସହ ମୁଲନ୍ଦ ବନ୍ଦୀ ଶିବିରରେ ଥିଲେ କୋର୍ଟ ମାର୍ଶାଲର ନିର୍ଦ୍ଦେଶ ଶୁଣିବା ପାଇଁ ।

''୧୯୪୪ ମସିହା ମାର୍ଚ୍ଚ ୩୧ ତାରିଖ, ହଠାତ୍ ମୋର ଗାରଦ ମଧ୍ୟରେ ଜଣେ ସଶସ୍ତ୍ର ସିପାହୀ ପ୍ରବେଶ କରି ମୋତେ ଗୋଡ଼ କଡ଼ି ଓ ହାତ କଡ଼ିରେ ବାନ୍ଧି ଦିଆଗଲା । ମୋତେ ଅଣାଗଲା ବନ୍ଦୀ ଶିବିର ଭିତରକୁ । ବନ୍ଦୀ ଶିବିରରେ ତାର କଣ୍ଟା ବାଡ଼ ଓ ପାଚେରୀ ଥିବା ଚଉତରାରେ ସଶସ୍ତ୍ର ଗୋରା ସୈନ୍ୟମାନେ ପହରା ଦେଉଥିଲେ । ପାଚେରୀ ଉପରେ ଜଳୁଥିଲା ଆଖି ଝଲସା ଲାଇଟ୍ । ସେତେବେଳକୁ ସେଠାକୁ ଅଣା ଯାଇଥିଲା ଶହ ଶହ ବିଦ୍ରୋହୀ ନେତାଙ୍କୁ ଏବଂ ଅବଶ୍ୟ ସେହି ତେଜସ୍ୱିନୀ ମହିଳାଦ୍ୱୟଙ୍କୁ ।

ସେମାନଙ୍କୁ ଦେଖିଲେ ସ୍ପଷ୍ଟ ବୁଝି ହେଉଥିଲା କିଭଳି ଅକଥ୍ୟ ଅତ୍ୟାଚାର ସେମାନଙ୍କ ଉପରେ ହୋଇଛି । ସେ ଦୁଇଜଣଙ୍କର ସମସ୍ତ ପୋଷାକ ପତ୍ର ଛିନ୍ନଛତ୍ର ଓ ରକ୍ତାକ୍ତ । କେତେକ ସ୍ଥାନରେ ରକ୍ତ ଶୁଖିଯାଇ ମେଞ୍ଚା ମେଞ୍ଚା ହୋଇ ଯାଇଥିଲା । ନିମ୍ନାଙ୍ଗରୁ ପାଦ ଦେଇ ବୋହି ଯାଉଥିଲା ରକ୍ତର ନିର୍ଝର । ମୁଖ ମଣ୍ଡଳରେ ପ୍ରାୟ ସର୍ବତ୍ର ଦିଶୁଥିଲା ନଖଦନ୍ତର ବିଭତ୍ସ ସଙ୍କେତ । କେଉଁଠାରେ ଚର୍ମ ଛିନ୍ନବିଚ୍ଛିନ୍ନ ଓ ସେଥିରେ ବୋହି ଆସୁଥିଲା ରକ୍ତ । ସେହି ସୁନ୍ଦର

ସୁଠାମ ତନୁଲତା ଉପରେ ପଡ଼ିଥିଲା ନୀଳ ରଙ୍ଗର ଛାପ । ତଥାପି ସେମାନଙ୍କର ପ୍ରଖର ଦୃଷ୍ଟି ଭିତରେ ଯେମିତି ଏକ ଅନିର୍ବଚନୀୟ ବଜ୍ରଦୃଢ ପ୍ରତିଜ୍ଞା ସ୍ପଷ୍ଟ ପ୍ରତିଭାତ ହେଉଥିଲା ।

କିଛି ସମୟ ପରେ କମାଣ୍ଡର କିଙ୍ଗ ତାହାର ସାଙ୍ଗ ସଖାମାନଙ୍କୁ ଧରି ସେଠାରେ ହେଲା ଉପସ୍ଥିତ । ଦଣ୍ଡା ବେଡ଼ି ପରିହିତ ଅବସ୍ଥାରେ ଆମ୍ଭମାନଙ୍କୁ ଛିଡ଼ା କରି ଦିଆଗଲା ଲାଇନ୍ କରି । ଚତୁର୍ଦ୍ଦିଗରେ ସଶସ୍ତ୍ର ପ୍ରହରୀ । କିଛି ଦୂରରେ 'ଫଲୁଇନ' ସମ୍ମୁଖରେ କମାଣ୍ଡର କିଙ୍ଗ ଛିଡ଼ା ହୋଇଥିଲା । ପରେ ପରେ କ୍ୟାପ୍ଟେନ୍ ଇନ୍‌ଗୋ ସେଠାରେ ଉପସ୍ଥିତ ହେଲା । ମିଷ୍ଟର ର୍ୟାଟଟ୍ରେର ଚାତୁରୀ ସ୍ପଷ୍ଟ ବୁଝାଯାଉଥିଲା, ସେ ପଢ଼ିବାକୁ ଲାଗିଲା କୋର୍ଟ ମାର୍ଶାଲ ଅର୍ଡର । ରାୟର ସଂକ୍ଷିପ୍ତ ସାର ହେଲା- ''ଭାରତର ସଶସ୍ତ୍ର ବାହିନୀରେ ବିଦ୍ରୋହ ସୃଷ୍ଟି କରି ବ୍ରିଟିଶ୍ ସରକାରର ଶାସନକୁ ଉଚ୍ଛେଦ କରିବାର ଗଭୀର ଷଡ଼ଯନ୍ତ୍ରରେ ଲିପ୍ତ ଥିବା ଅଭିଯୋଗରେ ମହିଳା ଦୁଇଜଣଙ୍କୁ ଗୁଳି କରି ହତ୍ୟା କରାଯିବ ଏବଂ ଦେଢ଼ ହଜାର ପୁରୁଷ ବିଦ୍ରୋହୀଙ୍କୁ ମୁଲତାନ ମିଲିଟାରୀ ଜେଲରେ ଦିଆଯିବ ଆଜୀବନ ସଶ୍ରମ କାରାଦଣ୍ଡ ।

ବିସ୍ଫୋରଣ ମୁଖୀ ଅଗ୍ନେୟଗିରି ଭଳି ଶାନ୍ତ କାଳ ବୈଶାଖୀର ପୂର୍ବ ମୁହୂର୍ତ୍ତର ପୃଥିବୀ ଭଳି ନିଶ୍ଚଳ, ହିମାଳୟ ଭଳି ସ୍ଥିର । ଅସମ୍ଭବ ସେ ଦୁହିଁଙ୍କର ସଂଯମ, ଅଦ୍ଭୁତ ସେ ମାନସିକ ଧୈର୍ଯ୍ୟ । ଏତେ ଦିନ ପର୍ଯ୍ୟନ୍ତ ଯେଉଁ ସ୍ୱପ୍ନର ସାଧନାରେ ସେମାନେ ବିନିଦ୍ର ରଜନୀରେ ପ୍ରହର ଗଣୁଥିଲେ ନିଜର ଜୀବନ ଓ ଜାତିର ଇତିହାସକୁ ପରାଧୀନତାର ଗ୍ଲାନିରୁ ମୁକ୍ତ କରି ଭୀରୁତାର ଅପବାଦକୁ ପୋଛି ଦେବାପାଇଁ ଯେଉଁ ସାଧନା ଆରାଧନାରେ ଜୀବନ ପଣ ପ୍ରତୀକ୍ଷାରେ ଉଦ୍‌ବେଗ ସହ ଅପେକ୍ଷା କରିଥିଲେ, ଜୀବନର ସେହି ପରମ ଲଗ୍ନ ସେହି ଶୁଭକ୍ଷଣ ସମ୍ଭବତଃ ସମାଗତ । ବୋଧହୁଏ ସେଥିପାଇଁ ଚରମ ଶ୍ରଦ୍ଧାର ପାତ୍ରୀ ମହାନ୍ ଦେଶ ସେବିକା, ବୀରାଙ୍ଗନା ଭଉଣୀ ଅନୁଭା ଓ ଉର୍ମିଳାଙ୍କର ଅନ୍ତର ବାହାରେ ଏତେ ପ୍ରଶାନ୍ତି; ଏତେ ତୃପ୍ତି । ମନେ ହେଉଥିଲା ଯେପିରିକି ହୃଷ୍ଟମନରେ ସେମାନେ ଗ୍ରହଣ କରି ନେଇଥିଲେ କୋର୍ଟ ମାର୍ଶାଲର ଚରମ ନିର୍ଦ୍ଦେଶ । ଦୃଢ଼ କଣ୍ଠରେ ସେମାନେ ଘୋଷଣା କରୁଥିଲେ ''ଇନକ୍ୱିଲାବ୍ -ଜିନ୍ଦାବାଦ'' ।

ରାୟ ପାଠ କରାଯିବାର ପାଞ୍ଚ ମିନିଟ୍ ପରେ ଆରମ୍ଭ ହେଲା ଆକସନ୍ । ଆମ ସମ୍ମୁଖସ୍ଥ ଚାନ୍ଦମାରୀରେ (ବନ୍ଧୁକ ଚାଳନା ଅଭ୍ୟାସ କରିବା ପାଇଁ ମାଟି ବା କଂକ୍ରିଟରେ ନିର୍ମିତ କୁଦ ବା କାନ୍ଥ) ଅତିଶୟ ନିଷ୍ଠୁର ଭାବରେ ସେହି ଦୁଇ ମହିୟସୀ ରକ୍ତସ୍ନାତା ବୀରାଙ୍ଗନା ଦୁଇ ଜଣଙ୍କୁ ଚାରିଜଣ ଗୋରା ସୈନ୍ୟ ଚାରିଗୋଟି ବନ୍ଧୁକରେ ଗୁଳି କଲେ । ଗୁଳିର ଆଘାତରେ ସେମାନଙ୍କର ଅଙ୍ଗ ପ୍ରତ୍ୟଙ୍ଗ ଖଣ୍ଡ ଖଣ୍ଡ ହୋଇ ଚାନ୍ଦମାରୀର ପାଚେରୀରେ ଲୋଟି ଯାଇଥିଲା ଏବଂ ସେଥି ମଧ୍ୟରୁ ଝରି ଆସୁଥିଲା ରକ୍ତର ଝରଣା । ତଥାପି ସେହି ବଜ୍ର କଣ୍ଠରୁ ଅତିଶୟ କ୍ଷୀଣ ସ୍ୱରରେ ଯେମିତି ଶୁଭୁଥିଲା ''ବିପ୍ଳବ ଦୀର୍ଘଜୀବୀ ହେଉ'' ।

ସଶସ୍ତ୍ର ମୁକ୍ତି ସଂଗ୍ରାମର ଜ୍ୱାଳାମୟୀ ଇତିହାସରେ ତ୍ୟାଗ, ସାହସ ଓ ଆତ୍ମୋତ୍ସର୍ଗର

ସେ ଦୃଷ୍ଟାନ୍ତ ଜ୍ୱଳନ୍ତ । ସାମ୍ରାଜ୍ୟବାଦୀ ପୈଶାଚିକ ନିର୍ଯ୍ୟାତନତାର ସବୁଠାରୁ ହୃଦୟ ବିଦାରକ ସେ ଉଦାହରଣ । ମାତୃଭୂମିର ଶୃଙ୍ଖଳ ମୋଚନ ଭାରତର ସଂର୍ବସହା ମାତୃଜାତିର ଅବର୍ଣ୍ଣନୀୟ ସେ କୃଚ୍ଛ୍ର ସାଧନା । ଜୀବନର ଅନ୍ତିମ ମୁହୂର୍ତ୍ତ ପର୍ଯ୍ୟନ୍ତ ଅସୀମ ସେ ଧୈର୍ଯ୍ୟ ଆତ୍ମ ସଂଯମ । ଅକୁତୋଭୟ ସେ ହୃଦୟ ତାଙ୍କର । ଉତ୍ତର ପୁରୁଷବିପ୍ଲବୀମାନଙ୍କୁ ଏଭଳି ଉଦ୍ଦୀପନା ପ୍ରଦାନ କରି ଦେଇଗଲା, ଯେଉଁ ଥିରେ କି ଶେଷ ସଂଗ୍ରାମକୁ ତାହା କରିଦେଲା ଅଧିକ ଆଗ୍ନେୟ ଏବଂ ତେଜୋଦୀପ୍ତ ।

ମୁଲକ ବନ୍ଦୀ ଶିବିରରେ ଥିବା ପ୍ରାୟ ଛ' ହଜାର ବିଦ୍ରୋହୀ ସୈନ୍ୟମାନଙ୍କୁ ବିଭିନ୍ନ ଦଣ୍ଡରେ ଦଣ୍ଡିତ କରାଯାଇ ସମସ୍ତଙ୍କୁ କେତେଗୋଟି ମିଲିଟାରୀ ଟ୍ରେନ୍‌ରେ ମୁଲତାନକୁ ନିଆଯାଇଥିଲା, ପଶ୍ଚିମ ପଞ୍ଜାବର (ବର୍ତ୍ତମାନ ପାକିସ୍ତାନ) ହିମାଳୟର ପାଦ ଦେଶରେ ପର୍ବତ ପରିବେଷ୍ଟିତ ଏକ ନିର୍ଜନ ସହର । ପାଞ୍ଚ ବର୍ଗ କିଲୋମିଟର ପରିମିତ ବିସ୍ତୀର୍ଣ୍ଣ ପ୍ରାନ୍ତରରେ ରାକ୍ଷସପୁରୀର ଆକାର ପ୍ରକାରରେ ନିର୍ମିତ ଏହି ମିଲିଟାରୀ ବନ୍ଦୀ ଶିବିର ଏକ ଭୟାବହ ଆତଙ୍କର ପ୍ରତୀକ ରୂପେ ବିବେଚିତ ହେଉଥିଲା । ଆଣ୍ଡାମାନ ଦ୍ୱୀପ ପୁଞ୍ଜରେ କଳାପାଣି ଦଣ୍ଡ ଭୋଗିବା ପାଇଁ ନିର୍ମିତ ସେଲୁଲାର ଜେଲ ନକ୍‌ସାରେ ନିର୍ମିତ ଏହି ବନ୍ଦୀଶାଳା ପଛରେ କେତେ ସହସ୍ର ବିଦ୍ରୋହୀ ଭାରତୀୟ ବନ୍ଦୀଙ୍କର ଲୁହ ଲହୁର ରୋମାଞ୍ଚକର ଇତିହାସ ବିଦ୍ୟମାନ ଏହା ବର୍ଣ୍ଣନା କରିହେବ ନାହିଁ । ଗୋଟିଏ ସାଇକେଲ ଚକ ଆକୃତିର ଗଠିତ ଏହି ଶିବିରରେ ଚତୁର୍ଦ୍ଦିଗରେ ପଚିଶ ଫୁଟ ଉଚ୍ଚର ପଥର ପାଚେରୀ । ମଝିରେ ଏକ ପାଞ୍ଚ ମହଲା ବିଶିଷ୍ଟ ଗୋଲ ଗମ୍ବୁଜ ଗୁମୁଟି, ସେ ହି ଗୁମୁଟିର ସାଇକେଲ ସ୍ପୋକ ପରି ବ୍ୟାସାର୍ଦ୍ଧରେ ଦଶଗୋଟି ଲମ୍ବ ପାଞ୍ଚ ମହଲା ବିଶିଷ୍ଟ ଧାଡ଼ି ଘର, ତାହାରି ଭିତରେ ଦଣ୍ଡା ବେଡ଼ି ପରିହିତ ବିଦ୍ରୋହୀ ସୈନିକମାନଙ୍କ ଆଶ୍ରୟ ସ୍ଥଳ । ସହସ୍ରାଧିକ କୋଠରୀରେ ସହସ୍ରାଧିକ ବନ୍ଦୀ । ସ୍ୱଳ୍ପାହାର, ନାମମାତ୍ର ପୋଷାକ ଏବଂ ଯତ୍ ସାମାନ୍ୟ ଶୀତବସ୍ତ୍ରରେ ରାତ୍ରୀ ଯାପନ ଯେପରି ଅତୀବ କ୍ଳେଶଦାୟକ ଗ୍ରୀଷ୍ମଋତୁରେ ପ୍ରଖର ତାପରେ ସିଝି ସିଝି ମରିବା ପାଇଁ ସମସ୍ତ ''ସୁବନ୍ଦୋବସ୍ତ'' ମଧ ତତୋଧିକ ଅମାନୁଷିକ ଓ ପୈଶାଚିକ ।

ସାମାନ୍ୟ ଅପରାଧରେ ଗୁଳି ଭରି ହତ୍ୟା କରିବା ଥିଲା ମୁଲତାନ ବନ୍ଦୀ ଶିବିରର ଏକ ଦୈନନ୍ଦିନ ସାଧାରଣ କଥା । ବିଦ୍ରୋହୀ ସୈନ୍ୟମାନଙ୍କୁ ଗୋଟି ଗୋଟି କରି ହତ୍ୟା କରି ପାହାଡ଼ ଖୋଲରେ ନିକ୍ଷେପ କରି ଦିଆଯାଉଥିଲା ଲୋକଲୋଚନର ଅନ୍ତରାଳରେ । ସହସ୍ରାଧିକ କଙ୍କାଳରେ ସ୍ତୁପୀକୃତ ସେହି ପର୍ବତକୁ ଦେଖି ଦିନେ ଶିହରି ଉଠିଥିଲେ କରାଚୀ ଓ ଲାହୋର ବିଶ୍ୱବିଦ୍ୟାଳୟର ଭ୍ରମଣରତ ଦଳେ ଛାତ୍ର । ସ୍ୱାଧୀନତା ପିପାସୁ ଦେଶପ୍ରେମୀ ବୀର ପୁତ୍ରମାନଙ୍କ ପ୍ରତି ହେଉଥିବା ସେହି ଅମାନୁଷିକ ବ୍ୟବହାର ଛାତ୍ରମାନଙ୍କୁ ବ୍ୟଥିତ କରିଥିଲା ଏବଂ ସେହି ବ୍ୟଥା ଅସମ୍ବରଣୀୟ କ୍ରୋଧରେ ପରିଣତ ହୋଇ ସୃଷ୍ଟି କଲା ଦେଶବ୍ୟାପି ଏକ ଦୁର୍ବାର ଆନ୍ଦୋଳନ । ଶେଷରେ ବାଧ ହୋଇ ମୁଲତାନ ବନ୍ଦୀ ଶିବିରରୁ ମୁକ୍ତି ପାଇଲେ ସହସ୍ରାଧିକ ବନ୍ଦୀ ସୈନ୍ୟ ।

୧୯୪୪ ନୌବିଦ୍ରୋହକୁ ନିଷ୍ଠୁର ଭାବରେ ଦମନ କରିବାରେ ସରକାର ସମର୍ଥ ହୋଇଥିଲେ ସୁଦ୍ଧା ଏହାକୁ ସମ୍ପୂର୍ଣ୍ଣ ଭାବେ ସ୍ତବ୍ଧ, କରିପାରି ନଥିଲା ବରଂ ଅତୀତର ଭୁଲ ତ୍ରୁଟିକୁ ସଂଶୋଧନ କରି ପୂର୍ବର ଅଭିଜ୍ଞତା ଓ ଅନୁଭୂତିର ଭିତ୍ତିରେ ସେମାନେ ଗଢ଼ି ତୋଳିଲେ ଆହୁରି ଦୁର୍ବାର ବିଦ୍ରୋହ ଯାହାକି ସ୍ୱାଧୀନତା ପ୍ରାପ୍ତିରେ ଗ୍ରହଣ କଲା ଏକ ନିଷ୍ପତ୍ତିମୂଳକ ଭୂମିକା । ସେହି ଶେଷ ସଂଗ୍ରାମର ପ୍ରଥମ ଅସ୍ତ୍ର ଟଙ୍କାର ଶୁଣାଗଲା ୧୯୪୫ ମସିହା ଡିସେମ୍ବର ମାସରେ । ସେହି ବର୍ଷର ଜାପାନର ଆତ୍ମସମର୍ପଣରେ ଦ୍ୱିତୀୟ ମହାଯୁଦ୍ଧର ହେଲା ପରିସମାପ୍ତି ଏବଂ ନେତାଜୀ ସୁଭାଷଙ୍କ ଦ୍ୱାରା ଗଠିତ ମୁକ୍ତିସେନାନୀ - ଆଜଦ୍ ହିନ୍ଦ୍ ଫୌଜ ହେଲେ ବନ୍ଦୀ । ବିଚାର ପାଇଁ ଅଣାଗଲା ଭାରତର ଲାଲ୍‌କିଲ୍ଲାକୁ । ଲାଲକିଲ୍ଲା ବିଚାର ଯେ ସୈନ୍ୟବାହିନୀ ଭିତରେ ବରଂ ଦେଶାତ୍ମବୋଧକୁ ଅଧିକ ତୀବ୍ର ଭାବରେ ଜାଗ୍ରତ କରିବ ଏହା ବ୍ରିଟିଶଶାସକମାନଙ୍କର ଅବଧାରଣା ଭିତରକୁ ଆସି ପାରୁନଥିଲା । ଭାରତରେ ବ୍ରିଟିଶ୍ ସର୍ବୋଚ୍ଚ ସେନାପତି ଫିଲଡ୍ ମାର୍ଶାଲ୍ ସାରକ୍ଲଡ ଅଚିନଲେକ୍ ରାଜଦ୍ରୋହୀ ଆଜଦ୍ ହିନ୍ଦ ଫୌଜକୁ ମୃତ୍ୟୁଦଣ୍ଡ ଦେବାକୁ ଯେତିକି କୃତସଙ୍କଳ୍ପ ତତୋଧିକ ଦୃଢ଼ ପ୍ରତିଜ୍ଞ ଦେଖାଇ ହେବାକୁ ଯେ ସୈନ୍ୟ ବା ପୂର୍ବ ବିଦ୍ରୋହଗୁଡ଼ିକ ମଧ ସମ୍ପୂର୍ଣ୍ଣ ରୂପେ ଅବଦମିତ । ସୈନ୍ୟବାହିନୀର ସେହି କପୋଳକଳ୍ପିତ 'ରାଜାନୁଗତ୍ୟ'ର ପ୍ରଦର୍ଶନ ପାଇଁ ଡିସେମ୍ବର ୧୯ ତାରିଖରେ ମହା ସମାରୋହରେ ''ନୌଦିବସ'' ପାଳନ କରିବାକୁ ସରକାର ସ୍ଥିର କରିଥିଲେ ଏବଂ ସେହି ଉପଲକ୍ଷେ ପ୍ରସିଦ୍ଧ ତଲଓ୍ୱାର' ଯୁଦ୍ଧ ଜାହାଜକୁ ରାଜକୀୟ ଆଡ଼ମ୍ବରରେ ସୁସଜ୍ଜିତ କରି ସର୍ବୋଚ୍ଚ ସେନାପତି ଅଚୀନ ଲେକ୍‌ଙ୍କୁ ସମ୍ବର୍ଦ୍ଧନା ଦେବା ପାଇଁ ମଧ ସ୍ଥିର ହୋଇଥିଲା । ସେହି ଯୋଜନାକୁ ସ୍ୱାଗତ କରିବା ପରିବର୍ତ୍ତେ ବିଦ୍ରୋହୀ ନୌସେନାମାନେ ତାହା ଗ୍ରହଣ କରିଥିଲେ ଏକ ଜାତୀୟ ଅପମାନ ଭାବରେ ଏବଂ ସେହି ଆଡ଼ମ୍ବରପୂର୍ଣ୍ଣ ଆୟୋଜନକୁ ପଣ୍ଡ କରିଦେବା ପାଇଁ ଚାଲିଲା ଗୋପନ ଷଡ଼ଯନ୍ତ୍ର । ସରକାରୀ ପକ୍ଷର ସମସ୍ତ ପ୍ରକାର ସତର୍କତା ସତ୍ତ୍ୱେ ବିଦ୍ରୋହୀମାନେ ''ତଲଓ୍ୱାର'' ଜାହାଜର ସମସ୍ତ ସାଜସଜ୍ଜା ତଥା ସେଥିରେ ଉଡୁଥିବା ବ୍ରିଟିଶ୍ ପତାକା ୟୁନିୟନ୍ ଜ୍ୟାକକୁ ପୋଡ଼ି ପାଉଁଶ କରିଦିଆ ଯାଇଥିଲା । କେବଳ ସେତିକିରେ ବିଦ୍ରୋହୀମାନେ ସନ୍ତୁଷ୍ଟ ହୋଇନଥିଲେ । ସେମାନେ ସୈନ୍ୟଛାଉଣୀ କାନ୍ଥ ବାଡ଼ରେ ସ୍ଲୋଗାନ୍ ଲେଖିଦେଲେ- ''ବିଦେଶୀ ଶାସକ- ଭାରତ ଛାଡ଼'', ଆଜଦ୍ ହିନ୍ଦ, ଜୟହିନ୍ଦ, ଜୟହିନ୍ଦ ଅଚୀନଲେକ୍ ଯେଉଁ ପେଣ୍ଡାଲ ଉପରେ ଛିଡ଼ା ହୋଇ ନୌବାହିନୀ ଠାରୁ ସାଲ୍ୟୁଟ୍ ଗ୍ରହଣ କରିଥାନ୍ତା, ସେଠାରେ ମଧ ଲେଖା ହୋଇଥିଲା ସରକାର ବିରୋଧୀ ସ୍ଲୋଗାନ୍ ଅଧିକ ବିଦ୍ରୋହାତ୍ମକ କାର୍ଯ୍ୟକଳାପର ଆଶଙ୍କାରେ ଶେଷ ମୁହୂର୍ତ୍ତରେ କର୍ତ୍ତୃପକ୍ଷ ବାଧ୍ୟ ହୋଇ ସାର କ୍ଲଡ୍ ଅଚୀନଲେକର ସମ୍ବର୍ଦ୍ଧନା ଉତ୍ସବକୁ ବନ୍ଦ କରିଦେଲେ ଏବଂ ବାତିଲ ହେଲା ତାହାର କାର୍ଯ୍ୟକ୍ରମ ।

ଏହାଥିଲା ଶେଷ ସଂଗ୍ରାମର ପ୍ରଥମ ଅସ୍ତ୍ର ଝଙ୍କାର ଏବଂ ଭବିଷ୍ୟତ ବିପୁଳ ସମ୍ଭାବନାର ବାର୍ତ୍ତା ବହନ କରି ୧୯୪୫ ମସିହାରେ ପରିସମାପ୍ତି ହୋଇଥିଲା ।



# ଗଣ ସାମରିକ ବିଦ୍ରୋହ

## -୧-

ବ୍ରିଟିଶ୍ ଭାରତର ସାମରିକ ଓ ବେସାମରିକ ବିଭାଗର ସମସ୍ତ ସଶସ୍ତ୍ର ବାହିନୀରେ ବ୍ୟାପକ ବିଦ୍ରୋହ ଯୁଦ୍ଧୋତ୍ତର ଓ ପ୍ରାକ୍ ସ୍ୱାଧୀନତା ଯୁଗରେ ଏକ ଅତିଶୟ ଗୁରୁତ୍ୱପୂର୍ଣ୍ଣ ଘଟଣା । ଭାରତୀୟ ସୈନ୍ୟଙ୍କର ସାହାଯ୍ୟ ଓ ରକ୍ତର ବିନିମୟରେ ପ୍ରତିଷ୍ଠିତ ବିଦେଶୀ ଶାସନ, ସେହି ସଶସ୍ତ୍ର ବାହିନୀର ସାହାଯ୍ୟରେ ବାରମ୍ବାର ବିଦ୍ରୋହ ଘୋଷିତ ହୋଇଅଛି, କିନ୍ତୁ ତାହା ସବୁ ଅସଂଲଗ୍ନ ଓ ଅସଙ୍ଗଠିତ ଭାବରେ ପରିଚାଳିତ ହୋଇଥିବାରୁ ଏବଂ ସେଥିପ୍ରତି ସ୍ୱତଃସ୍ଫୂର୍ତ୍ତ ଜନସମର୍ଥନର ଅଭାବ ଯୋଗୁଁ ତାହା ବାରମ୍ବାର ବ୍ୟର୍ଥ ମଧ ହୋଇଅଛି ।

୧୯୪୫ ରେ ଯୁଦ୍ଧ ଶେଷ ହେବା ପରେ ଦେଖାଗଲା ଯେ ଏହି ଯୁଦ୍ଧ ଫଳରେ ଫାସୀବାଦ ଓ ନାଜୀବାଦର ପରାଜୟ ହୋଇଥିଲେ ସୁଦ୍ଧା ଏବଂ ସାମରିକ ଓ ଆର୍ଥିକ ଦୃଷ୍ଟିରୁ ବ୍ରିଟିଶ୍ ଶାସକମାନେ ଚରମ ବିପର୍ଯ୍ୟୟର ସମ୍ମୁଖୀନ ହୋଇଥିଲେ ମଧ ସେମାନେ ତଥାପି ଭାରତ ପରିତ୍ୟାଗ କରିବାକୁ ଇଚ୍ଛା ପ୍ରକାଶ କରିନଥିଲେ କଂଗ୍ରେସ ଓ ମୁସଲିମ୍ ଲିଗ୍ ଭିତରେ ସୃଷ୍ଟି ହୋଇଥିବା ମତଭେଦର ସୁଯୋଗ ନେଇ ସେମାନେ କ୍ଷମତା ହସ୍ତାନ୍ତର କରିବାକୁ ଟାଳଟୁଳ କରୁଥିଲେ । ହିନ୍ଦୁ ମୁସଲମାନଙ୍କ ମଧରେ ସାମ୍ପ୍ରଦାୟିକ ବିବାଦ ଓ ତିକ୍ତତା ମଧ ଶେଷ ସୀମାରେ ପହଞ୍ଚି ଯାଇଥିଲା ।

ଉଭୟ ସମ୍ପ୍ରଦାୟ ପରସ୍ପର ବିରୁଦ୍ଧରେ ଅଭିଯୋଗ ଓ ପ୍ରତ୍ୟାଭିଯୋଗ କରିବା ସଙ୍ଗେ ସଙ୍ଗେ ହତ୍ୟା, ଲୁଣ୍ଠନ, ଗୃହଦାହ, ଧର୍ମାନ୍ତକରଣ ଓ ନାରୀ ନିର୍ଯ୍ୟାତନା ପ୍ରଭୃତି ଜଘନ୍ୟ ଅପରାଧ ନିର୍ବିରୋଧ ଓ ନିର୍ବିଚାରରେ ଚାଲିଥିଲା । ସେହି ଦୁଃଖ ଦାୟକ ଓ ହୃଦୟ ବିଦାରକ ଘଟଣା ପାଇଁ କେବଳ ବିଦେଶୀ ଶାସକବର୍ଗ ଦାୟୀ ନଥିଲେ, ବରଂ ଉଭୟ କଂଗ୍ରେସ ଓ ମୁସଲିମ୍ ଲିଗ୍‌ର ନେତୃବୃନ୍ଦ ହିଁ ସେହି କଳହ ସୃଷ୍ଟିର ମୁଖ୍ୟ ଖଳନାୟକ ଥିଲେ ।

ସଂଘୀୟ ଢାଞ୍ଚାରେ ଅଖଣ୍ଡ ଭାରତରେ ସ୍ୱାଧୀନତା ପ୍ରତିଷ୍ଠା କରିବାକୁ କ୍ୟାବିନେଟ୍ ମିଶନର ପ୍ରସ୍ତାବକୁ କଂଗ୍ରେସ ପ୍ରଥମେ ଗ୍ରହଣ କରି ପରେ ପ୍ରତ୍ୟାଖ୍ୟାନ କରି ନଥିଲେ ମୁସଲିମ୍ ଲିଗ୍ ମଧ ସେଥିରୁ ଓହରି ଯାଇ ନଥାନ୍ତା । ନେହେରୁ କଂଗ୍ରେସ ସଭାପତି ନିର୍ବାଚିତ ହେବା ପରେ ସେହି ଅଧିକାର ବଳରେ କ୍ୟାବିନେଟ୍ ମିଶନ'ର ସଂଘୀୟ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିବାର ସୁଯୋଗ ପାଇଥିଲେ, ସଭାପତି ପଦପାଇଁ ତାଙ୍କୁ ସମର୍ଥନ କରିଥିବାରୁ ଆଜାଦ୍ ଏହା ତାଙ୍କର 'Greatest Blunder' (ମାରାତ୍ମକ ଭୁଲ) ବୋଲି ତାଙ୍କର ଆତ୍ମଜୀବନରେ ଉଲ୍ଲେଖ କରିଛନ୍ତି ।

ସେନାବାହିନୀର ଶେଷ ବିଦ୍ରୋହ ବେଳେ ଏହାହିଁ ଥିଲା ଦେଶର ସାମଗ୍ରିକ ପରିସ୍ଥିତି । ୧୯୪୩ ଦୁର୍ଭିକ୍ଷରେ ପୂର୍ବ ଭାରତର ୩୦ ଲକ୍ଷ ଲୋକଙ୍କର ଅନାହାର ମୃତ୍ୟୁ ହୋଇଥିଲା । ଯୁଦ୍ଧବେଳେ ଘଟିଥିବା ଅତ୍ୟଧିକ ମୂଲ୍ୟ ବୃଦ୍ଧି ଓ ଅତ୍ୟାବଶ୍ୟକ ଜିନିଷର ଅଭାବ ଓ କଳାବଜାର ଫଳରେ ଦୈନନ୍ଦିନ ଜୀବନ ଯାପନ ହୋଇ ଉଠିଲା ଦୁଃସହ । ଯୁଦ୍ଧ ବନ୍ଦ ହୋଇଯିବାର ସାମରିକ ଓ ବେସାମରିକ କ୍ଷେତ୍ରରେ ବ୍ୟାପକ ଛଟେଇ ଯୋଗୁଁ ବେକାର ସମସ୍ୟା ଉତ୍କଟ ହୋଇ ଉଠିଥିଲା । ସକଳ କ୍ଷେତ୍ରରେ ସରକାରର ବ୍ୟର୍ଥତା ଓ ଅଯୋଗ୍ୟତା ହିଁ କ୍ରମେ ଅଧିକରୁ ଅଧିକ ପ୍ରକଟିତ ହେଉଥିଲା । ଅପର ପକ୍ଷରେ ସ୍ୱାଧୀନତା ପ୍ରାପ୍ତି ପାଇଁ ବ୍ୟାକୁଳତା ଓ ଆକାଂକ୍ଷା ମଧ ତୀବ୍ର ଭାବରେ ଅନୁଭୂତ ହେଲା ଜନମାନସରେ । କ୍ରମେ ତାହା କ୍ରୋଧରେ ପରିଣତ ହେଉଥିଲା । ଜନ ଅସନ୍ତୋଷର ସେହି ଅଗ୍ନି କୁଣ୍ଡରେ ଆଜାଦ୍ ହିନ୍ଦ୍ ଫୌଜର 'ଲାଲକିଲ୍ଲା ବିଚାର' ଘୃତ ବର୍ଷଣ କଲା ବିଶେଷତଃ ସୈନ୍ୟ ତଥା ଅନ୍ୟାନ୍ୟ ବେସାମରିକ ସଶସ୍ତ୍ର ବାହିନୀ ଉପରେ ଲାଲକିଲ୍ଲା ବିଚାରର ଗୁରୁତର ମନସ୍ତାତ୍ତ୍ୱିକ ପ୍ରଭାବ ପଡ଼ିଲା । ୧୯୪୫ ରେ ରହସ୍ୟଜନକ ପରିସ୍ଥିତିରେ ନେତାଜୀ ସୁଭାଷଙ୍କ ଅନ୍ତର୍ଦ୍ଧାନ ଫଳରେ ସରକାର ପ୍ରତି ଯେଉଁ ସନ୍ଦେହ ଓ ଅବିଶ୍ୱାସର ବାତାବରଣ ସୃଷ୍ଟି ହୋଇଥିଲା ସେ ଦୃଷ୍ଟିରୁ ନେତାଜୀଙ୍କ ଦ୍ୱାରା ପରିଚାଳିତ ''ମୁକ୍ତିବାହିନୀ'' ବିରୁଦ୍ଧରେ ଦଣ୍ଡାଦେଶ ଦେବାପାଇଁ ସରକାରର ଦୃଢ଼ ସଙ୍କଳ୍ପକୁ ଲୋକେ ବରଦାସ୍ତ କରିପାରିଲେ ନାହିଁ । ଆଜାଦ୍ ହିନ୍ଦ୍ ଫୌଜରେ ଥିବା ତିନି ମୁଖ୍ୟ ସମ୍ପ୍ରଦାୟ ଅନ୍ତର୍ଭୁକ୍ତ ତିନିଜଣ ଯଥା– କର୍ଣ୍ଣେଲ୍ ଧୀଲନ୍ (ଶିଖ), ସାହନୱାଜ ଖାଁ (ମୁସଲମାନ) ଓ ସାହାଗଲ (ହିନ୍ଦୁ) ଆଦି ତିନି ସେନାପତିଙ୍କର ଏକତ୍ର ବିଚାର କରିବା ଫଳରେ ସେ ବିଚାର ବିରୁଦ୍ଧରେ ହିନ୍ଦୁ, ମୁସଲମାନ, ଶିଖ ନିର୍ବିଶେଷରେ ଏକ ଜନ ବିପ୍ଳବ ସୃଷ୍ଟି ହେଲା. 'ଲାଲକିଲ୍ଲା ଖୋଲ୍ ଦୋ' ସ୍ଲୋଗାନ୍‌ରେ ଆକାଶ ବତାଶ ହେଲା ପ୍ରକମ୍ପିତ । ସୈନ୍ୟବାହିନୀ ସରକାର ବିରୁଦ୍ଧରେ ବିଦ୍ରୋହ କରିବାକୁ ବହୁ ପୂର୍ବରୁ ନେତାଜୀ ଯେଉଁ ଆହ୍ୱାନ ଦେଇଥିଲେ, ତାହା ନୂଆ ନୂଆ ଅର୍ଥ ଓ ଭାଷାରେ ସୈନ୍ୟ ବାହିନୀ ଆଗରେ ପ୍ରତିଭାତ ହେଲା । ବିପ୍ଳବୀ ଆଜାଦ୍ ହିନ୍ଦ୍ ବାହିନୀର ମୁକ୍ତିପାଇଁ ଆକୁମାରୀ ହିମାଳୟ ଆନ୍ଦୋଳନ ଫଳରେ କାର୍ଯ୍ୟରତ ସୈନ୍ୟମାନେ ମଧ ଅନୁଭବ କଲେ ଯେ ଦେଶର ମୁକ୍ତିପାଇଁ ଲଢ଼ିଥିବାରୁ ଆଜାଦ୍ ହିନ୍ଦ ଫୌଜର ସିପାହୀମାନେ ଆଜି ଦଣ୍ଡିତ ସେହି ତ୍ୟାଗ ଓ ସାହସ ପାଇଁ ସେମାନେ ଦେଶବାସୀଙ୍କ ଦ୍ୱାରା ପୂଜିତ ଓ ପ୍ରଶଂସିତ । ସେହି ଅନୁପାତରେ କାର୍ଯ୍ୟରତ ସୈନିକ ଗଣ ଆଜି ଲୋକ ଚକ୍ଷୁରେ ଘୃଣିତ ଓ ନିନ୍ଦିତ । କେବଳ ସୈନ୍ୟବାହିନୀ ନୁହେଁ, ବେସାମରିକ ସଶସ୍ତ୍ରବାହିନୀ ଓ ପୋଲିସ୍‌ବାହିନୀ ଉପରେ ମଧ ସେହି ପ୍ରଭାବ ପଡ଼ିଲା, ଫଳରେ ୧୯୪୬ ମସିହାରେ ସମଗ୍ର ଦେଶରେ ସକଳ କ୍ଷେତ୍ରରେ ସୃଷ୍ଟି ହେଲା ବ୍ୟାପକ ଜନ ବିକ୍ଷୋଭ । ସେହି ସବୁ ଜନ ବିକ୍ଷୋଭ ସମ୍ପର୍କରେ ସମ୍ୟକ ଧାରଣା କରିବା ପାଇଁ ନିମ୍ନ ଲିଖିତ ବିବରଣୀ ପ୍ରତି ଦୃଷ୍ଟି ଦିଆଯାଇପାରେ ।

୧. ବମ୍ବେର ନୌବାହିନୀ- ବିଦ୍ରୋହର ଅୟମାରମ୍ଭ ଫେବୃୟାରୀ ୯ ତାରିଖରେ
୨. ମାଡ୍ରାଜର ଆକାଶ ବାହିନୀରେ ବିଦ୍ରୋହ ଫେବୃୟାରୀ ୧୫ ତାରିଖରେ
୩. ସଶସ୍ତ୍ରବାହିନୀ ବିଦ୍ରୋହର ସମର୍ଥନରେ ତିରୁଚିରେ ସାଧାରଣ ଧର୍ମଘଟ ଫେବୃୟାରୀ ୨୫ ତାରିଖରେ ।
୪. ମଦୁରାଇରେ ସମ୍ପୂର୍ଣ୍ଣ ଧର୍ମଘଟ ଫେବୃୟାରୀ ୨୮ ତାରିଖରେ
୫. ଜବଲପୁରରେ ସମ୍ପୂର୍ଣ୍ଣ ଧର୍ମଘଟ ଫେବୃୟାରୀ ୨୮ ତାରିଖରେ ।
୬. ମୁଲନ୍ଦ ବନ୍ଦୀ ଶିବିର ବନ୍ଦୀ ମିଲିଟାରୀଙ୍କ ସମୂହ ଅନଶନ
୭. ଡେରାଡୁନ୍ ଗୁର୍ଖା ପୋଲିସ୍ ଧର୍ମଘଟ
୮. ଆଲହାବାଦ ପୋଲିସ୍ ଧର୍ମଘଟ
୯. ଦିଲ୍ଲୀ ପୋଲିସ୍ ଧର୍ମଘଟ
୧୦. ଦଶ ହଜାର ବିହାର ପୋଲିସ୍ ଧର୍ମଘଟ
୧୧. ରେଳବାଇ ଧର୍ମଘଟ
୧୨. ସମଗ୍ର ଡାକ ବିଭାଗ ଧର୍ମଘଟ
୧୩. କଲିକତା, କରାଚୀ, ଭାଇଜାଗ୍ ଓ କୋଚିନ୍ ବନ୍ଦରରେ ନୌବାହିନୀରେ ଧର୍ମଘଟ ।
୧୪. ଦେଶର ଅଧିକାଂଶ ଅଞ୍ଚଳରେ ଛାତ୍ର ଧର୍ମଘଟ
୧୫. ଅଲଇଣ୍ଡିଆ ଟ୍ରେଡ୍ ଇଉନିୟନ୍ କଂଗ୍ରେସର ଡାକରାରେ ୩୫ ଲକ୍ଷ ଶ୍ରମିକଙ୍କ ଧର୍ମଘଟ ।
୧୬. କେରଳର ଭାୟାଲାର ଓ ପୁନାପ୍ରାର କୃଷକ ବିଦ୍ରୋହ
୧୭. ଆନ୍ଧ୍ରର ତେଲେଙ୍ଗାନା କୃଷକ ବିଦ୍ରୋହ ଅବସରରେ ୧୦ ହଜାର ସଶସ୍ତ୍ର କୃଷକଙ୍କ ସଂଗ୍ରାମ
୧୮. ବଙ୍ଗଳାର କୃଷକ ବିଦ୍ରୋହ

ଉପରୋକ୍ତ କେତେଗୋଟି ବିଦ୍ରୋହ ସେହି ବର୍ଷର ଫେବୃୟାରୀରୁ ଆରମ୍ଭ ହୋଇ ଅକ୍ଟୋବର ମାସ ପର୍ଯ୍ୟନ୍ତ ବ୍ୟାପିଥିଲା । ଏତଦ୍ ବ୍ୟତୀତ ପ୍ରାୟ ସର୍ବତ୍ର ସ୍ଥାନୀୟ ସମସ୍ୟା ଉପରେ ବିଦ୍ରୋହ, ବିକ୍ଷୋଭ ଓ ଧର୍ମଘଟ ଲଗାତର ଭାବରେ ଚାଲିଥିଲା ।

୧୯୪୬ ମସିହା ଆରମ୍ଭରୁ ଦେଶରେ ପ୍ରତ୍ୟେକ ଅଞ୍ଚଳରେ ଏବଂ ପ୍ରାୟ ସବୁ ଶ୍ରେଣୀର ଭାରତୀୟମାନଙ୍କ ଭିତରେ ଉଗ୍ର ବ୍ରିଟିଶ ବିରୋଧୀ ମନୋଭାବ ସୃଷ୍ଟି ହୋଇ ସରକାରୀ କଳ ପ୍ରାୟତଃ ଅଚଳ ହୋଇ ପଡ଼ିଥିଲା । ୧୯୪୪ ଓ ୪୫ ରେ ସୈନ୍ୟବାହିନୀରେ ଯେଉଁ ଧର୍ମଘଟ ହୋଇଥିଲା, ସରକାର କଠୋର ହସ୍ତରେ ତାହାକୁ ଦମନ କରିଥିଲେ ସୁଦ୍ଧା ସୈନ୍ୟବାହିନୀର ପୁଞ୍ଜିଭୂତ କ୍ରୋଧ ଭିତରେ ଭିତରେ କୁହୁଳୁଥିଲା । ବ୍ରିଟିଶ୍ ଶାସକ ବର୍ଗ ଏଠାରେ ଭାରତୀୟମାନଙ୍କୁ ତଥାପି ନାଲି ଆଖି ଦେଖାଉଥିଲେ ମଧ୍ୟ ନିଜ ଦେଶ ଘୋର ଦୟନୀୟ ପରିସ୍ଥିତି ଭିତରେ ଗତି କରିଥିଲା । ପାଞ୍ଚ ଛଅ ବର୍ଷର ଯୁଦ୍ଧ ବ୍ରିଟିଶ୍ ସାମ୍ରାଜ୍ୟକୁ

ଛାରଖାର କରି ଦେଉଥିଲା । ଇଂଲାଣ୍ଡ ଘୋର ଅର୍ଥନୈତିକ ଦୁର୍ଗତି ଭିତରେ ଗତି କରୁଥିଲା ଏବଂ ପ୍ରତ୍ୟେକ କ୍ଷେତ୍ରରେ ତାହା ଆମେରିକା ଯୁକ୍ତରାଷ୍ଟ୍ରଠାରୁ ସାହାଯ୍ୟ ଭିକ୍ଷା କରୁଥିବା ଫଳରେ ସରକାର ପ୍ରତି ଏକ ଅବଜ୍ଞାଭାବ ସର୍ବତ୍ର ଅନୁଭୂତ ହେଉଥିଲା ।

ଏଣେ ଦେଶରେ ରାଜନୈତିକ ପରିସ୍ଥିତି ମଧ ଘୋର ଜଟିଳତା ଓ ଅନିଶ୍ଚିତତା ଭିତରେ ଆଶା ଓ ଆଶଙ୍କାରେ ଦୋଳାୟିତ ହେଉଥିଲା । ଅଖଣ୍ଡ ଭାରତର ସ୍ୱାଧୀନତା ପାଇଁ ଆଉ ଗୋଟିଏ ଚରମ ସଂଗ୍ରାମର ଆବଶ୍ୟକତା ଥିଲେ ମଧ ନା କଂଗ୍ରେସ ନା ମୁସଲିମ୍ ଲିଗ୍ ସେଥିପାଇଁ ପ୍ରସ୍ତୁତ ଥିଲେ । ସେମାନେ ନିଜକୁ ଭାରି କ୍ଲାନ୍ତ ଶ୍ରାନ୍ତ ଅନୁଭବ କରୁଥିଲେ ଏବଂ ଯେତେ ଶୀଘ୍ର ସମ୍ଭବ ଦେଶକୁ ସ୍ୱାଧୀନତା ମିଳିଯାଉ ବୋଲି ବ୍ୟାକୁଳତା ପ୍ରକାଶ କରୁଥିଲେ । କମ୍ୟୁନିଷ୍ଟମାନେ ଚାହୁଁଥିଲେ ଏକ ସର୍ବାତ୍ମକ ବିପ୍ଳବ ଦରିଆରେ ଅବିଭାଜିତ ଭାରତର ସ୍ୱାଧୀନତା କିନ୍ତୁ ଏକା ଏକା ଚରମ ସଂଗ୍ରାମର ଆହ୍ୱାନ ଦେବାକୁ ସେମାନଙ୍କର ସାରା ଦେଶରେ ସାଙ୍ଗଠନିକ ଶକ୍ତି ନଥିଲା ।

ମୁସଲିମ୍ ଲିଗ ଚାହୁଁଥିଲା ସ୍ୱତନ୍ତ୍ର ରାଜ୍ୟ ଧର୍ମ ଭିତ୍ତିରେ ଓ କଂଗ୍ରେସ ଚାହୁଁଥିବା ଯଥା ଶୀଘ୍ର ସ୍ୱାଧୀନତା:- ଭାରତର ସଂହତିର ବିନିମୟରେ । ବ୍ରିଟିଶ୍ ଶାସକବର୍ଗ ତାହାହିଁ ଚାହୁଁଥିଲେ । ଧର୍ମ ଭିତ୍ତିରେ ଦୁଇ ମୁଖ୍ୟ ଧର୍ମ ହିନ୍ଦୁ ଓ ମୁସଲମାନଙ୍କ ମଧରେ ବିବାଦ ତେଜେଇ ଦେଇ ସାମ୍ରାଜ୍ୟବାଦର ଦୀର୍ଘ କାଳୀନ ସ୍ୱାର୍ଥକୁ ସଂରକ୍ଷଣ କରିବା ଥିଲା ସେମାନଙ୍କର ଅସଲ ମତଲବ । ସେମାନଙ୍କ ବିରୁଦ୍ଧରେ ମିଳିତ ସଂଗ୍ରାମ କରିବାର ମାନସିକତା କାହାର ନଥିଲା ।

ସେମାନେ ଭଲଭାବରେ ଜାଣିଥିଲେ ଯେ ଅତୀତରେ ସେମାନଙ୍କ ବିଦ୍ରୋହ ସମର୍ଥନରେ ବିପୁଳ ଜନ ସମର୍ଥନ ସଙ୍ଗଠିତ ହୋଇ ପାରିନଥିବାରୁ ସରକାର ତାକୁ ସ୍ତବ୍ଧ କରିଦେବା ସହଜ ହୋଇଥିଲା କିନ୍ତୁ ୧୯୪୪ ବା ୧୯୪୫ ଅପେକ୍ଷା ୧୯୪୬ରେ ଦେଶରେ ସବ୍‌ଜେକ୍ଟିଭ୍ ଓ ଅବଜେକ୍ଟିଭ ପରିସ୍ଥିତି ବିଦ୍ରୋହ ପାଇଁ ଅନୁକୂଳ ଥିଲା । ବ୍ୟାପକ ଜନ ବିଦ୍ରୋହ ସାଙ୍ଗକୁ ସୈନ୍ୟବାହିନୀ ବିଦ୍ରୋହ ଯୁକ୍ତ ହେଲେ ଦେଶରେ ଯେଉଁ ବିପ୍ଳବ ସୃଷ୍ଟି ହେବ, ତାହାହିଁ ହେବ ଦେଶ ବିଭାଜନ ବିରୁଦ୍ଧରେ ପ୍ରଧାନ ଗ୍ୟାରେଣ୍ଟି । ତେଣୁ ସବୁ ଦୃଷ୍ଟିରୁ ସେତେବେଳେ ଯେଉଁ ସାମରିକ ବିଦ୍ରୋହର ଆବଶ୍ୟକତା ଥିଲା ବମ୍ବେ ନାଭାଲ ରେଟିଂମାନେ ତାହାର ନେତୃତ୍ୱ ନେବା ଅବଧାରିତ ଥିଲା ।

ଲାଲ୍‌କିଲ୍ଲାରେ ଚାଲିଥିବା ବନ୍ଦୀ ସୈନିକମାନଙ୍କର ସୁରକ୍ଷାପାଇଁ ପାଣ୍ଠି ସଂଗ୍ରହ କାର୍ଯ୍ୟରୁ ବିଦ୍ରୋହର ପ୍ରସ୍ତୁତି କାର୍ଯ୍ୟ ଆରମ୍ଭ ହେଲା । ନେତୃସ୍ଥାନୀୟ ସୈନିକମାନଙ୍କ ଦ୍ୱାରା ପ୍ରତି ଜାହାଜ ଓ ପ୍ରତି ବ୍ୟାରାକରୁ ପାଣ୍ଠି ସଂଗ୍ରହ କରାଗଲା ଏବଂ ସେହ ଅବସରରେ ସେମାନେ ନେତାଜୀଙ୍କ ଆହ୍ୱାନ ଓ ମୁକ୍ତି ବାହିନୀର ଅକୃତ୍ରିମ ଦେଶପ୍ରେମର ପ୍ରଚାର ମଧ କଲେ । ବ୍ୟାରାକ୍‌ର କାନ୍ଥ ବାଡ଼ରେ ଲେଖା ହେଲା ''ଇନ୍‌କ୍ଲିଲାବ୍ ଜିନ୍ଦାବାଦ୍'' ''ନେତାଜୀ ଅମର ରହେ'' । ଆଜାଦ୍ ହିନ୍ଦ୍ ଜିନ୍ଦାବାଦ୍ ଓ ଜୟହିନ୍ଦ୍ ସ୍ଲୋଗାନ । ବମ୍ବେ ନୌବାହିନୀର ବିଦ୍ରୋହ

ପାଇଁ ଚଳ ଚଞ୍ଚଳ ହୋଇ ଉଠିଲା । ଚରମ ସଂଗ୍ରାମର ଆହ୍ୱାନ ପାଇଁ ସମସ୍ତେ କାନ ଡେରି ରହିଲେ । ନେତାଜୀ ସୁଭାଷ ହୋଇଗଲେ ସୈନିକମାନଙ୍କ ଏକମାତ୍ର ଆରାଧ୍ୟ ଦେବତା, ହିରୋ, ଆଜାଦ ହିନ୍ଦ୍ ଫୌଜର ମୁକ୍ତି ଦାବିରେ ନୌବାହିନୀ ବିଦ୍ରୋହ ଘୋଷଣା କରିବାକୁ ଦୃଢ଼ ସଙ୍କଳ୍ପ ହେଲେ ।

ଫେବୃୟାରୀ ୧୭ ତାରିଖ ରାତିରେ ମିଳିତ ଆକ୍ସନ କମିଟିର ଗୁପ୍ତ ବୈଠକ ବସିଲା ପ୍ରବୀଣ ବିଦ୍ରୋହୀ ଜାହଜ ତଲଓ୍ୱାରରେ ଏବଂ ସେଠାରେ ଗଠିତ ହେଲା ନୂତନ କମିଟି ନାଭାଲ ସେଣ୍ଟ୍ରାଲ୍ ଷ୍ଟାଇକ୍ କମିଟି ସଂକ୍ଷେପରେ N.C.S.C. ଆଜାଦ୍ ହିନ୍ଦ୍ ଫୌଜର ତିନି ମୁଖ୍ୟ ସେନାପତିଙ୍କର ବିଚାର ହେଉଥିଲା । କ୍ୟାପ୍ଟେନ୍ ସହାନଓ୍ୱାଜ୍ ଖାଁ କ୍ୟାପ୍ଟେନ୍ ଜି.ଏସ. ଧୀଲନ ଏବଂ କର୍ଣ୍ଣେଲ ପି.କେ. ସାହଗଲ ମୁସଲମାନ, ଶିଖ ଓ ହିନ୍ଦୁ ।

ବ୍ରିଟିଶ୍ ଶାସକ ବର୍ଗ ଜାତି ଧର୍ମ ନିର୍ବିଶେଷର ସମସ୍ତ ଭାରତୀୟଙ୍କର ସ୍ୱାଧୀନତା ପ୍ରେମ ଓ ଜାତୀୟତା ବୋଧକୁ ଖର୍ବ କରିବା ପାଇଁ ବାଛି ବାଛି ତିନିଗୋଟି ମୁଖ୍ୟ ଧର୍ମାବଲମ୍ବୀଙ୍କର ବିଚାର କରୁଥିଲେ ଲାଲ୍‌କିଲ୍ଲାରେ । ସେହି ଅଭିଶାପ କିନ୍ତୁ ଆଶୀର୍ବାଦରେ ପରିଣତ ହେଲା । ଧର୍ମାଧର୍ମ ବିସ୍ମୃତ ହୋଇ ସବୁ ଶ୍ରେଣୀର ଭାରତୀୟମାନଙ୍କୁ ତାହା ଏକତା ସୂତ୍ରରେ ବାନ୍ଧି ଦେଇଥିଲା । ନୌବିଦ୍ରୋହୀମାନେ ମଧ୍ୟ ଜଣେ ପଞ୍ଜାବୀ ମୁସଲମାନ ସିଗନାଲର ଏସ୍.ଏମ୍. ଖାଁଙ୍କୁ ସଭାପତି, ଜନୈକ ଶିଖ ଟେଲିଗ୍ରାଫିଷ୍ଟ ମଦନ ସିଂକୁ ଉପସଭାପତି ଏବଂ ହିନ୍ଦୁ ପେଟି ଅଫିସର ଏନ୍.ଜି ରାଓଙ୍କୁ ସମ୍ପାଦକ କରି ଗଠନ କଲେ କ୍ରିୟାନୁଷ୍ଠାନ କମିଟି ।

-୨-

୧୮ ତାରିଖ ସକାଳୁ ଚା' ପାନ ବର୍ଜନଠାରୁ ବିଦ୍ରୋହ ଆରମ୍ଭ ହେବ ବୋଲି ସ୍ଥିର ହେଲା । ୧୯୪୪ରେ ପ୍ରଥମ ବିଦ୍ରୋହ ହୋଇଥିଲା ସେହି ଫେବୃୟାରୀ ଅଠର ତାରିଖରୁ । ତାହାର ରକ୍ତ ରଞ୍ଜିତ ସ୍ମୃତିରେ ପୁନର୍ବାର ସେହି ପୁଣ୍ୟ ତିଥିରେ ଚରମ ସଂଗ୍ରାମର ଶୁଭ ଦିଆଯିବ ବୋଲି ସର୍ବସମ୍ମତ ସିଦ୍ଧାନ୍ତ ହୋଇଥିଲା ।

ନିଷ୍ପତ୍ତି ଅନୁଯାରେ କାର୍ଯ୍ୟ ଆରମ୍ଭ ହୋଇଗଲା ୧୮ ତାରିଖ ସକାଳୁ । 'ତଲଓ୍ୱାର'ର ଦେଢ଼ ହଜାର ନୌସୈନିକ ସକାଳ ଚା' ବର୍ଜନ କରି ବିଦ୍ରୋହ ଘୋଷଣା କରିଦେଲେ । No, Tea, No Work ଚା' ବନ୍ଦ ଓ କାମ ବନ୍ଦ । ଏକ ସଙ୍ଗେ ଖାଦ୍ୟ ବର୍ଜନ ମାନେହିଁ ସାମରିକ ଭାଷାରେ ବିଦ୍ରୋହ । ଯାହାର ପରିଣତି ହେଉଛି କଠିନ ଶାରୀରିକ ଦଣ୍ଡ ଓ ତାକୁ ଅମାନ୍ୟ କଲେ ହୁଏତ ପ୍ରାଣଦଣ୍ଡ । ସମସ୍ତ ବିଦ୍ରୋହୀ ସେ ସମ୍ପର୍କରେ ସମ୍ପୂର୍ଣ୍ଣ ଅବିହିତ ଥିଲେ ସୁଦ୍ଧା ଚରମ ସଂଗ୍ରାମକୁ ଲମ୍ଫ ପ୍ରଦାନ କରିଥିଲେ । ସାମୁହିକ ଚା ପାନ ବର୍ଜନ ସମ୍ବାଦରେ କର୍ତ୍ତୃପକ୍ଷ ହୋଇଥିଲେ ହତବାକ୍ ।

ସରକାର ସେଥିପ୍ରତି କୌଣସି ଗୁରୁତ୍ୱ ନ ଦେବାର ଛଳନା କରି ତଳିଆ କର୍ମଚାରୀମାନଙ୍କୁ ପଠାଗଲା ବିଦ୍ରୋହୀମାନଙ୍କ ସହ ଆଲୋଚନା କରିବା ପାଇଁ, ଉଦ୍ୟମ ନିଷ୍ଫଳ ହେଲା ଦିନ ଗୋଟାଏ ପର୍ଯ୍ୟନ୍ତ । ସେହି ଅବସ୍ଥା ରହିବା ପରେ ରିଅର ଆଡ୍‌ମିରାଲ୍ ର୍‍ୟାଟ୍‌ଟ୍ରେ ପହଞ୍ଚିଲେ ସେଠାରେ । ସେ ଥିଲେ ସିନିୟର୍ ଫ୍ଲାଗ୍ ଅଫିସର । ସେ ଭାବିଥିଲେ. ପୁରୁଣା ଚାଲ ଖୋଜି ସେ ଭଣ୍ଡୁର କରିଦେବେ ବିଦ୍ରୋହକୁ । ୧୯୪୪ ବିଦ୍ରୋହକୁ ନାନାଦି ଷଡ଼ଯନ୍ତ୍ର କରି କଠୋର ଓ ନିର୍ମମ ଭାବରେ ଦବେଇ ଦେଇଥିବାରୁ ର୍‍ୟାଟ୍‌ଟ୍ରେର ମୁହଁ ବଢ଼ି ଯାଇଥିଲା । ତାହାର ସେହି ବାହାଦୂରୀ ପାଇଁ ସରକାର ତାଙ୍କୁ ଦେଇଥିଲା ପ୍ରମୋଶନ୍ । ନରମ ଗଳାରେ ବିଦ୍ରୋହୀ ନେତାମାନଙ୍କୁ କହିଲା- କମାଣ୍ଡର କିଙ୍ଗକୁ ଏଥର ବଦଳି କରାଯିବ ଏବଂ ତାଙ୍କ ସ୍ଥାନରେ ଅବସ୍ଥାପିତ କରାଯିବ କ୍ୟାପ୍‌ଟେନ୍ ଇଜିଗୋ ଜୋନ୍‌ସ୍ଙ୍କୁ ଏବଂ ଖାଦ୍ୟପେୟର ଯଥେଷ୍ଟ ଉନ୍ନତି କରାଯିବ । ''ତୁମ୍ଭେମାନେ ଫେରିଯାଅ ବ୍ୟାରାକ୍‌କୁ'' । ମୂଳରୁ ଶେଷ ପର୍ଯ୍ୟନ୍ତ ର୍‍ୟାଟ୍‌ଟ୍ରେର କଥାରୁ ଜଣାଯାଉଥିଲା ଯେପରିକି ସେ ଛୋଟ ପିଲାଙ୍କ ସାଙ୍ଗରେ କଥା ହେଉଛି ଯେଉଁମାନଙ୍କୁ ମିଠେଇ ଦେଇ ଭୁଲେଇ ହେବ । ଚା' ପାନ ବା ନିକୃଷ୍ଟ ଖାଦ୍ୟ ବିରୁଦ୍ଧରେ ଆରମ୍ଭ ହୋଇଥିବା ସେହି ଆନ୍ଦୋଳନ ପଛରେ ଯେଉଁ ଗଭୀର ବିଦ୍ରୋହାତ୍ମକ ଯୋଜନା ରହିଥିଲା ତାହା ଯେ ଧୂର୍ତ୍ତ ର୍‍ୟାଟ୍‌ଟ୍ରେକୁ ଅଜ୍ଞାତ ଥିଲା, ତାହା ନୁହେଁ । ଆନ୍ଦୋଳନର ଭୟାବହତା ସେ ଉତ୍ତମ ରୂପେ ଜାଣିଥିବାରୁ ହିଁ ସେ ତାକୁ ହାଲୁକା ବା ଲଘୁ କହିବାକୁ ସେ ଭଳି ଫାଲ୍‌ତୁ କଥାଗୁଡ଼ିକ କହିଥିଲା । କିନ୍ତୁ ତାର ଫଳ ହେଲା ଓଲଟା, କାରଣ ରାଟ୍‌ଟ୍ରେ, କିଂ କ ଇନିଗୋ ଜୋନ୍‌ସ ପ୍ରଭୃତି ତିନିଜଣଙ୍କ ମଧ୍ୟରୁ କେହି ଜଣେ ହେଲେ ନୌସୈନିକଙ୍କ ନିକଟରେ ପ୍ରିୟ ନଥିଲେ ।

ସେହି ର୍‍ୟାଟ୍‌ଟ୍ରେ ୧୯୪୪ ବିଦ୍ରୋହରେ କଣ ନ କରିଥିଲା ? ତାହାରି ନିର୍ଦ୍ଦେଶରେ ହୋଇଥିଲା ଏମ୍.ଆର୍. ବାରାକ୍‌ସ ଓ କ୍ୟାସଲ୍ ବାରାକ୍‌ରେ ଗୁଳି ଚାଳନା ଏବଂ ସାଢ଼େ ପାଞ୍ଚ ହଜାର ବିଦ୍ରୋହୀଙ୍କୁ ମୁଲତାନ ବନ୍ଦୀ ଶିବିରରେ ଦିଆଯାଇଥିଲା ଯାବଜ୍ଜୀବନ କାରାଦଣ୍ଡ । ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ ସେଠାରେ ହତ୍ୟା କରାଯାଇଥିଲା । ବୀରାଙ୍ଗନା ନୌବିଦ୍ରୋହିଣୀ ଅନୁଭା ଓ ଉର୍ମିଳାଙ୍କ ଉପରେ ହୋଇଥିବା ଅତ୍ୟାଚାର ଏବଂ ଶେଷରେ ଫାୟାରିଂ ସ୍କ୍ୱାଡ୍‌ରେ ସେ ଦୁଇଜଣଙ୍କୁ ନିର୍ମମ ହତ୍ୟା କିଏ ବା ଭୁଲି ପାରିବ ? ସେହି ରାଟ୍‌ଟ୍ରେ କିଂ, ଇନିଗୋଜୋନ୍‌ସ ଆଦି ମହାପୁରୁଷର ଅଭିନୟ କରୁଛନ୍ତି ।

ର୍‍ୟାଟ୍‌ଟ୍ରେର ଆଗମନ ସମ୍ବାଦ ଶୁଣିବା ସଙ୍ଗେ ସଙ୍ଗେ 'ତଲଓ୍ୱାର'ରେ ସୃଷ୍ଟି ହୋଇଥିଲା ପ୍ରବଳ ଉତ୍ତେଜନା । କ୍ରୁଦ୍ଧ ବିଦ୍ରୋହୀ ଗଣ ସଙ୍ଗେ ସଙ୍ଗେ ଏକତ୍ରିତ ହୋଇ ସ୍ଲୋଗାନ୍ ଦେଲେ No Food, No Work, କିନ୍ତୁ ସେହି ନିରୀହ ସ୍ଲୋଗାନ୍ ବଦଳିଗଲା ରାଜନୈତିକ ଧ୍ୱନି ଆଡ଼କୁ 'ଇନ୍‌କିଲାବ୍ ଜିନ୍ଦାବାଦ୍' , 'ନେତାଜୀ ଅମର ରହେ' ଆଜାଦ୍ ହିନ୍ଦ୍ ଜିନ୍ଦାବାଦ, ଜୟ ହିନ୍ଦ, ଜୟ ହିନ୍ଦ ଇତ୍ୟାଦି, ର୍‍ୟାଟ୍‌ଟ୍ରେ ପଳାୟନ କଲା ।

ସଂନ୍ଧ୍ୟା ଭିତରେ ନୌବାହିନୀର ବିଦ୍ରୋହ ସମ୍ବାଦ ବାରାକ୍ ସୀମା ଅତିକ୍ରମ କରି ବମ୍ବେ ନଗରୀ ଭିତରକୁ ପ୍ରବେଶ କଲା । ବମ୍ବେ ନଗରବାସୀ ସେହି ସମ୍ବାଦରେ ସ୍ତବ୍ଧ ହୋଇଗଲେ । ''ଜାତୀୟ ବାହିନୀ'' ମୁକ୍ତି ଆନ୍ଦୋଳନ ପାଇଁ ବମ୍ବେ ସହର ସେତେବେଳେ ପୁରା ସରଗରମ ଥାଏ । ନୌବିଦ୍ରୋହ ସମ୍ବାଦ ସ୍ୱାଭାବିକ ଭାବରେ ଉତ୍ତେଜନା ବଢ଼ାଇ ଦେଲା । କିନ୍ତୁ ବମ୍ବେ ନଗରୀର ଅବସ୍ଥିତି ବିଭିନ୍ନ ସମ୍ବାଦ ପତ୍ର ଓ ସମ୍ବାଦ ସରବରାହ ସଂସ୍ଥା ଗୁଡ଼ିକ ନୌବିଦ୍ରୋହ ସମ୍ବାଦକୁ ଭିନ୍ନ ଦୃଷ୍ଟିରେ ଦେଖିଲେ । ଅଧିକାଂଶ ବଡ଼ ବଡ଼ ସମ୍ବାଦ ପତ୍ର ଥିଲା ବ୍ରିଟିଶ ମାଲିକାନା ଓ ଦେଶୀ ଶିଳ୍ପପତି ମାନଙ୍କ ହାତରେ, କେତେକ ସରକାରୀ ସମର୍ଥକ ଏବଂ ନିଜକୁ ଜାତୀୟବାଦୀ ବୋଲି ଦାବୀ କରୁଥିବା ସମ୍ବାଦପତ୍ର ଗୁଡ଼ିକ କଂଗ୍ରେସ ଦଳର ମୁଖପାତ୍ର ରୂପେ କାର୍ଯ୍ୟ କରୁଥିଲେ ଯେଉଁମାନଙ୍କ ରାଜନୈତିକ ଆଭିମୁଖ୍ୟ ଥିଲା ତଥାକଥିତ ଅହିଂସା ଓ ଆପୋଷ ରାଜନୀତି । ସେମାନେ ନୌବିଦ୍ରୋହକୁ ସମର୍ଥନ କରିବାର ପ୍ରଶ୍ନ ନଥିଲା । ଏକମାତ୍ର ସ୍ୱାଧୀନ ଚେତା ସମ୍ବାଦପତ୍ର 'ଫ୍ରି ପ୍ରେସଜର୍ଣ୍ଣାଲ' ଓ ବାମପନ୍ଥୀ କାଗଜ 'ବ୍ଲିଜ୍' ପତ୍ରିକା ନୌବିଦ୍ରୋହର ରାଜନୈତିକ ଗୁରୁତ୍ୱ ଉପଲବ୍ଧ କରୁଥିଲା ଏବଂ ବିଦ୍ରୋହ ସମ୍ବାଦ ଉପଯୁକ୍ତ ଗୁରୁତ୍ୱ ଦେଇ ବିସ୍ତୃତ ଭାବେ ପ୍ରକାଶ କରିଥିଲା, ଫ୍ରି ପ୍ରେସ୍ ଜର୍ଣ୍ଣାଲ ତ ବିଦ୍ରୋହୀ ନେତାମାନଙ୍କ ଅଭିମତ ପ୍ରକାଶ କରିବାକୁ ତାହାର ସ୍ୱତନ୍ତ୍ର ସ୍ତମ୍ଭ ବା କଲମ୍ ମଧ୍ୟ ଛାଡ଼ି ଦେଇଥିଲେ ।

୧୯ ତାରିଖ ସକାଳେ 'ତଲୱ୍ୟାର' ଜାହାଜର ବିଦ୍ରୋହୀମାନଙ୍କ ଉପରେ ଗୁଳିଚାଳନା ହେବାରୁ ତାହାର ପ୍ରତିବାଦରେ କ୍ୟାସେଲ୍ ବ୍ୟାରାକ୍‌ରେ ମଧ୍ୟ 'ଖାନାବନ୍ଦ' ଆନ୍ଦୋଳନ ଆରମ୍ଭ ହୋଇଗଲା । କ୍ରମେ ଅନ୍ୟ ବ୍ୟାରାକ୍‌ରେ 'ଖାନାବନ୍ଦ' ଆନ୍ଦୋଳନ ଆରମ୍ଭ ହୋଇଗଲା । କ୍ରମେ ଅନ୍ୟ ବ୍ୟାରାକ୍‌ରେ 'ଖାନାବନ୍ଦ' ହେବା ସଙ୍ଗେ ସଙ୍ଗେ ବିଦ୍ରୋହ ମଧ୍ୟ ଘୋଷିତ ହୋଇଗଲା ।

'ତଲ୍‌ୱ୍ୟାର' ଜାହାଜରେ ବିଦ୍ରୋହ ଆରମ୍ଭ ହେବାର ମାତ୍ର ଅଡ଼ଚାଳିଶି ଘଣ୍ଟା ଭିତରେ ବମ୍ବେ ଉପକୂଳରେ ଥିବା ଏଗାର ଗୋଟି ନାଭାଲ ବେସ୍‌ରେ କୋଡ଼ିଏ ହଜାର ନାଭାଲ ରେଟିଂ ବିଦ୍ରୋହରେ ଯୋଗଦେଲେ । ବନ୍ଦରରେ ଥିବା ସମସ୍ତ ଜାହାଜରେ ବ୍ରିଟିଶ୍ ପତାକା ସ୍ଥାନରେ ଉଦ୍‌ଭିନ୍ନ ହେଲା ତ୍ରିରଙ୍ଗା ପତାକା । ମୋଟ ଚଉରାଳିଶିଟି ଜାହାଜ, ଚାରିଗୋଟି ମେଜର ବେସ୍, ଚାରିଗୋଟି ଫ୍ଲୋଟିଲା ଓ ସମୁଦ୍ର ତୀରବର୍ତ୍ତୀ କୋଡ଼ିଏଟି ସାମରିକ ଅନୁଷ୍ଠାନ ବିଦ୍ରୋହରେ ଯୋଗ ଦେଲେ ।

ସେତେବେଳେ 'ଖାଇବାର-୨' ନାମକ ଯୁଦ୍ଧ ଜାହାଜ ଫେରୁଥିଲା ଇଉରୋପରୁ କରାଚୀ ଅଭିମୁଖେ । 'ତଲୱ୍ୱାର' ଜାହାଜର ବେତାର ସଙ୍କେତ ପାଇ 'ଖାଇବାର' ମଧ୍ୟ ବମ୍ବେରେ ପହଞ୍ଚିଲା ଏବଂ ବିଦ୍ରୋହୀନାବିକମାନେ ସେମାନଙ୍କ ଇଂରେଜ ଅଫିସରଙ୍କୁ ବନ୍ଦୀ କରି ବିଦ୍ରୋହ ଘୋଷଣା କରିଦେଲେ ।

ତେଣେ କ୍ୟାସେଲ ବ୍ୟାରାକରେ ଦଳେ ବିଦ୍ରୋହୀ ସୈନ୍ୟ ବାହାରି ପଡ଼ିଲେ ରାସ୍ତା ଉପରକୁ, କଣ୍ଠରେ ସେମାନଙ୍କର କ୍ରାନ୍ତିକାରୀ ସ୍ଲୋଗାନ୍ । ଦଳେ ନୌସୈନ୍ୟ ଉଦାତ୍ତ କଣ୍ଠରେ ଆହ୍ୱାନ ଦେଲେ ''ହେ କ୍ୟାସେଲ ବ୍ୟାରାକର ବନ୍ଧୁଗଣ ତୁମ୍ଭମାନଙ୍କ ଜୀବନର ସର୍ବଶ୍ରେଷ୍ଠ ସମୟ ବ୍ରିଟିଶ୍ ପ୍ରଭୁମାନଙ୍କୁ ରକ୍ଷା କରିବାକୁ ଯୁଦ୍ଧ କରି ଆସିଲ । ସେମାନେ ତୁମ୍ଭମାନଙ୍କ ଭାତୃରକ୍ତରେ ତାହାର ପୁରସ୍କାର ଦେଉ ଅଛନ୍ତି । ତଲଓ୍ୱାର ଜାହାଜରେ ବିଦ୍ରୋହୀ ସୈନ୍ୟମାନଙ୍କୁ ବୟନଟ୍‌ର ଆଘାତ ସେମାନଙ୍କୁ କ୍ଷତ ବିକ୍ଷତ କରିଅଛି । ତୁମ୍ଭେମାନେ ଏହି ଅତ୍ୟାଚାରର ମୂକ ଦର୍ଶକ ହୋଇ ବସି ନ ରହି ଆଗେଇ ଆସ ଏହାର ପ୍ରତିଶୋଧ ନେବା ପାଇଁ । ସ୍ୱାଧୀନତା ଅର୍ଜନର ଏହି ଯୁଦ୍ଧରେ ଲମ୍ଫ ପ୍ରଦାନ କର ଭାଇମାନେ ।''

ଉନ୍ମତ୍ତ ହୋଇ ବାହାରି ପଡ଼ିଲେ ଶହ ଶହ ରେଟିଂ ନୌସୈନ୍ୟଗଣ । ବିଦେଶୀ ଶାସନର ଚିହ୍ନ ବହନକରି ପ୍ରତ୍ୟେକ ପ୍ରତିଷ୍ଠାନ ବା ଗୃହ ସେମାନଙ୍କର କ୍ରୋଧାଗ୍ନିର ଶିକାର ହେଲା । ଇଂରେଜ ଲୋକଙ୍କୁ ଦେଖିବା ସଙ୍ଗେ ସଙ୍ଗେ କ୍ରୁଦ୍ଧ ବିଦ୍ରୋହୀମାନେ ସେମାନଙ୍କୁ ଆକ୍ରମଣ କଲେ । ବିଦେଶୀ ବ୍ୟବସାୟ ପ୍ରତିଷ୍ଠାନ ମଧ୍ୟ ଆକ୍ରମଣରୁ ଛାଡ଼ ପାଇଲେ ନାହିଁ । ଆମେରିକା ପାଠାଗାର ଉପରେ ଉଡୁଥିବା ଆମେରିକା ପତାକା ଓହ୍ଲାଇ ଦେଇ ସେଠାରେ ଉଡ଼ାଇ ଦେଲେ ତ୍ରିରଙ୍ଗା ପତାକା । ଇଂରେଜ ଅଧୀନସ୍ଥ ସଂଧ୍ୟା ସମ୍ବାଦ ପତ୍ରରେ ପ୍ରଚାରିତ ହେଲା ନୌସେନ୍ୟମାନଙ୍କୁ ରକ୍ତର ନିଶା ଘାରିଗଲାଣି ।

ଆନ୍ଦୋଳନର ତୀବ୍ରତା ବଢ଼ିବା ସଙ୍ଗେ ସଙ୍ଗେ କେବଳ ସୈନିକ ନୁହେଁ କେତେକ ଭାରତୀୟ ସାମରିକ ଅଫିସର ମଧ୍ୟ ଯୋଗ ଦେଲେ ଏବଂ କେବଳ ବମ୍ବେ ନୌବାହିନୀର ନୁହେଁ କରାଚୀ ନୌବାହାରରେ ଥିବା 'ହିନ୍ଦୁସ୍ତାନ' 'ବାହାଦୂର' 'ହିମାଳୟ' 'ଚମ୍ପକ' ଏବଂ 'କରଭେଟ ତ୍ରିଭାଙ୍କୁଡ଼' ଜାହାଜ ମଧ୍ୟ ବିଦ୍ରୋହରେ ଯୋଗ ଦେଲେ, କରାଚୀ ଆନ୍ଦୋଳନରେ ନେତୃତ୍ୱ ନେଲେ ସର୍ଦ୍ଦାର ବିନ୍ଧ୍ୟା ସିଂ, କରାଚୀ ଉତ୍ତାଳ ଓ ଉଦ୍ଦାମ ହୋଇ ଉଠିଲା ।

କଲିକତା ମଧ୍ୟ ବିଦ୍ରୋହ ସଂକ୍ରମଣରୁ ମୁକ୍ତ ନଥିଲା । ସବୁ ଜାହାଜ, ବ୍ୟାରାକ୍ ଓ ଅନ୍ୟାନ୍ୟ ସାମରିକ ପ୍ରତିଷ୍ଠାନରେ ବିଦ୍ରୋହ ଗୁଞ୍ଜରଣ ଅନୁରଣିତ ହେଲା । ରୟାଲ୍ ଇଣ୍ଡିଆନ ନାଭିର ନାମକରଣ ବଦଳାଇ କରାଗଲା ''ଇଣ୍ଡିଆନ୍ ନେସ୍‌ନାଲ ନାଭି'' ।

ସେତେବେଳେ ବମ୍ବେରେ ଅବସ୍ଥାନ କରୁଥିବା ସର୍ଦ୍ଦାର ପଟେଲ ମଧ୍ୟ ସମ୍ବାଦପତ୍ରରୁ ବିଦ୍ରୋହ ଶୁଣି ବିବ୍ରତ ହୋଇ ପଡ଼ିଲେ । ତାଙ୍କର ଇଚ୍ଛା ଥିଲା ଏହି ବିଦ୍ରୋହରକୁ ବାମପନ୍ଥୀ ଶକ୍ତିକୁ ବିଚ୍ଛିନ୍ନ କରିବା ପାଇଁ । କିନ୍ତୁ ସେତେବେଳକୁ ବମ୍ବେର ସମଗ୍ର ନୌବହର ବିଦ୍ରୋହୀମାନଙ୍କ ନିୟନ୍ତ୍ରଣକୁ ଆସି ଯାଇଥିଲା । ଫ୍ରି ପ୍ରେସ୍ ଜର୍ଣ୍ଣାଲ୍ ଓ ଅନ୍ୟାନ୍ୟ ପତ୍ର ପତ୍ରିକାରେ ନୌବିଦ୍ରୋହର ବିସ୍ତୃତ ସମ୍ବାଦମାନ ପ୍ରକାଶିତ ହେବା ପରେ ଜାତୀୟ ନେତୃବୃନ୍ଦ ଉଦ୍‌ବିଗ୍ନ ହୋଇ ପଡ଼ିଲେ ସତ୍ୟ କିନ୍ତୁ ସେଥିପ୍ରତି ଦୃଷ୍ଟିଦେବା ଅପେକ୍ଷା ବ୍ରିଟିଶ୍ ଶାସକବର୍ଗଙ୍କଠାରୁ କ୍ଷମତା ହସ୍ତାନ୍ତର କିଛି କରିବା ଗୁରୁତ୍ୱ ପୂର୍ଣ୍ଣ ଓ ଲାଭଜନକ ମନେ

ହୋଇଥିଲା । ସାମରିକ ବିଦ୍ରୋହ ସାଙ୍ଗକୁ ଦେଶର ବିଭିନ୍ନ ଅଞ୍ଚଳରେ ସୃଷ୍ଟି ହୋଇଥିବା ବେସାମରିକ ପୋଲିସ୍ ବାହିନୀର ବିଦ୍ରୋହ ବ୍ରିଟିଶ୍ ଶାସକବର୍ଗଙ୍କୁ ଏଭଳି ବିବ୍ରତ ଓ ଆତଙ୍କିତ କରି ଦେଇଥିଲା ଯେ ସେମାନେ ଜନସାଧାରଣଙ୍କ ଦୃଷ୍ଟିକୁ ଅନ୍ୟଆଡ଼କୁ ନେଇଯିବା ପାଇଁ ଯଥପରୋନାସ୍ତି ଉଦ୍ୟମ କରିଥିଲେ ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ବମ୍ବେରେ ନୌବିଦ୍ରୋହ ହେବା ଏବଂ ଅନ୍ୟାନ୍ୟ ସାମରିକ ଓ ବେସାମରିକ ବାହିନୀରେ ବିଦ୍ରୋହ ଆରମ୍ଭ ସଙ୍ଗେ ସଙ୍ଗେ ତତ୍‌କାଳୀନ ପ୍ରଧାନ ସେନାପତି ସାର୍ କ୍ଲଡ୍ ଅଚିନଲେକ୍ ବ୍ରିଟିଶ୍ ପ୍ରଧାନମନ୍ତ୍ରୀଙ୍କୁ ଏକ ଜରୁରୀ ବାର୍ତ୍ତାରେ ଜଣାଇଲେ ଯେ ଭାରତର ସାମରିକ ଓ ବେସାମରିକ ବାହିନୀରେ ସୃଷ୍ଟି ହୋଇଥିବା ଅସନ୍ତୋଷ ଦୃଷ୍ଟିରୁ ଭାରତର ସ୍ୱାଧୀନତା ସମ୍ପର୍କରେ କୌଣସି ଏକ ନିର୍ଦ୍ଦିଷ୍ଟ ପଦକ୍ଷେପ ଯଥା ଶୀଘ୍ର ଗ୍ରହଣ କରିବା ଆବଶ୍ୟକ, ତାହା ପରେ ପରେ ହିଁ ବ୍ରିଟିଶ୍ ପ୍ରଧାନମନ୍ତ୍ରୀ ୧୯୪୮ ଜୁନ ମାସ ଭିତରେ ଭାରତବାସୀଙ୍କୁ ଭାରତର ଶାସନ କ୍ଷମତା ହସ୍ତାନ୍ତର କରାଯିବ ବୋଲି ଘୋଷଣା କରିଥିଲେ ଏବଂ ୧୯୪୨ ଭାରତ ଛାଡ଼ ଆନ୍ଦୋଳନରେ ଗିରଫ ହୋଇଥିବା ନେତାମାନଙ୍କୁ କାରାମୁକ୍ତ କରିଥିଲେ ।

କଂଗ୍ରେସ ତାହାର ଜୀବଦ୍ଦଶା ମଧ୍ୟରେ କେବେହେଲେ କୌଣସି ପ୍ରତ୍ୟକ୍ଷ ସଂଗ୍ରାମୀ ଆନ୍ଦୋଳନ କରି ନଥିଲା । ଅହିଂସା ଅସହଯୋଗ ଆନ୍ଦୋଳନରେ ତାହାର ସମସ୍ତ ସଂଗ୍ରାମ ସୀମାବଦ୍ଧ ଥିଲା । ସେହି ଅହିଂସ ନିରୁପଦ୍ରବ ଆନ୍ଦୋଳନ ମଧ୍ୟ ସେମାନଙ୍କୁ ଯେତିକି କ୍ଲାନ୍ତ ଶ୍ରାନ୍ତ କରି ପକାଇଥିଲା; ଦ୍ୱିତୀୟ ମହାଯୁଦ୍ଧ ସମାପ୍ତ ହେବା ପରେ ପରେ ବ୍ରିଟିଶ୍ ସାମ୍ରାଜ୍ୟବାଦର ଦୟନୀୟ ଅର୍ଥନୀତିକ ଓ ସାମରିକ ଅବସ୍ଥା ଦୃଷ୍ଟିରୁ ସେମାନେ ଅଧିକ ଦିନ ଭାରତ ଶାସନ ନିଜ ହାତରେ ରଖିପାରିବା ଆଶା କ୍ରମେ ଯେମିତି କ୍ଷୀଣ ହୋଇ ଆସୁଥିଲା ଏସବୁ ପରିସ୍ଥିତିକୁ ବିଚାର କରି କଂଗ୍ରେସ ନେତୃମଣ୍ଡଳୀ ଯଥା ଶୀଘ୍ର ଶାସନ କ୍ଷମତା ଦଖଲ କରିବାକୁ ଲାଳାୟିତ ହୋଇ ପଡ଼ିଥିଲେ ଏବଂ ସେଥିଲାଗି ଦେଶ ବିଭାଜନ ସେମାନଙ୍କ ଦୃଷ୍ଟିରେ ଏକ ଦୁର୍ଭାଗ୍ୟଜନକ ଓ ବିପଦ୍‌ଜନକ କାର୍ଯ୍ୟ ବୋଲି ମନେ କଲେ ନାହିଁ । ଛଳେ ବଳେ କୌଶଳେ କ୍ଷମତା ଦଖଲ ହିଁ ସେମାନଙ୍କର ଏକମାତ୍ର ଲକ୍ଷ୍ୟ ସ୍ଥଳ ଭାବେ ବିବେଚିତ ହୋଇଥିଲା ଏବଂ ସେହି କ୍ଷମତା ହସ୍ତାନ୍ତର ଯଥା ସମ୍ଭବ ନିରୋଳାରେ ଓ ସୁରୁଖୁରୁରେ ହୋଇଯିବା ସେମାନେ ଚାହୁଁଥିଲେ । ଏପରି ସ୍ଥଳେ ସେମାନେ ବା କାହିଁକି ସାମରିକ ବିଦ୍ରୋହ ଭଳି ଏକ ଅତ୍ୟନ୍ତ ବିପଦପୂର୍ଣ୍ଣ ପଦକ୍ଷେପକୁ ସମର୍ଥନ କରି ସେମାନଙ୍କର ବହୁ ଇପ୍ସିତ ଆକାଂକ୍ଷିତ ଶାନ୍ତିପୂର୍ଣ୍ଣ କ୍ଷମତା ହସ୍ତାନ୍ତରର ମସୃଣ ମସନଦକୁ କଣ୍ଟକିତ କରିବେ ଏବଂ ନିକଟ ଭବିଷ୍ୟତରେ ଭାରତ ବା ପାକିସ୍ତାନର ଶାସନ ଦାୟିତ୍ୱ ସେହିମାନଙ୍କ ଉପରେ ପଡ଼ିବାର ନିଶ୍ଚୟତା ଥିବାବେଳେ ଶାସନର ମୁଖ୍ୟ ସହାୟକ ସାମରିକ ବାହିନୀ ମଧ୍ୟରେ ବିଦ୍ରୋହରୂପୀ ବିଶୃଙ୍ଖଳାକୁ ଉତ୍ସାହିତ କରିବା ଉଚିତ୍, କାରଣ ଭାରତ ସଶାସକବର୍ଗଙ୍କ ପାଇଁ ବମ୍ବେ

ନୌବହର ଏବଂ ପାକିସ୍ତାନ ପାଇଁ କରାଚୀ ନୌବହର ସମାନଭାବେ ଗୁରୁତ୍ୱପୂର୍ଣ୍ଣ ଥିବାରୁ ସେହି ସ୍ଥାନ ଦୁଇଟିରେ ସାମରିକ ବିଦ୍ରୋହର ପ୍ରଭାବ ଉଭୟ ସରକାର ପାଇଁ ସୁଦୂର ପ୍ରସାରୀ ଥିଲା । ନୌ ବିଦ୍ରୋହ ସମ୍ପର୍କରେ କଂଗ୍ରେସ ଓ ଲିଗ୍ ଯେଉଁ ପଦକ୍ଷେପ ନେଇଥିଲେ ବା ଆଚରଣ ପ୍ରଦର୍ଶନ କରିଥିଲେ ସେଥିରୁ ସେହି ଦୁଇଟି ଦଳର ସେମାନଙ୍କର ପ୍ରତିକ୍ରିୟାଶୀଳ ମନୋଭାବର ଯଥେଷ୍ଟ ପରିଚୟ ମିଳେ ।

କିନ୍ତୁ ବିଦ୍ରୋହର ସ୍ୱତଃସ୍ଫୂର୍ତ୍ତ ଉଗ୍ରତା ଓ କ୍ରମବର୍ଦ୍ଧମାନ ଉଦ୍ଦାମତା କୌଣସି ନେତାଙ୍କୁ ଅପେକ୍ଷା କରି ନଥିଲା, କେଉଁଠାରେ ମଧ୍ୟ ଅପେକ୍ଷା କରେ ନାହିଁ । ବିଦ୍ରୋହ କ୍ରମେ ବମ୍ବେର ଅବସ୍ଥାପିତ ସମସ୍ତ ଜାହାଜକୁ ବ୍ୟାପିଗଲା, ''ବେରାର' ମୋତି ''ନୀଲମ୍'' ଯମୁନା କୁମାୟନ୍ ଅଉଧ' ,' ମାଡ୍ରାଜ' 'ସିନ୍ଧ', ମରାଠା ତୀର, କନୌଜ, ଆସାମ୍ ନର୍ମଦା, କ୍ଲାଇଭ୍ ଓ ଲେରେନ୍ସ ଇତ୍ୟାଦି ମୋଟ ୭୪ଟି ଜାହାଜ ବିଦ୍ରୋହରେ ଯୋଗଦେଲେ । ଜାତୀୟ ନେତୃବୃନ୍ଦଙ୍କର ନୌବିଦ୍ରୋହୀମାନଙ୍କ ବିରୁଦ୍ଧରେ ରାଜନୈତିକ ଅଭିସନ୍ଧି ଆରୋପକୁ ବ୍ୟର୍ଥ କରିବା ପାଇଁ ଷ୍ଟ୍ରାଇକ କମିଟିର ସିଦ୍ଧାନ୍ତ ଅନୁସାରେ ବିଦ୍ରୋହୀ ଜାହାଜମାନଙ୍କରେ ତ୍ରିରଙ୍ଗା ପତାକା ସହ ମୁସ୍‌ଲିମ୍ ଲିଗର ସବୁଜ, କମ୍ୟୁନିଷ୍ଟ ନାଲି ପତାକାକୁ ଏକତ୍ର ଉଡ଼ାଇ ଦିଆଯିବା ଫଳରେ ବିଦ୍ରୋହୀମାନଙ୍କର ରାଜନୈତିକ ପରିପକ୍ୱତା ଏବଂ ଜାତୀୟ ସଂହତି ଆଦର୍ଶରେ ସେମାନଙ୍କ ପ୍ରଗାଢ଼ ବିଶ୍ୱାସକୁ ନିର୍ଭୁଲ ଭାବେ ପ୍ରତିପାଦିତ ହେଲା । ସେମାନେ ଠିକ୍ ବୁଝିଗଲେ ଯେ ଦେଶମୁକ୍ତି ଆନ୍ଦୋଳନ ଭଳି ଏକ କଠିନ କୃଚ୍ଛ ସାଧନାରେ ମହାଯଜ୍ଞ ରେ ଜାତି ଧର୍ମ ଗୋଷ୍ଠୀ ନିର୍ବିଶେଷରେ ସମସ୍ତଙ୍କର ସଂହତି ଓ ଏକତା ଏକାନ୍ତ ଅପରିହାର୍ଯ୍ୟ, ତଥାପି ଜାତୀୟ ନେତୃବୃନ୍ଦ ଭିନ୍ନ ପ୍ରକାରେ ଭାବୁଥିଲେ ।

ଫେବୃୟାରୀ ୧୮ରେ ମହା ବିଦ୍ରୋହ ଆରମ୍ଭ ହୋଇଥିବା ସମ୍ବାଦ ଲଣ୍ଡନରେ ପହଞ୍ଚିବା ସଙ୍ଗେ ସଙ୍ଗେ ୧୯ ତାରିଖରେ ଅଟଲୀ ଭାରତର ସ୍ୱାଧୀନତା ବା କ୍ଷମତା ହସ୍ତାନ୍ତର ପାଇଁ ନିର୍ଦ୍ଦିଷ୍ଟ ତାରିଖ ଘୋଷଣା ହେବା ଫଳରେ କ୍ଷମତା ଲାଭର ଲାଳସା କଂଗ୍ରେସ ଓ ମୁସ୍‌ଲିମ ଲିଗ ନେତାମାନଙ୍କର ଦୁର୍ବାର ହୋଇ ପଡ଼ିବା ବିଷୟ ପୂର୍ବରୁ ଆଲୋଚିତ ହୋଇଛି । ଏହା ମଧ୍ୟ ଘୋଷିତ ହୋଇଥିଲା ଯେ ବିଲାତି ମନ୍ତ୍ରୀମଣ୍ଡଳର ତିନିଜଣିଆ ସଭ୍ୟ ଭାରତ ଯାଇ ରାଜନେତାଙ୍କ ସହ ନୂତନ ସମ୍ବିଧାନ ସଭା ଗଠନ ଓ କ୍ଷମତା ହସ୍ତାନ୍ତରର ବିସ୍ତୃତ କାର୍ଯ୍ୟକ୍ରମ ସ୍ଥିର କରିବେ । ଅବଶ୍ୟ ମନ୍ତ୍ରୀ ମଣ୍ଡଳର ତିନି ପ୍ରତିନିଧି ବା 'କ୍ୟାବିନେଟ୍ ମିଶନ' ଭାରତ ପାଇଁ ଯେଉଁ ଯୋଜନା ପ୍ରସ୍ତୁତ କରି ଆଣିଥିଲେ - ସେଥିରେ ଅଖଣ୍ଡ ଭାରତର ସ୍ପଷ୍ଟ ସଙ୍କେତ ରହିଥିଲା କିନ୍ତୁ କଂଗ୍ରେସ ସଭାପତି ଆଜାଦ୍‌ଙ୍କ ଛଡ଼ା ଆଉ ସବୁ କଂଗ୍ରେସ ଓ ଲିଗ୍ ନେତା ସେଥିପ୍ରତି ଭ୍ରୁକୁଞ୍ଚନ କରୁଥିଲେ ।

ନୌବିଦ୍ରୋହୀମାନେ ଆଶା କରୁଥିଲେ ଯେ ଅନ୍ତତଃ ବିପ୍ଳବୀ ଅରୁଣା ଆସଫ୍ ଅଲ୍ଲୀ ସେମାନଙ୍କୁ ପ୍ରକାଶ୍ୟ ସମର୍ଥନ କରି ବାହାରି ପଡ଼ିବେ ।

ଫେବୃୟାରୀ ୨୦ ତାରିଖ ଅପରାହ୍ନ ୩ଟା ବେଳେ ହଠାତ୍ ମିଲିଟାରୀ ପୋଲିସ୍ ଗାଡ଼ି ପହଞ୍ଚି ବ୍ୟାରାକ୍ ଅଞ୍ଚଳରେ ନିରସ୍ତ୍ରଥିବା ବିଦ୍ରୋହୀ ନୌସୈନିକ କେତେଙ୍କୁ ଗିରଫ କରି ନେଇଗଲେ, ଏହି ସମ୍ବାଦରେ ସର୍ବତ୍ର ଅଶାନ୍ତି ଓ ଉତ୍ତେଜନା ଭରିଗଲା ।

ଏହାର ପ୍ରତିବାଦେରେ ବମ୍ବେରେ ମିଳିତ ଶ୍ରମିକ ସଂଘ ଫେବୃୟାରୀ ୨୧ ଓ ୨୨ ଦୁଇଦିନ ପାଇଁ ବମ୍ବେରେ ସାଧାରଣ ଧର୍ମଘଟର ଡାକରା ଦେଲେ, ସରକାରୀ ପକ୍ଷ ସେହି ଅପ୍ରତ୍ୟାଶିତ ଜନ ସମର୍ଥନ ଦେଖି ପ୍ରଥମେ ହତବାକ୍ ହୋଇ ପଡ଼ିଲେ କିନ୍ତୁ କଂଗ୍ରେସ ଓ ଲିଗ୍‌ର ନୈତିକ ସମର୍ଥନ ସରାକାରୀ ପକ୍ଷରେ ରହିଛି ବୋଲି ଅନୁଭବ କରି ଦୃଢ଼ ଭାବରେ ସେହି ଧର୍ମଘଟର ମୁକାବିଲା କରିବାକୁ ସିଦ୍ଧାନ୍ତ ଗ୍ରହଣ କଲେ । ନୌବିଦ୍ରୋହୀଙ୍କ ବାରମ୍ବାର ନିବେଦନ ସତ୍ତ୍ୱେ କୌଣସି ରାଜନେତା ବମ୍ବେ ନ ଆସିବାରୁ ବା ସେମାନଙ୍କୁ ସାହାଯ୍ୟ ନ କରିବାରୁ ସରକାରୀ ପକ୍ଷର ବହପ ବଢ଼ିଗଲା । ଆଡମିରାଲ ର୍ୟାଟ୍‌ଗ୍ରେ ବମ୍ବେର ଧର୍ମଘଟ ଜନିତ ପରିସ୍ଥିତିର ମୁକାବିଲା କରିବାକୁ ସେଠାରେ ସାମରିକ ଆଇନ୍ ଜାରୀ କଲା ଏବଂ ନୌବାହିନୀର ସର୍ବୋଚ୍ଚ ଅଫିସର ଗଡଫ୍ରେ ସାମରିକ ଆଇନ ଜାରି କରି 'ଦେଖିଲା ମାତ୍ରେ ଗୁଳି' ଚଳାଇବା ନିର୍ଦ୍ଦେଶ ଦେଲା । ଫଳରେ ବମ୍ବେରେ ଚାଲିଲା ନରସଂହାର । କେବଳ ବିଦ୍ରୋହୀ ନୌସେନା ନୁହଁନ୍ତି ବମ୍ବେର ସାଧାରଣ ଜନତା ମଧ୍ୟ ସାମରିକ ଆଇନର ଶିକାର ହେଲେ । ବମ୍ବେ ରାଜରାସ୍ତାରେ ରକ୍ତର ନଦୀ ପ୍ରବାହିତ ହେଲା ।

ବମ୍ବେ, କରାଚୀ ଓ ପୁନାରେ ସେହି ଗୋଟିଏ ଦୃଶ୍ୟ । ବମ୍ବେର ପାରେଲ ବସ୍ତି ଓ ଡକୟାର୍ଡ଼ ଅଧିକ ବିଦ୍ରୋହୀ ସୈନ୍ୟ ନିହତ ହେଲେ । ସେହି ଅଞ୍ଚଳରେ ନୌସୈନ୍ୟଙ୍କର ପରିବାର ଗୁଡ଼ିକ ବାସ କରୁଥିବା ଅଧିକାଂଶ ଥିଲେ ବମ୍ବେ ଓ ମହାରାଷ୍ଟ୍ରର ଅଧିବାସୀ ।

ସେମାନଙ୍କ ମଧ୍ୟରୁ ଅଧିକାଂଶ 'ଖାଇବାର' ଜାହାଜର ନୌସୈନିକ ଥିଲେ ବେଶୀ । ଗୋଟିଏ ହିସାବ ଅନୁସାରେ ସେହି ଅଞ୍ଚଳରେ ବାସ କରୁଥିବା ପ୍ରାୟ ସାଢ଼େ ସାତ ହଜାର ଲୋକ ସାମରିକ କାର୍ଯ୍ୟାନୁଷ୍ଠାନର ଶିକାର ହୋଇଥିଲେ । (ନୌବାହିନୀର ଇତିହାସ- ଫଣୀ ଭୂଷଣ ଭଟ୍ଟାଚାର୍ଯ୍ୟ- ପୃଷ୍ଠା -୯୯)

ସେହି ବସ୍ତି ଦୁଇଟିର ମହିଳା ସମିତିର ନେତ୍ରୀ କମଳା ଡୋଣ୍ଡେଙ୍କର ଶରୀର ସାମରିକ ବାହିନୀର ଗୁଳିରେ ଛିନ୍ନ ଛତ୍ର ହୋଇଯାଇଥିଲା । ବିଦ୍ରୋହୀ ଜାହାଜ ଗୁଡ଼ିକରେ ଥିବା ବିଦ୍ରୋହୀ ସୈନ୍ୟମାନଙ୍କ ଖାଦ୍ୟ ଯୋଗାଇବାରେ ପ୍ରମୁଖ ଭୂମିକା ଗ୍ରହଣ କରିଥିବାରୁ ତାଙ୍କ ଉପରେ ସାମରିକ ବାହିନୀ ଅତ୍ୟନ୍ତ କ୍ରୁଦ୍ଧ ହୋଇଥିଲେ । ଏହି ସୁଯୋଗରେ ସେମାନେ ତାଙ୍କ ଉପରେ ପ୍ରତିଶୋଧ ନେଲେ ।

ବିଦ୍ରୋହୀ ତଲୱ୍ୟାର ଓ ନର୍ମଦା ଯୁଦ୍ଧ ଜାହାଜ ଏହାର ପ୍ରତିରୋଧ କରିବାକୁ ଉପକୂଳ ଆଡ଼କୁ ମାଡ଼ି ଆସିଲେ । ସେମାନଙ୍କ ପାଖରେ ଥିଲା ପ୍ରଚୁର ଅସ୍ତ୍ରଶସ୍ତ୍ର ଏବଂ ଦୂରଗାମୀ କମାଣ । ସେହି ଦୁଇଟି ଜାହାଜର ଗତିରୋଧ କରିବାକୁ ଉପକୂଳରେ ଗୋରା ସୈନ୍ୟମାନଙ୍କୁ

ନେଇ ଗଠିତ ''କିଂସ୍ ରୟାଲ ରାଇଫଲ'' ଓ ''ରାହାମ୍ ଲାଇଟ୍ ଇନ୍‌ଫେଣ୍ଟ୍ରି'' ଏବଂ ଦେଶଦ୍ରୋହୀ ''ଇଲେଭେନ୍ଥ୍ ଶିଖ ରେଜିମେଣ୍ଟ'' ଏକ ବ୍ୟୁହ ରଚନା କରିଥିଲେ, କେବଳ ମାତ୍ର ୱାଟର ଫ୍ରଣ୍ଟ ବସ୍ତିର କିୟଦଂଶ ବ୍ୟତୀତ ଅନ୍ୟ ସମସ୍ତ ଅଞ୍ଚଳ ଉପରୋକ୍ତ ଅନୁଗତ ସୈନ୍ୟମାନଙ୍କ ଦ୍ୱାରା ଅବରୋଧ କରାଯାଇଥିଲା ।

ତେଣୁ ବିଦ୍ରୋହୀ ଜାହାଜ ଦୁଇଟି ସେହି ଅଂଶକୁ ବାଦ୍ ଦେଇ ଯେଉଁ ଅଞ୍ଚଳରେ ଇଂରେଜମାନେ ବସବାସ କରନ୍ତି ତାହାକୁ ଲକ୍ଷ୍ୟକରି ଦୂରଗାମୀ କମାଣ ଚଳାଇବାକୁ ଲାଗିଲେ । କ୍ୟାସେଲ୍ ବାରାକ୍‌ରେ ଯେଉଁ ଅଂଶରେ ଇଂରେଜମାନଙ୍କର ବାସସ୍ଥାନ ଗୁଡ଼ିକ ଥିଲା ତାହା ଉପରେ ଘନ ଘନ ତୋପମାଡ଼ ହେଲା ।

ବମ୍ବେର ରାସ୍ତାଘାଟରେ ଶହ ଶହ ମୃତଦେହ ଦେଖି ସାଧାରଣ ଜନତା ଅଧିକ ଉତ୍ୟକ୍ତ ହୋଇ ଉଠିଲେ ଏବଂ ହର୍ଣବି ରୋଡ୍‌ରେ ଥିବା ପ୍ରାୟ ସମସ୍ତ ଇଂରେଜ ବ୍ୟବସାୟ ପ୍ରତିଷ୍ଠାନ ଗୁଡ଼ିକରେ ଅଗ୍ନି ସଂଯୋଗ କରି ଧ୍ୱଂସ୍ତବିଧ୍ୱଂସ୍ତ କରିଦେଲେ ।

-୩-

ଅବସ୍ଥା ଅତ୍ୟନ୍ତ ଭୟାବହ ହୋଇ ଉଠିଲା, ଏଭଳି ପରିସ୍ଥିତି ସୃଷ୍ଟି ହେବ ବୋଲି କଂଗ୍ରେସ ନେତୃବୃନ୍ଦ କଳ୍ପନା କରି ନଥିଲେ । ନୌ ବିଦ୍ରୋହକୁ ମିଳୁଥିବା ଜନ ସମର୍ଥନ ସେମାନଙ୍କ ସ୍ତମ୍ଭୀଭୂତ କରି ଦେଇଥିଲା । ବମ୍ବେର ସର୍ବୋଚ୍ଚ କଂଗ୍ରେସ ନେତା ସର୍ଦ୍ଦାର ପଟେଲ ବାଧ ହୋଇ ନରମ ଗଳାରେ ନୌବିଦ୍ରୋହକୁ ସମର୍ଥନ କଲେ ସତ୍ୟ କିନ୍ତୁ ସେହି ଆପାତଃ ମଧୁର ନିବେଦନ ପଛରେ ଲୁଚି ରହିଥିଲା କଂଗ୍ରେସର ଚିରାଚରିତ ପ୍ରଚ୍ଛନ ପ୍ରତାରଣାର ସ୍ୱର ।

ସେହି ବିବୃତିରେ ପଟେଲ କହିଲେ ''ବନ୍ଧୁଗଣ, ବମ୍ବେର ନାଗରିକ ବୃନ୍ଦ, ନୌବହରର ବୀର ଜାହାଜୀ ଭାଇମାନେ, ଆମ୍ଭମାନଙ୍କର ଅତିପ୍ରିୟ ବମ୍ବେ ସହରରେ ଆଜି ଏକ ନିଦାରୁଣ ଅବସ୍ଥା ସୃଷ୍ଟି ହୋଇଛି । ଗତ ୧୮ ତାରିଖରୁ ବୀର ସୈନିକଗଣ ଏକ ଅଭୂତପୂର୍ବ ଧର୍ମଘଟ ଆରମ୍ଭ କରି ଅଛନ୍ତି । ଖାଦ୍ୟ, ବସ୍ତ୍ର ଓ ନ୍ୟାୟ ବିଚାର ପାଇଁ ସେମାନଙ୍କର ଏହି ବୀରତ୍ୱପୂର୍ଣ୍ଣ ସଂଗ୍ରାମ ବ୍ରିଟିଶ୍ ସାମ୍ରାଜ୍ୟବାଦୀମାନଙ୍କୁ ସନ୍ତସ୍ତ କରି ଦେଇଛି । ସେମାନଙ୍କ ଆଶୁ ଦାବୀ. ପ୍ରତି ଭାରତର ଜାତୀୟ କଂଗ୍ରେସର ସକ୍ରିୟ ନିସର୍ତ୍ତ ଓ ପୂର୍ଣ୍ଣ ସମର୍ଥନ ରହିଅଛି । ମୁଁ ବୀର ସୈନ୍ୟଙ୍କୁ ଦୃଢ଼ ପ୍ରତିଶ୍ରୁତି ଦେଉଅଛି ଯେ ସେମାନଙ୍କର ନ୍ୟାଯ୍ୟ ଦାବୀ ପୂରଣ ନ କରି ବ୍ରିଟିଶ୍ ଶାସକବର୍ଗଙ୍କର ଅନ୍ୟ ଉପାୟ ନାହିଁ ।

''କିନ୍ତୁ କଂଗ୍ରେସ ଉଦ୍‌ବେଗ ସହକାରେ ଲକ୍ଷ୍ୟ କରୁଅଛି ଯେ ନୌସୈନିକମାନଙ୍କ ମଧ୍ୟରୁ କେତେକ ଏହି ସଂଗ୍ରାମରେ ଜଘନ୍ୟ ସହିଂସ୍ର ଓ ରକ୍ତାକ୍ତ ସଂଘର୍ଷ ସୃଷ୍ଟି କରିଛନ୍ତି । ଯାହା ଫଳରେ କି ସୈନ୍ୟବାହିନୀର ନ୍ୟାଯ୍ୟ ଦାବୀ ପୂରଣରେ ବାଧା ସୃଷ୍ଟି କରୁଅଛି ।

ଯେପରିକି ଆଜି ଭୋରରେ 'ଖାଇବର' ନାମକ ଯୁଦ୍ଧ ଜାହାଜରୁ ଅତର୍କିତ ଅବିମୃଷ୍ୟକାରୀ ଗୁଳି ଚାଳନା ଫଳରେ ବହୁ ନିରୀହ ବ୍ରିଟିଶ ସୈନିକ ପ୍ରାଣ ହରାଇଲେ କ୍ୟାସେଲ ବ୍ୟାରାକ୍ ଅଞ୍ଚଳରେ, ଜାହାଜୀ ଭାଇମାନଙ୍କୁ ଅନୁରୋଧ ସେମାନେ 'କଂଗ୍ରେସର ଅହିଂସା ତ୍ୟାଗକରି ସର୍ବନାଶକୁ ବରଣ କରନ୍ତୁ ନାହିଁ ।'

ତା ପରେ ପଟେଲ ତାଙ୍କର ନିଜ ରୂପର ପରିଚୟ ଦେଇ କହିଲେ କଂଗ୍ରେସ ଆହୁରିମ ମଧ୍ୟ ଲକ୍ଷ୍ୟ କରୁଅଛି ଯେ କମ୍ୟୁନିଷ୍ଟ ଓ ଅନ୍ୟାନ୍ୟ ବାମପନ୍ଥୀମାନେ ନୌବିଦ୍ରୋହୀମାନଙ୍କ ନାଯ୍ୟ ଦାବୀର ସୁଯୋଗ ନେଇ ଚରମ ବିଶୃଙ୍ଖଳା ସୃଷ୍ଟି କରୁଅଛନ୍ତି ।

ଆଜି ସେମାନେ ଅତର୍କିତ ଧର୍ମଘଟର ଡାକରା ଦେଇଥିଲେ । ଶୋଭାଯାତ୍ରା ବାହାର କରିଥିଲେ ଏବଂ ହର୍ଣ୍ଣବି ରୋଡ଼ରେ ଥିବା ଇଂରେଜ ଦୋକାନ ଗୁଡ଼ିକ ଉପରେ ଆକ୍ରମଣ କରି ସେଗୁଡ଼ିକୁ ଧ୍ୱଂସ କରି ଦେଇ ଅଛନ୍ତି । ଆଜି ସଂନ୍ଧ୍ୟାରେ ଫ୍ଲୋରା ଫାଉଣ୍ଟେନ୍ ଇଲାକାରେ ର୍‍ୟାଲି ପକ୍ଷରୁ ପେଲିସ୍ ଉପରେ ଟେକା ପଥର ପଡ଼ିବା ଫଳରେ ପୁଲିସ୍ ଗୁଳି ଚାଳନା କରୁଛି ।

ତା' ପରଠାରୁ ଏପର୍ଯ୍ୟନ୍ତ ବମ୍ବେ ସହରରେ ଚରମ ଅରାଜକତା ବିରାଜମାନ କରୁଅଛି । ବିଶେଷତଃ ଶ୍ରମିକ ଇଲାକାଗୁଡ଼ିକ ଏବଂ ଜାହାଜୀମାନେ ବାସ କରୁଥବା ୱାଟର ଫ୍ରଣ୍ଟ ଇଲାକାରେ ଖୁନ୍, ଜଖମ୍, ଅଗ୍ନି ସଂଯୋଗ ଓ ଲୁଟତରାଜ ଚାଲିଛି । ବାମପନ୍ଥୀମାନେ ଆସନ୍ତାକାଲି ମଧ୍ୟ ସାଧାରଣ ଧର୍ମଘଟର ଆହ୍ୱାନ ଦେଇ ଅଛନ୍ତି । ଏହାର ପ୍ରତ୍ୟୁତ୍ତରରେ ସରକାର ମଧ୍ୟ ସାମରିକ ଆଇନ ଜାରୀ କରିଅଛନ୍ତି, ମୋର ନିବେଦନ, ଧର୍ମଘଟ ବନ୍ଦ ହେଉ, ଶାନ୍ତିପୂର୍ଣ୍ଣ ଅବସ୍ଥା ଫେରିଆସୁ । ବାମପନ୍ଥୀମାନେ ସର୍ବନାଶ କରି ଦେବେ ।

ପଟେଲଙ୍କ ସହ କଣ୍ଠ ମିଳାଇ ଆଡ୍‌ମିରାଲ ର୍‍ୟାଟ୍‌ଟ୍ରେ ତାହାର ବାସ ଭବନରେ ଡାକିଥାଏ ବ୍ରିଟିଶ୍ ଅଫିସର ମାନଙ୍କର ଏକ ବୈଠକ, ଜନଗଣଙ୍କ ଉପରେ ହେଉଥିବା ଆକ୍ରମଣର ପର୍ଯ୍ୟାଲୋଚନା ଚାଲିଥାଏ । ଆଗପଛ ବିଚାର ନ କରି ଆଖିବୁଜା ଗୁଳି ଚାଳନା ହିଁ ଏକମାତ୍ର ବାଟ । ଓ୍ୟାଟର ଫ୍ରଣ୍ଟର ବିଦ୍ରୋହୀମାନେ ରାଇଫେଲ୍, ଗ୍ରେନେଡ୍, ପିସ୍ତଲ ନେଇ ଲଢୁଛନ୍ତି । ସମୁଦାୟ ବମ୍ବେ ସହର ଜଳୁଛି ଓ୍ୟାଟର ଫ୍ରଣ୍ଟ ବସ୍ତିକୁ ଜବତ ନ କଲେ 'ଖାଇବର' ଜାହାଜକୁ ଦିଆଯାଉଥିବା ଖାଦ୍ୟ ସାମଗ୍ରୀ ସରବରାହକୁ ବନ୍ଦ କରି ହେବ ନାହିଁ । ଶେଷରେ ବିରକ୍ତ ହୋଇ ର୍‍ୟାଟ୍‌ଟ୍ରେ କହିଲେ ''ବଡ଼ ଆଶ୍ଚର୍ଯ୍ୟ କଥା ଯେ ଆଠ ଶହ ସୈନ୍ୟ ଆମ ହାତରେ ଥିଲେ ମଧ୍ୟ ଗୋଟାଏ ବସ୍ତିକୁ ଜବତ କରି ପାରୁନାହାଁନ୍ତି ।

କର୍ଣ୍ଣେଲ୍ ଆର୍ମଷ୍ଟ୍ରଙ୍ଗ କହିଲେ, ଦେଖନ୍ତୁ ବିଦ୍ରୋହୀ ସୈନ୍ୟମାନଙ୍କ ସହ ମୁହାଁ ମୁହିଁ ଲଢ଼େଇ କରି କୌଣସି ଲାଭ ନାହିଁ । କାରଣ ସେମାନେ ଗଳି କୁଞ୍ଚିରେ ପଶି ଗରିଲା ଯୁଦ୍ଧ କରୁଛନ୍ତି । ସାଧାରଣ ବୋତଲରେ ଏସିଡ୍ ଭର୍ତ୍ତି କରି ଯେଉଁ ମୋଲଟଭ କକ୍‌ଟେଲ ତିଆରି କରି ନିକ୍ଷେପ କରୁଛନ୍ତି, ତାହା ଅତ୍ୟନ୍ତ ମାରାତ୍ମକ, ଗର୍ଖିଆ ସୈନ୍ୟ ଓ ସାଧାରଣ ଲୋକ

ନାତ୍ସି ସୈନ୍ୟମାନଙ୍କ ବିରୁଦ୍ଧରେ ଏହି ମୋଲୋଟଭ୍ କକ୍‌ଟେଲ ବୋମା ବ୍ୟବହାର କରି ଯେଉଁ ଅକଳ୍ପନୀୟ ବିଜୟ ଲାଭ କରିଥିଲେ ତାହା ଭାରତରେ ମଧ୍ୟ ପ୍ରବେଶ କରି ସାରିଲାଣି । ନୌବାହିନୀ ଭିତରେ କମ୍ୟୁନିଷ୍ଟମାନଙ୍କର ଅନୁପ୍ରବେଶ ଯୋଗୁଁ ଏହି ପରିସ୍ଥିତି ସୃଷ୍ଟି ହୋଇଛି ।

କମ୍ୟୁନିଷ୍ଟମାନଙ୍କ ବିରୁଦ୍ଧରେ କଠୋର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ପ୍ରେସ୍ ବିଜ୍ଞପ୍ତି ମଧ୍ୟ ପ୍ରକାଶ ପାଇଲା । ନୌବିଦ୍ରୋହୀମାନଙ୍କ ଭିତରେ ବିଭେଦ ସୃଷ୍ଟି କରିବା ଏହାର ଅନ୍ୟ ଏକ ଉଦ୍ଦେଶ୍ୟ ଥିଲା ।

କଂଗ୍ରେସର ଦକ୍ଷିଣପନ୍ଥୀ ନେତା ସର୍ଦ୍ଦାର ପଟେଲ କମ୍ୟୁନିଷ୍ଟମାନଙ୍କ ବିରୁଦ୍ଧରେ କଠୋର ପଦକ୍ଷେପ ନେବାକୁ ବିଶେଷ ତତ୍ପର ଥିଲେ, ତାଙ୍କ ଭଳି ସବୁ କଂଗ୍ରେସ ନେତା ଭାବୁଥିଲେ ଯେ ସେମାନେ ବ୍ରିଟିଶ୍ ଶାସକମାନଙ୍କ ସହ ଆପୋଷରେ ଭାରତର ସ୍ୱାଧୀନତା ପାଇଁ ଯେଉଁ ଆଲୋଚନା କରୁଛନ୍ତି ତାହାହିଁ ଯଥାର୍ଥ । କିନ୍ତୁ ଭାରତର ଜନସାଧାରଣଙ୍କ ମନୋଭାବ ଥିଲା ସଂପୂର୍ଣ୍ଣ ଭିନ୍ନ । ସେମାନେ ଦେଶର ସ୍ୱାଧୀନତା ଅର୍ଜନ ପାଇଁ ବିଦେଶୀ ଶାସକମାନଙ୍କ ସହ କୌଣସି ପ୍ରକାର ଆଲୋଚନାର ପକ୍ଷପାତି ନଥିଲେ କାରଣ ଆପୋଷ ଆଲୋଚନା ମାଧ୍ୟମରେ ପ୍ରିୟ ସ୍ୱାଧୀନତା ସାମ୍ପ୍ରଦାୟିକ ଭିତ୍ତିରେ ଦେଶର ବିଭାଜନ ତଥା ଚିରଦିନ ପାଇଁ ସାମ୍ରାଜ୍ୟବାଦୀ ପୁଞ୍ଜିବାଦୀ ନାଗଫାସରେ ଦେଶକୁ ବାନ୍ଧି ରଖିବା ପାଇଁ ଉଦ୍ଦିଷ୍ଟ ଥିଲା । କମ୍ୟୁନିଷ୍ଟ ମତବାଦୀ ନେତାମାନେ ବ୍ରିଟିଶ୍ ଶାସକର ସେହି କୁତ୍ସିତ ଷଡ଼ଯନ୍ତ୍ରକୁ ନିର୍ଭୁଲ ଭାବରେ ଉପଲବ୍ଧି କରିଥିଲେ, ଏକ ସର୍ବାତ୍ମକ ସଶସ୍ତ୍ର ମୁକାବିଲା ଦ୍ୱାରା ହିଁ ଦେଶକୁ ବିଭାଜନରୁ ରକ୍ଷା କରାଯାଇ ପାରିବ ଓ ସାମ୍ରାଜ୍ୟବାଦୀ ଚକ୍ରାନ୍ତରୁ ଦେଶକୁ ମୁକ୍ତ କରାଯାଇ ପାରିବ ବୋଲି ଦୃଢ଼ ଭାବରେ ବିଶ୍ୱାସ କରୁଥିଲେ । ନୌ ବିଦ୍ରୋହ ହିଁ ଥିଲା ସେହି ସର୍ବାତ୍ମକ ଗଣ ସଂଗ୍ରାମର ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ । ନୌବିଦ୍ରୋହ ସଫଳ ହେଲେ ଭାରତୀୟ ରାଜନୀତିରେ କମ୍ୟୁନିଷ୍ଟମାନଙ୍କର ପ୍ରଭାବ ଏକ ନିଷ୍ପତ୍ତି ମୂଳକ ଭୂମିକା ନେବାରେ ସମର୍ଥ ହେବ ବୋଲି ଉଭୟ କଂଗ୍ରେସ ଓ ମୁସ୍‌ଲିମ୍ ଲିଗ ଆଶଙ୍କା କରୁଥିଲେ ଏହିଭଳି ଭାବରେ ନୌବିଦ୍ରୋହକୁ ନିର୍ମମ ଭାବରେ ଦମନ କରିବା ପାଇଁ କଂଗ୍ରେସ୍ ମୁସଲିମ୍ ଲିଗ୍ ଏବଂ ବ୍ରିଟିଶ୍ ଶାସକବର୍ଗଙ୍କ ମଧ୍ୟରେ କୌଣସି ମତଭେଦ ନଥିଲା ।

ନୌବିଦ୍ରୋହୀ ନେତା ଏବଂ କମ୍ୟୁନିଷ୍ଟମାନଙ୍କୁ ଦମନ କରିବା ପାଇଁ ସାମରିକ ଅଫିସରମାନଙ୍କ ମିଟିଂରେ ଉପସ୍ଥିତ ଥିବା ଭାରତୀୟ ଅଫିସର କ୍ୟାପ୍ଟେନ୍ ଏସ୍.କେ. ସେନଙ୍କ ଠାରୁ ବିଦ୍ରୋହୀମାନେ ସବୁ ଖବର ଆଗତୁରା ପାଇଥିଲେ । କାରଣ ସେନଗୁପ୍ତ ଆକସନ କମିଟିର ମଧ୍ୟ ସଭ୍ୟ ଥିଲେ । ତେଣେ ସରକାରଙ୍କୁ ସମର୍ଥନ କରି ସର୍ଦ୍ଦାର ପଟେଲ ଫେବୃୟାରୀ ୧୯ ତାରିଖରେ ବମ୍ବେ ଚୌପାଟୀରେ ଏକ ସାଧାରଣ ସଭାରେ ବିଦ୍ରୋହୀମାନଙ୍କୁ ବିଦ୍ରୁପ କରି ଭାଷଣ ଦେଲେ । ସେ କହିଲେ ଯେ ଦେଶର ସ୍ୱାଧୀନତା ଭଳି ବଡ଼ ବଡ଼ କଥା କହିବା ପାଇଁ ସେମାନଙ୍କର କି ଅଧିକାର ଅଛି ? ସେମାନଙ୍କ ଭଳି ଉଗ୍ରପନ୍ଥୀ ଯୁବକଗଣଙ୍କର

ସେଥିପାଇଁ ମୁଣ୍ଡ ବଥାଇବାର କୌଣସି କାରଣ ନାହିଁ । (bunch of young hot-heads mixing with things, they had no business in...)

ଗାନ୍ଧିଜୀ ସାବରମତୀ ଆଶ୍ରମରେ ଏକ ସାନ୍ଧ୍ୟ ପ୍ରାର୍ଥନା ସଭାରେ ଆହୁରି କଠୋର ଭାଷାରେ କହିଲେ- ଯଦି ସୈନ୍ୟବାହିନୀରେ ରେଟିଂମାନେ ସେମାନଙ୍କ ଚାକିରିରେ ଅସନ୍ତୁଷ୍ଟ ତେବେ ସେମାନେ ଚାକିରୀରୁ ଇସ୍ତଫା ଦେଇଦେବା ଉଚିତ୍ (Could have re-signed) । ଅବଶ୍ୟ ବିଦ୍ରୋହୀମାନେ ଯେ ଚାକିରି ଭଳି ତୁଚ୍ଛ କଥାରେ ମାତି ନଥିଲେ, ଏହା ନେତାମାନଙ୍କୁ ଅଜଣା ନଥିଲା । ବିଦ୍ରୋହୀମାନଙ୍କ ମନୋବଳ ଭାଙ୍ଗି ଦେବା ପାଇଁ କଂଗ୍ରେସ ନେତାମାନଙ୍କର ସେହି ବ୍ୟଙ୍ଗ ବିଦ୍ରୁପ ବାସ୍ତବରେ ଉଦିଷ୍ଟ ଥିଲା ।

୧୯୪୬ ମସିହା ଫେବୃୟାରୀ ୨୧ ତାରିଖରେ ବ୍ରିଟିଶ୍ ଶ୍ରମିକ ଦଳର ପ୍ରଧାନମନ୍ତ୍ରୀ ବିଲାତ ପାର୍ଲିଆମେଣ୍ଟରେ ଘୋଷଣା କଲେ ''ରୟାଲ୍ ଇଣ୍ଡିଆନ୍ ନାଭିର ଯୁଦ୍ଧ ଜାହାଜ ଗୁଡ଼ିକ ଦ୍ରୁତଗତିରେ ବମ୍ବେ ଅଭିମୁଖେ ଆଗେଇ ଚାଲିଛି'' । ଭାରତରେ ଅବସ୍ଥାପିତ ପ୍ରଧାନ ସେନାପତି ଅଚିନଲେକ୍ ମଧ ସଙ୍ଗେ ସଙ୍ଗେ ଦମ୍ଭୋକ୍ତି ପ୍ରକାଶ କରି କହିଲେ ''ସରକାର ତାର ସବୁ ଶକ୍ତି ନିୟୋଗ କରିବ । ଏହି ବିଦ୍ରୋହ ଦମନ କରିବା ପାଇଁ ସମଗ୍ର ନୌବାହିନୀ ଧ୍ୱଂସ ହୋଇଗଲେ ମଧ ସରକାର ଛାଡ଼ିବ ନାହିଁ ।''

କିନ୍ତୁ ଗୋଏନ୍ଦା ପୋଲିସ୍ ସୂତ୍ରରୁ ଖବର ମିଳିଲା ଯେ କରାଚୀ, ବମ୍ବେ, ପୁନେ ଓ ଜଳନ୍ଧର ପ୍ରଭୃତି ସ୍ଥାନରେ ଅବସ୍ଥାପିତ ସ୍ଥଳବାହିନୀ ଓ ଆକାଶ ବାହିନୀ ଉପରୋକ୍ତ ଆଦେଶକୁ ପ୍ରତ୍ୟାଖ୍ୟାନ କରି ଦେଇଛନ୍ତି । ବିମାନ ବାହିନୀରେ ଯେଉଁ କେତେଗୋଟି ବିମାନ ଆକାଶକୁ ଉଠିଥିଲା ସେମାନେ ମଧ 'ଇଞ୍ଜିନ୍ ଖରାପ' ଯୁକ୍ତିରେ ସଙ୍ଗେ ସଙ୍ଗେ ଅବତରଣ କରି ଅଛନ୍ତି । ସାମରିକ ଶୃଙ୍ଖଳା ଦୃଷ୍ଟିରୁ ସୈନ୍ୟମାନଙ୍କର ସେହିଭଳି ବ୍ୟବହାର ବିଦ୍ରୋହ ସହ ସମାନ ।

ନୌବିଦ୍ରୋହକୁ କଠୋର ହସ୍ତରେ ଦମନ କରିବା ପାଇଁ ବ୍ରିଟିଶ୍ ପ୍ରଧାନ ସେନାପତିଙ୍କ ନିର୍ଦ୍ଦେଶକୁ ବମ୍ବେ, କରାଚି, ପୁନେ, ଜଳନ୍ଧରଠାରେ ଅବସ୍ଥାପିତ ସ୍ଥଳବାହିନୀ ଓ ବିମାନବାହିନୀ ଅମାନ୍ୟ କରିବାରୁ ଏକ ଅପ୍ରତ୍ୟାଶିତ ପରିସ୍ଥିତି ସୃଷ୍ଟି ହୋଇଥିଲା । ସରକାର ସେହ ଘଟଣାରେ ବିବ୍ରତ ଓ ହତ୍‌ବାକ୍ ହୋଇଥିବା ବେଳେ ବାମପନ୍ଥୀଦଳ ବମ୍ବେରେ ସାଧାରଣ ଧର୍ମଘଟ ଡାକରା ଦେଇ ଥିଲେ, କଂଗ୍ରେସର ପ୍ରକାଶ୍ୟ ବିରୋଧ ସତ୍ତ୍ୱେ ଧର୍ମଘଟ ଆରମ୍ଭ ହୋଇଥିଲା । ସେହ ଅବସରରେ ବିଦ୍ରୋହୀ 'ତଲଓ୍ୱାର' ଜାହାଜ ଓ ଡକ୍‌ୟାର୍ଡ଼ରୁ ରେଟିଂମାନେ ସେଠାରୁ ବାହାରି ଆସିଥିଲେ, ଗୋଳମାଳ ଆଶଙ୍କାରେ ସରକାରୀ ପକ୍ଷ ବ୍ୟାରାକ୍ ଓ ଡକୟାର୍ଡ଼ ପାଖ ଦେଇ ସରକାରୀ ଅନୁଗତ ସୈନ୍ୟମାନଙ୍କର ଏକ ଫ୍ଲାଗ୍‌ମାର୍ଚ୍ଚ କରାଇଦେଲେ । ସହରର ବ୍ୟବସାୟ କେନ୍ଦ୍ରର ଅନତିଦୂରରେ ଅବସ୍ଥିତ ଡକୟାର୍ଡ଼ ଓ କ୍ୟାସେଲ ବ୍ୟାରାକ୍, କ୍ୟାସେଲ୍ ବ୍ୟାରାକ୍ ସମ୍ମୁଖରେ ଅବସ୍ଥିତ ଟାଉନହଲ୍ ଓ ରିଜର୍ଭବ୍ୟାଙ୍କର ବିରାଟ ସୌଧ, ସେଦିନ (ଫେବୃୟାରୀ ୧୯ ତାରିଖ) ପ୍ରାୟ ୫ ହଜାର ବିଦ୍ରୋହୀ ସୈନ୍ୟ

କ୍ୟାସେଲ ବ୍ୟାରାକ୍‌ରେ ରାତ୍ରୀ ଯାପନ କରିଥିଲେ । ସକାଳ ପ୍ରାୟ ୯ଟା ବେଳେ ସରକାରୀ ଅନୁଗତ ସୈନ୍ୟମାନେ ବ୍ୟାରାକ୍ ଉପରକୁ ଗୁଳିଚାଳନା କରିବାରୁ ବିଦ୍ରୋହୀମାନେ ଅସ୍ତ୍ରଶସ୍ତ୍ର ସହ ବାହାରକୁ ବାହାରି ପଡ଼ିଲେ ସିନା କିନ୍ତୁସରକାରୀ ଅନୁଗତ ଭାରତୀୟ ସୈନ୍ୟମାନଙ୍କ ଉପରକୁ ଗୁଳି ନ ଚଳାଇ ଲାଉଡ୍ ସ୍ପିକରରେ ସେମାନଙ୍କୁ ବିନମ୍ର ନିବେଦନ କଲେ ।

"ଭାଇମାନେ ! ଏ ଲଢ଼େଇ ଆମର ବ୍ୟକ୍ତିଗତ ଲାଭ ପାଇଁ ଚାଲୁନାହିଁ । ଏହା ଚାଲୁଅଛି ଦେଶର ସ୍ୱାଧୀନତା ଅର୍ଜନ ପାଇଁ, ତେଣୁ ତୁମ୍ଭେମାନେ ଏଥିରେ ସାମିଲ୍ ହୁଅ । ଆମ୍ଭମାନଙ୍କୁ ହତ୍ୟା କରି କେଉଁ ଯଶ ଅର୍ଜନ କରିବ ? ଭାଇମାନେ ଶହ ଶହ ବର୍ଷ ଧରି ବିଦେଶୀ ପ୍ରଭୁମାନଙ୍କ ପାଇଁ ଅଜସ୍ର ଲଢ଼େଇ କରି ଆମ୍ଭେମାନେ ଅସଂଖ୍ୟ ବଳିଦାନ ଦେଇଛୁ । ବର୍ତ୍ତମାନ ମାତୃଭୂମି ପାଇଁ ଆବଶ୍ୟକ ଚରମ ବଳିଦାନ । ଆମେତ ତୁମ୍ଭମାନଙ୍କର ଭାଇ, ଆମ ଉପରେ ଗୁଳି କରନାହିଁ । ସତକୁ ସତ ଗୁଳି ଚାଳନା ବନ୍ଦ ହୋଇଗଲା ।

ସଙ୍କେତ ବାହୀ ସମ୍ବାଦ ଆସି ପହଞ୍ଚିଲା ବିଦ୍ରୋହୀ ଶିବିରରେ ଯେ ସେ ଗୁଡ଼ାଥିଲା ବ୍ଲାଙ୍କ ଫାୟାର । କ୍ୟାସେଲ ବ୍ୟାରେକ୍‌ରେ ସେହି ସମ୍ବାଦରେ ଆନନ୍ଦ ଉଲ୍ଲାସ ଖେଳିଗଲା । କର୍ତ୍ତୃପକ୍ଷ ବାଧ ହୋଇ ଫେରାଇ ନେଲେ ବ୍ୟାରେକ୍ ଭିତରକୁ ।

ସକାଳ ୧୧ଟାରେ ପରବର୍ତ୍ତୀ ଆକ୍ରମଣ ଆରମ୍ଭ ହେଲା- ବିଦ୍ରୋହୀମାନଙ୍କ ଉପରେ । ଶତ୍ରୁ ପକ୍ଷରୁ ଆୟୋଜନର କଳନା କରି ଡାକରା ଦେଇଦେଲେ । କ୍ୟାସେଲ ବ୍ୟାରେକ ଦୀର୍ଘକାଳ ଅବରୋଧ ପାଇଁ ପ୍ରସ୍ତୁତ ହୋଇଥିଲା । କିନ୍ତୁ ଆକ୍ରମଣ କେବଳ କ୍ୟାସେଲ ବ୍ୟାରାକ୍ ନୁହେଁ, ନୌବିଦ୍ରୋହର କେନ୍ଦ୍ର କାର୍ଯ୍ୟାଳୟ ତଲଓ୍ୱାର ମଧ ବିପନ୍ନ ହେବାର ଆଶଙ୍କା କରି କାର୍ଯ୍ୟାଳୟକୁ ସେଠାରୁ ଉଠାଇ ନିଆଗଲା ଫ୍ଲାଗସିପ୍ ନର୍ମଦାକୁ । ନର୍ମଦା ମାତ୍ର ପାଞ୍ଚବର୍ଷ ତଳେ ବ୍ରିଟେନ୍‌ରେ ତିଆରି ଏକ ସୁଦୃଢ଼ ଓ ଆଧୁନିକ ଫ୍ଲାଗ୍‌ସିପ୍ ।

ଚରମ ସଂଗ୍ରାମ ପାଇଁ ପ୍ରସ୍ତୁତ ହେବାକୁ ସମସ୍ତ ଯୁଦ୍ଧ ଜାହାଜକୁ ବେତାର ସଙ୍କେତ ପଠାଯାଇଥିଲା (Raise steam and prepare for action station) ପ୍ରତ୍ୟକ୍ଷ ଯୁଦ୍ଧ ଚାଳନା ଅଧିକରୁ ଅଧିକ ଅପରିହାର୍ଯ୍ୟ ହେବା ଦିନଠାରୁ ଅନଶନ ସିନା ପ୍ରତ୍ୟାହୃତ ହୋଇଥିଲା କିନ୍ତୁ କର୍ତ୍ତୃପକ୍ଷ ଖାଦ୍ୟ ସରବରାହ ବନ୍ଦ କରି ଦେଇଥିଲେ । ଖାଦ୍ୟ ଭଣ୍ଡାର ନିଃଶେଷ ହୋଇଯିବା ପରେ ଖାଦ୍ୟାଭାବର ସମ୍ମୁଖୀନ ହେଲେ ବିଦ୍ରୋହୀ ସେନାମାନେ । ସ୍ଥଳଭାଗ କଥା ଅଲଗା, ସମୁଦ୍ର ଭିତରେ ଲଙ୍ଗର କରିଥିବା ଜାହାଜ ଗୁଡ଼ିକରେ ଥିବା ବିଦ୍ରୋହୀମାନେ ଉତ୍କଟ ଖାଦ୍ୟାଭାବର ସମ୍ମୁଖୀନ ହେଲେ ।

ଅମିତ ବିକ୍ରମୀ ସେହି ମୁକ୍ତି ସଂଗ୍ରାମୀମାନଙ୍କର ଜୀବନ ମରଣର ଘଡ଼ିସନ୍ଧି ସମୟରେ ବମ୍ବେର ଜନସାଧାରଣ ସେମାନଙ୍କ ପ୍ରତି ଅସାଧାରଣ ଭାତୃତ୍ୱ ଓ ସଂହତି ପ୍ରକାଶ କଲେ, ଅନାହାର କ୍ଲିଷ୍ଟ ବିଦ୍ରୋହୀମାନଙ୍କ ପାଇଁ ଖାଦ୍ୟ ପ୍ୟାକେଟ୍ ଧରି ହଜାର ହଜାର ସ୍ତ୍ରୀ-ପୁରୁଷ ସମୁଦ୍ର କୂଳରେ ଜମା ହେବାକୁ ଲାଗିଲେ । ଅଦୂରରେ ଅବସ୍ଥାପିତ ବ୍ରିଟିଶ୍ ଜଗୁଆଳ ସୈନ୍ୟମାନେ

ଅସହାୟ ଦର୍ଶକ ଭଳି ଅନାଇ ରହିଲେ ମାତ୍ର । କେତେକ ରେଷ୍ଟୁରାଣ୍ଟ ମାଲିକ ମଧ୍ୟ ଦୈନନ୍ଦିନ ବ୍ୟବସାୟ ବନ୍ଦ କରି ଦେଇ ବିଦ୍ରୋହୀମାନଙ୍କୁ ଖାଦ୍ୟ ପ୍ୟାକେଟ୍ ବନ୍ଦ କରି ଦେଇ ବିଦ୍ରୋହୀମାନଙ୍କୁ ଖାଦ୍ୟ ଯୋଗାଇବାକୁ ଲାଗିଲେ । ସେ ଏକ ଅଭୂତପୂର୍ବ ଦୃଶ୍ୟ । କିଛି ଦୂରରେ କେତେକ ଅନୁଗତ ଭାରତୀୟ ସୈନ୍ୟ । ସେମାନଙ୍କ ପଛରେ ଥାନ୍ତି ବ୍ରିଟିଶ୍ ସୈନ୍ୟ । ଯୁଦ୍ଧ କ୍ଷେତ୍ରରେ ଯାହା, ଅନ୍ୟବେଳରେ ମଧ୍ୟ ସେୟା । ସବୁ ଚୋଟ ସମ୍ଭାଳିବା ଆଗରେ ଥିବା ଭାରତୀୟ ସୈନ୍ୟ ଓ ଅପେକ୍ଷାକୃତ ନିରାପଦ ସ୍ଥାନରେ ରହିବେ ବ୍ରିଟିଶ୍ ସୈନ୍ୟ ।

କିନ୍ତୁ ବ୍ରିଟିଶ୍ ଶାସକମାନଙ୍କ ସମସ୍ତ ସାମରିକ ଶକ୍ତି ପ୍ରଦର୍ଶନକୁ ଅଗ୍ରାହ୍ୟ କରି ହଜାର ହଜାର ନରନାରୀ ଖାଦ୍ୟ ପାନୀୟ ଜଳ ପ୍ୟାକେଟ୍ ଧରି ଛିଡ଼ା ହୋଇଥାନ୍ତି ସମସ୍ତଙ୍କ ଆଗରେ ସମୁଦ୍ର କୂଳରେ । ସମସ୍ତ ମନର ଉତ୍କଣ୍ଠା କେମିତି ଅନତି ଦୂରରେ ଲଙ୍ଗର ପକାଇଥିବା ଜାହାଜରେ ଖାଦ୍ୟ ପ୍ୟାକେଟ୍‌ଗୁଡ଼ିକ ପହଞ୍ଚିବ । ବ୍ରିଟିଶ୍ ଅନୁଗତ ସୈନ୍ୟମାନେ ସମସ୍ତ ରାଜଭକ୍ତିକୁ ଜଳାଞ୍ଜଳି ଦେଇ ବାହାରି ପଡ଼ିଲେ ବିଦ୍ରୋହୀମାନଙ୍କର ଜୀବନ ରକ୍ଷା କରିବାକୁ କାନ୍ଧରେ ବନ୍ଧୁକ ପକାଇ ଛୋଟ ଛୋଟ ଡିଙ୍ଗି ସାହାଯ୍ୟରେ ସେମାନେ ଖାଦ୍ୟ ପ୍ୟାକେଟ୍ ଗୁଡ଼ିକୁ ପଠାଇ ଦେବାକୁ ଲାଗିଲେ ବିପନ୍ନ ବିଦ୍ରୋହୀ ଜାହାଜ ଗୁଡ଼ିକ ନିକଟକୁ । ସେ ଦୃଶ୍ୟରେ ରକ୍ତ ଚାଉଳ ଚୋବାଇ ଦେଉଥିବା ବ୍ରିଟିଶ୍ ସୈନ୍ୟମାନେ ପୁରା ବୋକା ବନି ଯାଇଥିଲେ । ବ୍ରିଟିଶ୍ ଅଫିସରମାନେ ମନ୍ତବ୍ୟ ଦେବାର ଶୁଣାଯାଇଥିଲା । "My God, Revolt , Is it not ?" (ହେ ଭଗବାନ, ଏ କ'ଣ ବିଦ୍ରୋହ)

ତଲଓ୍ୱାରରେ ଯେତିକି ଖାଦ୍ୟ ପୁଡ଼ିଆ ପହଞ୍ଚିଗଲା, ତାହା ବିଦ୍ରୋହୀ ସୈନ୍ୟମାନଙ୍କ ପାଇଁ ଯଥେଷ୍ଟ ଥିଲା । କିନ୍ତୁ ସମସ୍ତ ଜାହାଜରେ ଥିବା ବିଦ୍ରୋହୀମାନଙ୍କ ସଂଖ୍ୟା ଏକଚାଳିଶି ହଜାରରୁ କମ୍ ନଥିଲା । ଏତଦ୍ ବ୍ୟତୀତ କରାଚୀରେ ବିଦ୍ରୋହୀ ସୈନ୍ୟଙ୍କ ସଂଖ୍ୟା ଥିଲା ଦଶ ହଜାର, ଖାଦ୍ୟାଭାବ ସର୍ବତ୍ର ଉତ୍କଟ ଥିଲା । ଜନତାର ସ୍ୱତଃସ୍ଫୂର୍ତ୍ତ ସମର୍ଥନ ଦୃଷ୍ଟିରୁ ଖାଦ୍ୟାଭାବ ନଗଣ୍ୟ ହୋଇଥିଲେ ସୁଦ୍ଧା ସେଗୁଡ଼ିକୁ ଲୋକମାନଙ୍କ ଠାରୁ ସଂଗ୍ରହ କରି ଶକ୍ତିଶାଳୀ ଶତ୍ରୁବ୍ୟୂହକୁ ଭେଦ କରିବା ଏବଂ ସେ ଗୁଡ଼ିକୁ ନିରାପଦରେ ଗନ୍ତବ୍ୟ ସ୍ଥାନରେ ପହଞ୍ଚାଇ ଦେବା ପାଇଁ ଯେଉଁ ବିଶାଳ ଜନସଙ୍ଗଠନ ଆବଶ୍ୟକ ତାହାର ଅଭାବ ଥିଲା । ବିଶେଷତଃ କଂଗ୍ରେସ ନେତୃବୃନ୍ଦଙ୍କ ନୈତିକ ସମର୍ଥନ ଲାଭ କରି ସରକାରୀ କଳ ଅଧିକ ନୃଶଂସ, ଅନମନୀୟ ଓ ଶକ୍ତିଶାଳୀ ହୋଇ ଉଠିଥାଏ ।

ତା ସତ୍ତ୍ୱେ ଡକ୍‌ୟାର୍ଡ଼ ଓ କ୍ୟାସେଲ ବ୍ୟାରେକ୍ ଭିତରକୁ ଅନୁପ୍ରବେଶ କରିବାକୁ ଛାଡ଼ି ଦିଆଯାଉ ନଥାଏ ବ୍ରିଟିଶ୍ ସୈନ୍ୟମାନଙ୍କୁ ଏବଂ ଯେଉଁ ସବୁ ଦୁର୍ବଳ ସ୍ଥଳରେ ଆକ୍ରମଣର ଆଶଙ୍କା ଥାଏ ସେ ସବୁ ସ୍ଥଳକୁ ଲକ୍ଷ୍ୟ କରି ଜାହାଜରୁ ଓ୍ୱାଲିକାନ୍ କମାଣରୁ ଗୋଳା ବର୍ଷଣ ଓ ମଝିରେ ମଝିରେ ହାତବୋମା ନିକ୍ଷେପ କରି ପ୍ରତିରୋଧ ପ୍ରାଚୀର ସୃଷ୍ଟି କରିବାର ଉଦ୍ୟମ ଚାଲିଥାଏ ।

ବିଦ୍ରୋହୀମାନଙ୍କ ଆକ୍ରମଣ ତୀବ୍ରତମ ପର୍ଯ୍ୟାୟରେ ପହଞ୍ଚିବା ସମୟରେ ହଠାତ୍ ବେତାରରେ ଘୋଷଣା କଲା କମାଣ୍ଡର ଗଡଫ୍ରେ ''ବର୍ତ୍ତମାନ ଭୟାବହ ପରିସ୍ଥିତିକୁ ବିଚାର କରି ସରକାର କୌଣସି ପ୍ରତ୍ୟାକ୍ରମଣ ନକରି ବିଦ୍ରୋହୀ ନେତାମାନଙ୍କ ସହ ଆଲୋଚନା କରିବାକୁ ଚାହାନ୍ତି, ଏ ସମ୍ପର୍କରେ ବିଦ୍ରୋହୀମାନଙ୍କ ଠାରୁ ଯଥା ଶୀଘ୍ର ଉତ୍ତର ଆଶା କରନ୍ତି । ସେହି ଅପ୍ରତ୍ୟାଶିତ ବାର୍ତ୍ତାଶୁଣି ବିଦ୍ରୋହୀ ଶିବିରରେ ସୃଷ୍ଟି ହେଲା ବିପୁଳ ଆଲୋଡ଼ନ, କ୍ରମ ବର୍ଦ୍ଧମାନ ଖାଦ୍ୟାଭାବ ସତ୍ତ୍ୱେ ଷ୍ଟ୍ରାଇକ୍ କମିଟିର ଅଧିକାଂଶ ସଦସ୍ୟ ଆଲୋଚନା ପ୍ରସ୍ତାବର ବିରୋଧ କଲେ । ପରିଣତି ଯାହା ହେଉ ନା କାହିଁକି ଶେଷ ପର୍ଯ୍ୟନ୍ତ ଲଢ଼ିବା ବ୍ୟତୀତ ଅନ୍ୟ କୌଣସି ସିଦ୍ଧାନ୍ତ କମିଟି ପକ୍ଷରେ ଗ୍ରହଣୀୟ ହୋଇ ନ ପାରେ । କିନ୍ତୁ ଗଡଫ୍ରେର ଘୋଷଣା ବନ୍ଦ ହେଲା ନାହିଁ ।ତାହାର ପ୍ରଭାବ ଯେ ବିଦ୍ରୋହୀମାନଙ୍କ ଉପରେ ପଡ଼ିନଥିବ ତାହା କୁହାଯାଇ ପାରିବ ନାହିଁ, ନେତୃମଣ୍ଡଳୀ ଉପରେ ନ ଥିଲେ ବି ସାଧାରଣ ସୈନିକ ସେଥିରେ ପ୍ରଭାବିତ ହୋଇ ନଥିବେ ତାହା ନୁହେଁ ।

ସେ ଦିନ ଅର୍ଦ୍ଧରାତ୍ରୀ ପର୍ଯ୍ୟନ୍ତ ବହୁତ ଯୁକ୍ତିତର୍କ ପରେ ସ୍ଥିର ହେଲା ଯେ ଆଲୋଚନାରେ ଭାଗ ନେବା ସଙ୍ଗେ ସଙ୍ଗେ ସବୁ ପ୍ରକାର ପରିସ୍ଥିତି ପାଇଁ ପୁରା ଜାଗତିଆର ରହିବାକୁ ପଡ଼ିବ ।

ତଥାପି ବେତାରରେ ସରକାରଙ୍କୁ ଜବାବ ଦିଆଗଲା ଯେ ଆମେ ଆଶା କରୁ ଆମ ପଟୁ ଆକ୍ରମଣ ବନ୍ଦ ହେବା ସଙ୍ଗେ ସଙ୍ଗେ ପ୍ରତ୍ୟାକ୍ରମଣ ମଧ ବନ୍ଦ ହେବ ।

ଷ୍ଟ୍ରାଇକ୍ କମିଟିର ଅନୁରୋଧରେ ସଭାପତି ଅହମଦ୍ ଖାଁ ଏକା ଗଲେ ସରକାରୀ କର୍ତ୍ତାମାନଙ୍କ ସହ କଥାବାର୍ତ୍ତା କରିବା ପାଇଁ, କିନ୍ତୁ ନିର୍ଦ୍ଧାରିତ ସ୍ଥାନରେ ବହୁ ସମୟ ଅପେକ୍ଷା କରିବା ସତ୍ତ୍ୱେ କ୍ୟାପ୍ଟେନ୍ ଗଡଫ୍ରେ କିମ୍ବା ଅନ୍ୟ କୌଣସି ସାମରିକ ନେତା ସେଠାରେ ପହଞ୍ଚିଲେ ନାହିଁ କିମ୍ବା ନ ପହଞ୍ଚିବାର କାରଣ ମଧ କୌଣସ କ୍ଷମତାପ୍ରାପ୍ତ ଅଧିକାରୀ ଖାନ୍ ସାହେବଙ୍କୁ ଜଣାଇଲେ ନାହିଁ । ଖାନ୍‌ଙ୍କର ସନ୍ଦେହ ଦୃଢ଼ୀଭୂତ ହେଲା । କେଇ ଘଣ୍ଟାର ଯୁଦ୍ଧ ବିରତି ଶତ୍ରୁପକ୍ଷ ଆବଶ୍ୟକ  କରୁଥିଲେ । ଅଧିକ ବିପଦ ଆଶଙ୍କା କରି ଖାନ୍ ସେଠାରୁ ପଳାଇ ଆସିଲେ ।

ଶତ୍ରୁପକ୍ଷର ବହୁ ଆକାଂକ୍ଷିତ ସୈନ୍ୟଦଳ ଆସି ପହଞ୍ଚି ଯିବାରୁ ସେମାନେ ପ୍ରତ୍ୟାକ୍ରମଣ କରିବାକୁ ପ୍ରସ୍ତୁତ ହୋଇଗଲେ । ଗଡଫ୍ରେ ବେତାର ବାର୍ତ୍ତାରେ ଚରମବାଣୀ ଶୁଣାଇଦେଲେ, ''ମୁଁ ଗତକାଲି ତୁମ୍ଭମାନଙ୍କୁ ସତର୍କ କରାଇ ଦେଇ ଥିଲି ଯେ ଶୃଙ୍ଖଳା ରକ୍ଷା କରିବାକୁ ଯଥେଷ୍ଟ ସୈନ୍ୟ ଆମର ରହିଛନ୍ତି । ମହାମାନ୍ୟ ସର୍ବାଧିନାୟକ His Excellancy Commander in Chief ନିର୍ଦ୍ଦେଶ ଦେଇ ଅଛନ୍ତି ଯେ ସଦର୍ଣ୍ଣ କମାଣ୍ଡୋ ଜି.ଓ.ସି. ବମ୍ବେର ସର୍ବୋଚ୍ଚ କ୍ଷମତା ଗ୍ରହଣ କରି ଅଛନ୍ତି ଏବଂ ରୟାଲ ଏୟାର ଫୋର୍ସର ଏକ ସ୍କାର୍ଡନ ବିମାନ ବାହିନୀ ମଧ ଆକାଶ ପଥରେ ପହରା ଦେବାର ନିର୍ଦ୍ଦେଶ ଦିଆଯାଇଛି । ଶେଷରେ କର୍କଶ ସ୍ୱରରେ ଗଡଫ୍ରେ ଚିତ୍କାର କରି କହିଲେ ଯଦି ଆତ୍ମ ସମର୍ପଣ କରିବାକୁ ଇଚ୍ଛା ଥାଏ ତେବେ

ଉଡ଼ାଇ ଦିଅ ଶ୍ୱେତ ଅଥବା ନୀଳ ପତାକା ଏବଂ ସମସ୍ତେ ଉପକୂଳ ଆଡ଼କୁ ମୁହଁ କରି ଦଣ୍ଡାୟମାନ ହୁଅ ।''

ସେହି ଚରମ ସତର୍କବାଣୀ ବେତାର ଯନ୍ତ୍ରରେ ଭାସି ଆସୁଥିବା ବେଳେ ବମ୍ବେର ଜନସାଧାରଣଙ୍କ ମନରେ ସୃଷ୍ଟି ହୋଇ ସାରିଥାଏ ଚରମ ଉତ୍ତେଜନା ଏବଂ ସେମାନେ ତାହାର ପ୍ରତିରୋଧ ପାଇଁ ପ୍ରସ୍ତୁତ ହୋଇସାରି ଥା'ନ୍ତି, ସରକାରୀ ପକ୍ଷ ମଧ ସେଠାରୁ କାର୍ଯ୍ୟରତ ଭାରତୀୟ ସୈନ୍ୟମାନଙ୍କୁ ବ୍ୟାରାକ୍‌କୁ ଫେରି ଯିବାର ନିର୍ଦ୍ଦେଶ ଦେଇ ସେମାନଙ୍କ ସ୍ଥାନରେ ମୁତୟନ କରିଦେଲେ ସାଞ୍ଜୁଆ ଗାଡ଼ି ସହ ଟ୍ୟାଙ୍କ ବାହିନୀ ।

ଜନସାଧାରଣଙ୍କ ହାତରେ କୌଣସି ଅସ୍ତ୍ରଶସ୍ତ୍ର ନଥିଲା । ସେମାନେ ରାସ୍ତାକୁ ଖୋଳି ଦେଇ ଏବଂ ବଡ଼ ବଡ଼ ପଥରରେ ପ୍ରତିବନ୍ଧକ ଦେଇ ବ୍ୟାରିକେଡ଼ ତିଆରି କରିବାରେ ଲାଗି ପଡ଼ିଲେ । ଟେକା ପଥର ଫୋପାଡ଼ି ସୈନ୍ୟମାନଙ୍କ ଗତି ପଥରେ ବାଧା ସୃଷ୍ଟି କଲେ । କିନ୍ତୁ ସୈନ୍ୟମାନେ ଚରମ ନୃଶଂସତା ସହକାରେ ଆଖି ବୁଜା ଗୁଳି ଚାଳନା କରି ଆଗେଇ ଚାଲିଲେ । ବହୁ ସଂଖ୍ୟାରେ ସାଧାରଣ ଲୋକ ମୃତ୍ୟୁବରଣ କଲେ ସୁଦ୍ଧା ଉତ୍ତେଜନା ପ୍ରଶମିତ ହୋଇ ନଥିଲା ।

ସେ ଦିନ ବମ୍ବେରେ ଯାହା ଘଟିଥିଲା, ଭାରତର ସ୍ୱାଧୀନତା ସଂଗ୍ରାମ ଇତିହାସରେ ଅନ୍ୟତ୍ର କ୍ୱଚିତ୍ ତାହା ଘଟିଥିଲା । ସେ ଦିନର ସଠିକ୍ ମୃତ୍ୟୁ ସଂଖ୍ୟା ଏବେ ମଧ ଅଜ୍ଞାତ, ପୁନେ ଓ କରାଚୀରେ ମଧ ସମାନ ଦୃଶ୍ୟ ।

ନୌ ବିଦ୍ରୋହ ଅକପଟ ସଂହତି ଓ ସମର୍ଥନ ଜ୍ଞାପନକାରୀ ଜାତିଧର୍ମ ନିର୍ବିଶେଷରେ ଅସଂଖ୍ୟ ନିରସ୍ତ୍ର ଜନତାର ରକ୍ତ ସହ ବିଦ୍ରୋହୀ ସୈନ୍ୟମାନଙ୍କର ରକ୍ତ ମିଶି ଏକାକାର ହୋଇ ଯାଇଥିଲା । ସେଦିନ ଯେଉଁମାନେ ଶତ୍ରୁ କମାଣର ମୁହାଁ ମୁହିଁ ହୋଇଥିଲେ ସେମାନେ କମାଣ ଗର୍ଜନର ସଙ୍ଗେ ସଙ୍ଗେ ଧରାପୃଷ୍ଠରୁ ହୋଇଥିଲେ ନିଶ୍ଚିହ୍ନ । ଫେବୃୟାରୀ ୨୧ ତାରିଖ ଥିଲା ନୌବିଦ୍ରୋହୀଙ୍କ ଦିନ, କିନ୍ତୁ ୨୨ ତାରିଖ ଥିଲା ଖଟିଖିଆ ମେହେନତି ମଣିଷର ଶୋଷିତ ଶ୍ରମିକର ଦିନ ।

-୪-

ଚରମ ବିଡ଼ମ୍ବନା ଯେ ଅଖଣ୍ଡ ଭାରତର ମୁକ୍ତି ପାଇଁ ସଙ୍ଗଠିତ ସେହି ସଶସ୍ତ୍ର ମୁକ୍ତି ସଂଗ୍ରାମକୁ ତାହାର ସ୍ୱାଭାବିକ ମାର୍ଗରେ ଛାଡ଼ି ନଦେଇ ଜାତୀୟ ନେତୃବୃନ୍ଦ ତୀବ୍ର ଭାବରେ ତାହାର ବିରୋଧ କରିଥିବାରୁ ବିଦ୍ରୋହୀମାନେ ଅଧିକ ବିପଦର ସମ୍ମୁଖୀନ ହେଲେ । କାରଣ ସେମାନଙ୍କର ସମର୍ଥନ ଲାଭକରି ଶତ୍ରୁପକ୍ଷର ନୈତିକ ବଳ ବଢ଼ିଗଲା, ଯାହା ଫଳରେ ସେମାନେ ଅଧିକ ଉଗ୍ରତା ସହକାରେ ବିଦ୍ରୋହୀମାନଙ୍କ ଉପରେ ଆକ୍ରମଣ କଲେ । ବ୍ରିଟିଶ୍ ଶାସକବର୍ଗ ସେମାନଙ୍କ ସାମ୍ରାଜ୍ୟବାଦୀ ସ୍ୱାର୍ଥକୁ ଚିରଦିନ ପାଇଁ ନିରାପଦ ରଖିବା ଲାଗି

ଯେଉଁ ସୁଯୋଗ ଖୋଜୁଥିଲେ ଜାତୀୟ ନେତୃବୃନ୍ଦଙ୍କର ଅହଙ୍କାରୀତା ଓ ଅବିମୃଶ୍ୟକାରିତା ତଥା ଦୁର୍ବାର କ୍ଷମତାଲାଳସା ସେମାନଙ୍କୁ ସେହି ସୁଯୋଗ ଆଣି ଦେଇଥିଲା ଏବଂ ବିଦେଶୀ ଦସ୍ୟୁମାନେ ଧର୍ମ ଭିତ୍ତିରେ ଯେଉଁ ଦେଶକୁ ତିନିଖଣ୍ଡ କରି ଦେବାପାଇଁ ଉଭୟ ଏକ ଗଭୀର ଷଡ଼ଯନ୍ତ୍ରରେ ମଗ୍ନ ଥିଲେ, ସେମାନଙ୍କ ଜୀବନର ସେହି ମାହେନ୍ଦ୍ର ବେଳାରେ ବରଂ ନୌବିଦ୍ରୋହ ଓ ଆସନ୍ନ ବ୍ୟାପକ ସାମରିକ ବିଦ୍ରୋହ ଏକ ଦୁଷ୍ଟ ବ୍ରଣ ଭାବରେ ପ୍ରକାଶିତ ହୋଇଥିଲା; ତେଣୁ ସେହି ବ୍ରଣକୁ ସମୂଳେ ନାଶ କରିବାକୁ ବ୍ରିଟିଶ୍ ଶାସକବର୍ଗଙ୍କ ସହ ମିଶିଗଲେ କଂଗ୍ରେସ ଓ ମୁସ୍‌ଲିମ୍ ଲିଗ୍ ।

ଦୁଇଟି ଯାକ ଦଳ ନୌବିଦ୍ରୋହକୁ 'ତୀବ୍ର ବିରୋଧ କରି ବିବୃତି ପରେ ବିବୃତି ଦେବାକୁ ଲାଗିଲେ ।'

ଦ୍ୱିତୀୟ ମହାଯୁଦ୍ଧର ଫଳଶ୍ରୁତି କେବଳ ଫାଶିବାଦର ପରାଜୟ ଆଣି ଦେଇ ନଥିଲା । ଏକ ଦିଗରେ ନିଷ୍ଠାର ଓ ସତ୍ୟର ବିଲୁପ୍ତ, ବ୍ୟକ୍ତିଗତ ପ୍ରବୃତ୍ତିକୁ ଚରିତାର୍ଥ କରିବା ନିମନ୍ତେ ଜନସ୍ୱାର୍ଥ ରକ୍ଷାର କାମୋଫ୍ଲାଜ ବା ଛଳନା, ଦେଶ ପ୍ରେମର ଉପେକ୍ଷା ଓ ଅନ୍ୟ ଦିଗରେ ସାରା ପୃଥିବୀର ଅସଂଖ୍ୟ ବ୍ରିଟିଶ୍ ଉପନିବେଶର ମୁକ୍ତି ପାଇଁ ଅଦମନୀୟ ଆକାଂକ୍ଷା ଏବଂ ସର୍ବାତ୍ମକ ସଶସ୍ତ୍ର ବିପ୍ଳବ ପାଇଁ ଭାରତର ପରିସ୍ଥିତି ଥିଲା ସମ୍ପୂର୍ଣ୍ଣ ଅନୁକୂଳ । ଯୁଦ୍ଧୋତ୍ତର ଭାରତର ସୈନ୍ୟ ବାହିନୀରେ ଛଟେଇରେ ଆତଙ୍କିତ ସୈନ୍ୟମାନେ ମଧ୍ୟ ଚାହୁଁଥିଲେ ଦେଶର ସ୍ୱାଧୀନତା ଏବଂ ଏକ ଦେଶପ୍ରେମୀ ସରକାର । ଅଖଣ୍ଡ ଭାରତରେ ସେଭଳି ଏକ ସରକାର ଗଢ଼ିବାର ସମ୍ଭାବନାକୁ ବଳ ନଦେବା ଫଳରେ ସବୁଦିନ ପାଇଁ ଦେଶ ଉପରେ ଓହ୍ଲାଇ ଆସିଲା ଦୁର୍ଦ୍ଦିନ ଏବଂ ସାମ୍ପ୍ରଦାୟିକ ବିଷୟରେ ଜର୍ଜରିତ ଏକ ଘୁଣ୍‌ଣ ସମାଜ ଏବଂ ଜନ ବିରୋଧୀ ଶାସନ ବ୍ୟବସ୍ଥା ।

ନେତାଜୀଙ୍କର ଅକଳ୍ପନୀୟ ବୀରତ୍ୱ ଓ ଆଜାଦ୍ ହିନ୍ଦ୍ ଫୌଜର ଲାଲକିଲ୍ଲା ବିଚାର, ବେସାମରିକ ନିରାପତ୍ତା ବାହିନୀ, ପୋଲିସ୍ ବାହିନୀର ଧର୍ମଘଟ, ଶିଳ୍ପ ଶ୍ରମିକ ଧର୍ମଘଟ, କୃଷକ ଆନ୍ଦୋଳନ ପ୍ରଭୃତି ସବୁ ମିଶି ସେତେବେଳେ ଦେଶରେ ଏକ ବୈପ୍ଳବିକ ପରିସ୍ଥିତି ସୃଷ୍ଟି କରିଥିଲା । ସେହିପରି ନୌବାହିନୀରେ ଆରମ୍ଭ ହୋଇଥିବା ବିଦ୍ରୋହ ଅନ୍ୟାନ୍ୟ ସୈନ୍ୟ ବିଭାଗ ଯଥା ସ୍ଥଳ ଓ ଆକାଶ ବାହିନୀକୁ ସମ୍ପ୍ରସାରିତ ହେବା ଏବଂ ବମ୍ବେରୁ ଆରମ୍ଭ ହୋଇଥିବା ବିଦ୍ରୋହ ଦେଶର ଅନ୍ୟାନ୍ୟ କାଣ୍ଟନ୍‌ମେଣ୍ଟକୁ ମାଡିଯିବା କିଛି କମ୍ ଗୁରୁତ୍ୱପୂର୍ଣ୍ଣ ନଥିଲା । ସେ ସବୁଥିରେ ମିଶିଥିଲା ଜନସାଧାରଣଙ୍କର ସ୍ୱତଃସ୍ଫୂର୍ତ୍ତ ଅଭ୍ୟୁତ୍ଥାନ । ଏଭଳି ବୈପ୍ଳବିକ ପରିସ୍ଥିତିର ସୁଯୋଗ ଯଦି ଜାତୀୟ ନେତୃବୃନ୍ଦ ନେଇ ନ ପାରିଲେ ତେବେ ତାହା ଅପେକ୍ଷା ଅଧିକ ଦୁର୍ଭାଗ୍ୟଜନକ ଆଉ କ'ଣ ହୋଇଥାନ୍ତା ? ସେଭଳି ଗଣ ଅଭ୍ୟୁଦ୍‌ଥାନକୁ ବିରୋଧକରି ନେତୃବୃନ୍ଦ ତେବେ କଣ ପ୍ରମାଣ କରିବାକୁ ଚାହୁଥିଲେ । ସେମାନେ କୁଆଡ଼େ ଚାହୁଁଥିଲେ ସୁରୁଖୁରୁ ଓ ଶାନ୍ତିପୂର୍ଣ୍ଣ ମାର୍ଗରେ କ୍ଷମତା ହସ୍ତାନ୍ତର, କେତେଦୂର ଶାନ୍ତିପୂର୍ଣ୍ଣ ଓ ବିନା ରକ୍ତପାତରେ ହୋଇଥିଲା ସେ କ୍ଷମତା ହସ୍ତାନ୍ତର !

ନୌବିଦ୍ରୋହୀମାନେ ଯେତେବେଳେ ଚରମ ଦୂରାବସ୍ଥା ଭିତରେ ରହିଥିଲେ, ସେତେବେଳେ କଂଗ୍ରେସ ନେତାମାନେ ସେମାନଙ୍କୁ ପ୍ରକାଶ୍ୟ ସମାଲୋଚନା କଲେ । ''ଆପଣମାନଙ୍କ ଦାବୀ ପୂରଣ କରିବ କଂଗ୍ରେସ । ଆପଣମାନଙ୍କ ଉପରେ ଯେପରି କୌଣସି ଶାସ୍ତିମୂଳକ ବ୍ୟବସ୍ଥା ନହୁଏ ତାହା ଦେଖିବା ଦାୟିତ୍ୱ କଂଗ୍ରେସର, ଆପଣମାନେ ମୋ ଉପରେ ଭରସା ରଖନ୍ତୁ, ବିଶ୍ୱାସ ରଖନ୍ତୁ, ଆପଣମାନେ ଆତ୍ମସମର୍ପଣ କରନ୍ତୁ ।'' ଏହା ଥିଲା ସର୍ଦ୍ଦାର ପଟେଲଙ୍କ ଉକ୍ତି । ଅନ୍ୟତମ ଦକ୍ଷିଣ ପନ୍ଥୀ କଂଗ୍ରେସ ନେତା କେ.ଏମ୍.ମୁନ୍‌ସିଙ୍କ ଭାଷାରେ ''ବିଦ୍ରୋହୀ ନୌସୈନ୍ୟମାନଙ୍କୁ ଆତ୍ମ ସମର୍ପଣ କରିବାର ନିର୍ଦ୍ଦେଶ ଦେଇ ସର୍ଦ୍ଦାର ପଟେଲ ବମ୍ବେ ସହରକୁ ଓ ଭାରତବର୍ଷକୁ ଏକ ସର୍ବନାଶରୁ ରକ୍ଷା କରିଅଛନ୍ତି । କଂଗ୍ରେସର ନିର୍ଦ୍ଦେଶ ଏବଂ ଶୃଙ୍ଖଳା କୁ ଭଙ୍ଗ କରିବାର ସମୟ ଏ ପର୍ଯ୍ୟନ୍ତ ଆସିନାହିଁ । ତଥାକଥିତ ଦଙ୍ଗାର ପ୍ରକୃତି ସମ୍ପର୍କରେ ସମସ୍ତେ ସଚେତନ ହେବା ଉଚିତ୍ । ରାସ୍ତାରେ ସଶସ୍ତ୍ର ସଂଗ୍ରାମ କିପରି କରିବାକୁ ହୁଏ ତାହାର ସୁଚିନ୍ତିତ ଯୋଜନା ହୋଇଥିବା ଭଳି ମନେହୁଏ । କଂଗ୍ରେସ ହାତରୁ ଗଣ ଅଭ୍ୟୁଦ୍‌ଥାନର ନେତୃତ୍ୱ ଛଡ଼ାଇ ନେବାର ମତଲବ ଏଥିରେ ରହିଥିବାର ଆଶଙ୍କା ଅମୂଳକ ନୁହେଁ ।'' ତା ପରେ ମୁନସୀ ପୋଲିସ୍ ର ନୃଶଂସତାକୁ ପ୍ରଶଂସା କରି କହିଥିଲେ, ବମ୍ବେ ପୋଲିସ୍‌ର କର୍ମ ନିପୁଣତା ଓ ଦକ୍ଷତା ଅତ୍ୟନ୍ତ ପ୍ରଶଂସାର୍ହ । କିନ୍ତୁ ମୂଳରୁ କାହିଁକି ପୋଲିସ୍ ଆଇନ୍‌ଜାରୀ ନକଲେ ତାହାହିଁ ବିସ୍ମୟ ଜନକ ।

ଭାରତ ବିଭାଜନର ଅନ୍ୟତମ ଖଳନାୟକ ମୁସ୍‌ଲିମ୍ ଲିଗ୍‌ର ଏମ.ଏ. ଜିନ୍ନା କଂଗ୍ରେସ ସହ କଣ୍ଠ ମିଳାଇ କଲିକତାଠାରେ ଦେଇଥିବା ଏକ ବିବୃତିରେ ନୌବିଦ୍ରୋହକୁ ସମାଲୋଚନା କରିବା ସଙ୍ଗେ ସଙ୍ଗେ ସେଥିରେ ମଧ ସାମ୍ପ୍ରଦାୟିକତାର ବିଷ ଭର୍ତ୍ତି କରିବାକୁ ଅପଚେଷ୍ଟା କରିଥିଲେ । ସେ କହିଥିଲେ, ''ମୁସଲମାନ୍ ବିଦ୍ରୋହୀମାନଙ୍କୁ ମୁଁ ବିଶେଷ ଭାବେ ଅନୁରୋଧ କରୁଅଛି ଯେ ସେମାନେ ଏହି ବିଦ୍ରୋହରୁ କ୍ଷାନ୍ତ ହୁଅନ୍ତୁ ।''

ହିନ୍ଦୁ ମୁସ୍‌ଲିମ୍ ଐକ୍ୟ ଯେଉଁ ବିଦ୍ରୋହର ଥିଲା ମୂଳମନ୍ତ୍ର ତାହା ଭିତରେ ଧର୍ମୀୟ ବିଭେଦର ବିଷ ମଞ୍ଜି ବୁଣିବା ପାଇଁ ନେତାମାନେ କେତେ ତଳକୁ ଓହ୍ଲାଇ ଯାଇଥିଲେ, ଜିନ୍ନାଙ୍କର ଭାଷଣ ଥିଲା ତାହାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ।

ନୌବିଦ୍ରୋହ ଫଳରେ ବ୍ରିଟିଶ୍ ସାମ୍ରାଜ୍ୟବାଦ ଏଭଳି ଆଲୋଡ଼ିତ ଓ ବିଚଳିତ ହୋଇ ପଡ଼ିଥିଲା ଯେ ବ୍ରିଟେନ୍‌ର ସମ୍ବାଦପତ୍ରମାନେ ମଧ ସେଥିରେ ପ୍ରଭାବିତ ହୋଇଥିଲେ । ଆଠଗୋଟି ଜାତୀୟ ସ୍ତରର ସମ୍ବାଦପତ୍ର ମଧ୍ୟରୁ ସାତଗୋଟି ସମ୍ବାଦପତ୍ରରେ ନୌବିଦ୍ରୋହ ସମ୍ପର୍କରେ ଦୈନିକ ଚାଞ୍ଚଲ୍ୟକର ସମ୍ବାଦ ପରିବେଶିତ ହେଲା । ଜାଠ ଦଳର ମୁଖପାତ୍ର ଡେଲି ଏକ୍ସପ୍ରେସ୍‌ରେ ବମ୍ବେ ସହରରେ ବିକ୍ଷୋଭ ସମ୍ପର୍କରେ ଆକର୍ଷଣୀୟ ଶୀର୍ଷକଂରେ ଲେଖିଥିଲେ Mob out of Hand, ଜନତା ନିୟନ୍ତ୍ରଣ ବାହାରେ । ଡେଲି ମିରର୍- "Doom threat to mutineers" (ବିଦ୍ରୋହୀମାନଙ୍କର ସର୍ବନାଶ ଆସନ୍ନ ଅଟେ) ।

ଡେଲି ହେରାଲ୍ଡ ଲେଖିଲେ "Army Peaceman told stop Navy Strikes" ଡେଲି ହେରାଲ୍ଡର ସମ୍ବାଦଦାତା ସଦର୍ଣ୍ଣ କମାଣ୍ଡରଙ୍କ କମାଣ୍ଡର ଇନ୍ ଚିଫ୍ ଜେନେରାଲ୍ ଲବ୍ ହାଟର ବମ୍ବେ ଆଗମନ ସମ୍ପର୍କରେ ଲେଖିଲେ ଯେ ''ନୌବାହିନୀ ଅଧକ୍ଷଙ୍କ ପରିବର୍ତ୍ତେ ବମ୍ବେକୁ ଜଣେ ଆର୍ମି କମାଣ୍ଡରଙ୍କ ଆଗମନ ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ ଏବଂ ତାହା ପରିସ୍ଥିତର ସାଂଘାତିକ ପରିଣତିର ସୂଚନା ଦିଏ ।

'ଡେଲି ଏକ୍ସପ୍ରେସ୍' ଓ 'ଡେଲି ମେଲ' କଠୋର ହସ୍ତରେ ନୌବିଦ୍ରୋହକୁ ଦମନ କରିବା ପାଇଁ ସମ୍ପାଦକୀୟ ଅଗ୍ରଲେଖାରେ ପ୍ରକାଶ କରିଥିଲେ । କିନ୍ତୁ ବ୍ରିଟିଶ୍ କମ୍ୟୁନିଷ୍ଟ ପାର୍ଟିର କଣ୍ଠସ୍ୱର ଥିଲା ସମ୍ପୂର୍ଣ୍ଣ ଭିନ୍ନ । ରଏଟର ସମ୍ବାଦ ସଂସ୍ଥାର ୧୯୪୬ ଫେବୃୟାରୀ ୨୨ ତାରିଖରେ ପ୍ରେରିତ ସମ୍ବାଦ ପ୍ରାୟ ଅଧିକାଂଶ ସମ୍ବାଦପତ୍ରରେ ପ୍ରକାଶିତ ହୋଇଥିଲା ।

''ଭାରତରେ ବ୍ରିଟିଶ୍ ଶାସନ ବିରୁଦ୍ଧରେ ଗଣ ଆନ୍ଦୋଳନରେ ଚାପ ଓ ବିକ୍ଷୋଭର ତରଙ୍ଗ ଗୁଡ଼ିକ ଏହି ନୌବିଦ୍ରୋହ ମାଧମରେ ଚରମ ସ୍ତରରେ ଉପନୀତ ହୋଇଅଛି । ଭାରତବର୍ଷ ସ୍ୱାଧୀନତା ଚାହେଁ କିନ୍ତୁ ବ୍ରିଟିଶ୍ ସରକାର ସେ ସମ୍ବନ୍ଧରେ ଆଜି ପର୍ଯ୍ୟନ୍ତ ଯାହା କିଛି ଉପସ୍ଥାପିତ କରି ଅଛନ୍ତି ସେଥିରେ ବ୍ରିଟିଶ୍ ସାମ୍ରାଜ୍ୟବାଦର ସୁଚତୁର ଭେଦନୀତି ସର୍ବଦା ପରିଲକ୍ଷିତ ହୋଇଅଛି ।''

''କ୍ରମବର୍ଦ୍ଧମାନ ଦୁର୍ଭିକ୍ଷ ପରିସ୍ଥିତିରେ ପଟ୍ଟଭୂମିକା ମଧ ମନେ ରଖିବା ଆବଶ୍ୟକ । ଏଭଳି ଏକ ପରିବେଶରେ ବ୍ରିଟିଶ୍ କ୍ୟାବିନେଟ୍ ମିଶନ ଭାରତ ଆସିଅଛି । ଏ ବିଷୟରେ କୌଣସି ଭ୍ରମଧାରଣା ରହିବା ଉଚିତ୍ ନୁହେଁ ଯେ ବ୍ରିଟିଶ୍ ଗଭର୍ଣ୍ଣମେଣ୍ଟର ଘୋଷିତ ନୀତିର ଯଦି ପରିବର୍ତ୍ତନ ନହୁଏ ତାହାର ଉଦ୍ଦେଶ୍ୟ ବ୍ୟର୍ଥ ହେବାକୁ ବାଧ ହେବ । ଭାରତୀୟ ଜନମତ ଏଭଳି କୌଣସି ଶାସନ ବିଧାୟକ ସଭା ପ୍ରସ୍ତାବରେ ରାଜି ହେବେ ନାହିଁ, ଯାହାକି ବ୍ରିଟିଶ୍ ଅନୁଗତମାନଙ୍କ ଦ୍ୱାରା ଭାରାକ୍ରାନ୍ତ ହୋଇଥିବ, ବିଶେଷତଃ ଯଦି ସେଥିରେ ସାମନ୍ତବାଦୀ ରାଜନ୍ୟବର୍ଗ ଅଧିକ ପ୍ରଭାବଶାଳୀ ହୋଇଥିବେ ଭାରତୀୟ ଜନସାଧାରଣଙ୍କ ନିର୍ବାଚିତ ପ୍ରତିନିଧିମାନଙ୍କୁ ଛାଡ଼ି ଅନ୍ୟ କାହାରି ହସ୍ତକ୍ଷେପ ଭାରତବାସୀ କଦାପି ସ୍ୱୀକାର କରିବେ ନାହିଁ ।''

ବ୍ରିଟେନ୍‌ର କମ୍ୟୁନିଷ୍ଟମାନେ ବ୍ରିଟିଶ୍ ପ୍ରସ୍ତାବରେ ଅନ୍ତର୍ନିହିତ ଯେଉଁ ଭେଦ ନୀତି ସମ୍ବନ୍ଧରେ ସତର୍କ କରାଇ ଦେଇଥିଲେ, କଂଗ୍ରେସ ନେତୃବୃନ୍ଦ ଶେଷ ସୁଦ୍ଧା ସେହି ସୁଚତୁର ଭେଦନୀତିର ଶିକାର ହୋଇ ଦେଶକୁ ଖଣ୍ଡ ଖଣ୍ଡ କରିଦେଲେ । ନୌବିଦ୍ରୋହ ଦ୍ୱାରା ଉଦ୍‌ଭୂତ ବୈପ୍ଳବିକ ପରିବେଶରେ ଦେଶ ବିଭାଜନ କଳ୍ପନାତୀତ ଥିଲା । ବୈପ୍ଳବିକ ଆନ୍ଦୋଳନ ପ୍ରତି କଂଗ୍ରେସର ଭୟ ଏବଂ କ୍ଷମତା ଲାଭ କରିବାର ଦୁର୍ବାର ଲାଳସା ହେଲା ସେହି ଦୁର୍ଭାଗ୍ୟର ଏକମାତ୍ର କାରଣ ।

ଜାତୀୟ ନେତୃବୃନ୍ଦଙ୍କର ପ୍ରକାଶ୍ୟ ବିରୋଧ, ବ୍ରିଟିଶ୍ ତୋପ କମାଣରେ ଶହ ଶହ

ଜନସାଧାରଣଙ୍କୁ ନୃଶଂସ ହତ୍ୟା ଏବଂ ଯୁଦ୍ଧ ବନ୍ଦ କରିବା ପାଇଁ କଂଗ୍ରେସ ଓ ଲିଗ୍‌ର ଘନ ଘନ ଆହ୍ୱାନ ଫଳରେ ବିଦ୍ରୋହୀଙ୍କ ମନୋବଳ ଭାଙ୍ଗିବାକୁ ଲାଗିଲା । ସ୍ଥଳଭାଗରେ ବାସ କରୁଥିବା ସୈନିକ ପରିବାର ଭୋଗ କରୁଥିବା ଅକଥନୀୟ ଦୁଃଖ ଦୁର୍ଦ୍ଦଶା ଏବଂ ଜାହାଜମାନଙ୍କରେ ଅନୁଭୂତ ଖାଦ୍ୟାଭାବ କେତେକ ବିଦ୍ରୋହୀଙ୍କ ମନକୁ ଆହୁରି ଦୁର୍ବଳ କରି ଦେଉଥିଲା । ୨୨ ତାରିଖ ରାତି ସୁଦ୍ଧା ଏଭଳି ପରିସ୍ଥିତି ସୃଷ୍ଟି ହୋଇଗଲା ଯେ ବିଦ୍ରୋହୀମାନେ ଯୁଦ୍ଧ ବନ୍ଦ କରିବାର ପ୍ରସ୍ତାବ ସମର୍ଥନ କରିବାକୁ ବାଧ ହୋଇଥିଲେ । ଷ୍ଟ୍ରାଇକ୍ କମିଟି ଜାତୀୟ ନେତୃବୃନ୍ଦଙ୍କ ନିବେଦନକୁ ବିଚାର କରି ସିଦ୍ଧାନ୍ତରେ ପହଞ୍ଚିଥିଲେ ଯେ ଯୁଦ୍ଧ ବିରତିର ପରବର୍ତ୍ତୀ ପରିସ୍ଥିତିକୁ ଜାତୀୟ ନେତୃବୃନ୍ଦ ହିଁ ସମାଧାନ କରିପାରିବେ । ଏଠାରେ ଏହା ବିଶେଷ ଉଲ୍ଲେଖ ଯୋଗ୍ୟ ଯେ ବ୍ରିଟିଶ୍ ପ୍ରଧାନମନ୍ତ୍ରୀ ନୌବିଦ୍ରୋହ ସମ୍ବାଦ ପାଇବା ସଙ୍ଗେ ସଙ୍ଗେ ଘୋଷଣା କରିଦେଲେ ଯେ ''ଭାରତକୁ ଯଥା ଶୀଘ୍ର ସ୍ୱାଧୀନତା ଦିଆଯିବ ।'' ସେହି ଘୋଷଣା ଦୃଷ୍ଟିରୁ ଇଂରେଜମାନଙ୍କ ଭାରତ ପରିତ୍ୟାଗ ଆସନ୍ନ ହୋଇ ଯାଇଥିଲା । କିନ୍ତୁ କେଉଁ ଅବସ୍ଥାରେ ସେମାନେ ଭାରତ ପରିତ୍ୟାଗ କରିବେ ଏବଂ କାହା ହାତକୁ କ୍ଷମତା ହସ୍ତାନ୍ତର କରାଯିବ ତାର ଠିକି ନିଖ୍ ବ୍ୟବସ୍ଥା ପ୍ରକାଶିତ ହେବା ପାଇଁ ତଥାପି ସମୟ ବାକି ଥିଲା । ତେଣେ ୧୯୪୦ ମସିହାରୁ ଚାଲି ଆସିଥିବା ମୁସଲିମ୍ ଲିଗ୍‌ର ପାକସ୍ଥାନୀ ଦାବୀ ଅଧିକ ଦୃଢ଼ ହେଉଥିଲା । ଦେଶ ବିଭାଜନର ସେହି ଆଶଙ୍କାକୁ ସବୁଦିନ ପାଇଁ ନିଶ୍ଚିହ୍ନ କରିଦେବା ପାଇଁ ଏକମାତ୍ର ମାର୍ଗ ଥିଲା ସଶସ୍ତ୍ର ବିପ୍ଳବ ଏବଂ ତାହାର ପ୍ରଥମ ସୂଚନା ଥିଲା ନୌ ବିଦ୍ରୋହ । ଦୁର୍ଭାଗ୍ୟର କଥା କଂଗ୍ରେସ ନେତୃବୃନ୍ଦ ତାହାର ତୀବ୍ର ବିରୋଧ କରିବାରୁ ତାହାର ଫଳଶ୍ରୁତି ହୋଇଛି ବ୍ରିଟିଶ୍ କର୍ତ୍ତୃକ ସୃଷ୍ଟ ଧ୍ୱଂସଲୀଳା ।

ସେ ସବୁ କଥା ବିଚାର କରି ଷ୍ଟ୍ରାଇକ୍ କମିଟି ସେହି ଜାତୀୟ ନେତୃବୃନ୍ଦଙ୍କ ଉପରେ ସେମାନଙ୍କର ତଥା ଦେଶର ଭବିଷ୍ୟତକୁ ପରିଷ୍କାର ଶବ୍ଦରେ ଘୋଷଣା କଲେ ଯେ ଏହି ଯୁଦ୍ଧ ବିରତିକୁ ଯଦି ଆତ୍ମ ସମର୍ପଣ ବୋଲି କୁହାଯାଏ ତେବେ ତାହାକୁ ବ୍ରିଟିଶ୍ କର୍ତ୍ତୃପକ୍ଷ ସମକ୍ଷରେ ନୁହେଁ ଭାରତର ଜନଗଣଙ୍କ ସମକ୍ଷରେ ହେବ ସେହି ଆତ୍ମ ସମର୍ପଣ । (Surrender not before any foreigner but before the people of India, or motherland) କି ଅପୂର୍ବ ଦେଶ ପ୍ରୀତି !

ଫେବୃୟାରୀ ୨୩ ତାରିଖ ପୁନେଠାରେ ଗାନ୍ଧିଜୀ ଯେଉଁ ବିବୃତି ଦେଇଥିଲେ ତାହା କମ ତାତ୍ପର୍ଯ୍ୟପୂର୍ଣ୍ଣ ନୁହେଁ । ଏଥିରେ କଂଗ୍ରେସ ନୀତିର ପୁନରାବୃତ୍ତି ହୋଇଥିବା ସଙ୍ଗେ ସଙ୍ଗେ ସେଥିରେ ହିଂସା-ଅହିଂସାର ତାତ୍ତ୍ୱିକ ଆଲୋଚନା ମଧ୍ୟ ହୋଇଥିଲା ।

''ଦେଶର ଘଟଣାବଳୀ ଅତି ବେଦନା ସହକାରେ ମୁଁ ଲକ୍ଷ୍ୟ କରୁଅଛି । ନୌବାହିନୀର ଯେଉଁ ବିଦ୍ରୋହ ଆରମ୍ଭ ହୋଇଛି ଏବଂ ଯାହାକୁ ଅନୁସରଣ କରି ଅନ୍ୟତ୍ର ଯାହାସବୁ ଘଟୁଛି- ତାହା ଆଦୌ ଅହିଂସା ନୁହେଁ । ଯେତେବେଳେ କାହାକୁ ଜୟହିନ୍ଦ କିମ୍ବା ଅନ୍ୟ କୌଣସି

ଲୋକପ୍ରିୟ ସ୍ଲୋଗାନ୍ ଦେବା ପାଇଁ ବାଧ କରାଯାଏ ଲକ୍ଷ କୋଟି ଜନସାଧାରଣଙ୍କର ପାଇଁ ଉଦ୍ଦିଷ୍ଟ 'ସ୍ୱରାଜ' ର ତାହା ବାଧକ ହୁଏ । ଗିର୍ଜା ଧ୍ୱଂସ କରିବା କିମ୍ବା ସେହିଭଳି କୌଣସି ସମ୍ପତ୍ତିର ଧ୍ୱଂସ କରିବା କଂଗ୍ରେସ ସମର୍ଥୀତ ସ୍ୱରାଜ୍ୟର ପଥ ନୁହେଁ । ଟ୍ରାମ୍, ବସ ପୋଡ଼ି ସମ୍ପତ୍ତି ଧ୍ୱଂସ କରିବା, ୟୁରୋପିୟମାନଙ୍କୁ 'ଅପମାନିତ ବା ଆହତ କରିବା ମୋ ଦ୍ୱାରା ସମର୍ଥିତ ଅହିଂସା ତ ଦୂରର କଥା, କଂଗ୍ରେସ ସମର୍ଥିତ ଅହିଂସା ମଧ ନୁହେଁ । ଏହି ସଂଗ୍ରାମରେ ସଂଶ୍ଳିଷ୍ଟ ସମସ୍ତ ପରିଚିତ ଅପରିଚିତ ନେତାମାନଙ୍କ ନିକଟରୁ ମୁଁ ଏହି ବିଚାର ହିଂସା ଜନିତ ଉନ୍ମାଦନା ସମ୍ପର୍କରେ ଚିନ୍ତନ ଓ ପୁନର୍ବିବେଚନା ପାଇଁ ନିବେଦନ କରୁଅଛି ଏବଂ ଏହି ମାର୍ଗରୁ ବିରତ ହେବା ପାଇଁ ମୁଁ ଅନୁରୋଧ କରୁଅଛି । ପୃଥିବୀବାସୀ ଯେପରି ଏହା ମନେ ନ କରନ୍ତି ଯେ କଂଗ୍ରେସର ଭାରତବର୍ଷ କେବଳ ମୁହଁରେ ଅହିଂସା କଥା କୁହନ୍ତି କିନ୍ତୁ କାର୍ଯ୍ୟ କ୍ଷେତ୍ରରେ ବିଶେଷତଃ ଚରମ ପରୀକ୍ଷା ସମୟରେ ଅନ୍ୟ ପନ୍ଥା ଗ୍ରହଣ କରନ୍ତି । ମୁଁ ଜାଣିଶୁଣି ବିବେଚନା ହୀନ ଶବ୍ଦ ପ୍ରୟୋଗ କରୁଅଛି କାରଣ ବିଚାର ଓ ବିବେଚନା ସମ୍ମତ ସହିଂସ ପଥ ମଧ ଅଛି ।

ମୁଁ ଆଜି ଯେଉଁ ସହିଂସ କାର୍ଯ୍ୟକଳାପ ଦେଖୁଅଛି ତାହା ସତକୁ ସତ ବିବେଚନାହୀନ । ଯଦି ନୌବାହିନୀର ସୈନିକମାନେ ଅହିଂସାର ତାତ୍ପର୍ଯ୍ୟ ବୁଝିଥାନ୍ତେ ତେବେ ଅହିଂସ ପ୍ରତିରୋଧର ପଥ ଗୌରବମୟ ପୁରୁଷୋଚିତ ବୋଲି ସମବେତ ଭାବେ ପ୍ରୟୋଗ କରି ପାରିଥାନ୍ତେ, ଏହି ପଥ ପ୍ରତ୍ୟେକଙ୍କ ପାଇଁ ସବୁବେଳେ ପ୍ରଯୁଜ୍ୟ । ନାବିକମାନେ ସେମାନଙ୍କ ବର୍ତ୍ତମାନ କାର୍ଯ୍ୟକଳାପ ଦ୍ୱାରା ଏକ ଖରାପ ଓ ଅଯୋଗ୍ୟ ଦୃଷ୍ଟାନ୍ତ ସୃଷ୍ଟି କରିଅଛନ୍ତି ।''

ହିନ୍ଦୁ ମୁସଲମାନ ଓ ଅନ୍ୟାନ୍ୟ ସମ୍ପ୍ରଦାୟ ମଧ୍ୟରେ ହିଂସାମୂଳକ କାର୍ଯ୍ୟକଳାପ ଦ୍ୱାରା ଯେଉଁ ମିଳନ ହୁଏ ତାହା ଅଶୁଭ ଏବଂ ହୁଏତ ଏହି ମାର୍ଗରେ ନିଜ ମଧ୍ୟରେ ହିଂସାତ୍ମକ କାର୍ଯ୍ୟକଳାପ ପାଇଁ ପ୍ରସ୍ତୁତି ବୋଲି ପରିଣତି ଲବ୍ଧ ହୋଇପାରେ- ନେତା ଓ ବିଶ୍ୱ ପାଇଁ ଯାହା ଖୁବ୍ କ୍ଷତିକାରକ ମଧ ହୋଇ ପାରେ ।

ଇଂରେଜ ଶାସକମାନେ ଭାରତୀୟମାନଙ୍କ ହାତରେ ଶାସନ କ୍ଷମତା ହସ୍ତାନ୍ତର କରି ଚାଲିଯିବା ପାଇଁ ଘୋଷଣା କରି ଅଛନ୍ତି । ଜନସାଧାରଣଙ୍କ ହୃଦୟ ମଧ୍ୟରେ ଲୁକ୍କାୟିତ ତିକ୍ତ ଅସନ୍ତୋଷର ବିକ୍ଷୁବ୍ଧ ପ୍ରକାଶ ଯେପରି ସେହି ବିଦାୟ ମୁହୂର୍ତ୍ତକୁ କୌଣସି କାରଣରୁ ବିଳମ୍ବିତ ନ କରେ । ଏଥିରେ କୌଣସି ସନ୍ଦେହ ନାହିଁ ଯେ ଏହି ବିକ୍ଷୋଭର ଶକ୍ତି ସୀମାହୀନ ଅଟେ । କିନ୍ତୁ ଏହାର ବ୍ୟବହାର ପ୍ରୟୋଜନାତିରିକ୍ତ ହେବା ଉଚିତ୍ ନୁହେଁ । କାରଣ ଏ ଦେଶ ବହୁଦିନରୁ ପର ପଦାନତ ହୋଇ ରହିଛି ।

ନୌବିଦ୍ରୋହ ଜନିତ ସ୍ୱାଭାବିକ ହିଂସା ଗାନ୍ଧିଜୀଙ୍କୁ ବିବ୍ରତ କରି ପାରିଥାଏ, କିମ୍ବା ଇଂରେଜମାନଙ୍କ ପାଇଁ ତାଙ୍କର ଅତ୍ୟଧିକ ସମ୍ବେଦନଶୀଳତା ଯୋଗୁଁ ସେ ଭାରତୀୟମାନଙ୍କର ରକ୍ତପାତ ଅପେକ୍ଷା ଇଂରେଜମାନଙ୍କ ରକ୍ତକ୍ଷୟକୁ ଅଧିକ ଗୁରୁତ୍ୱ ଦେଇ

ପାରିଥାନ୍ତି । କିନ୍ତୁ ତଥାକଥିତ ସ୍ୱାଧୀନତା ପ୍ରାପ୍ତି କାଳୀନ ବିପୁଳ ଲୋକକ୍ଷୟ ଏବଂ ଅମାନୁଷିକ ହତ୍ୟାକାଣ୍ଡ ତଥା ଅବର୍ଣ୍ଣନୀୟ ଦୁଃଖ ଦୁର୍ଦ୍ଦଶା ଅପେକ୍ଷା ନୌବିଦ୍ରୋହର ହିଂସାକାଣ୍ଡ ଓ ତଜ୍ଜନିତ ଲୋକକ୍ଷୟ କୌଣସି ଗୁଣରେ ଅଧିକ ଲୋମହର୍ଷକ ହୋଇ ନଥିଲା । ତଥାପି ଜାତୀୟ ନେତୃବୃନ୍ଦଙ୍କର ଐକାନ୍ତିକ ନିବେଦନକୁ ବିଚାର କରି ବିଦ୍ରୋହୀମାନେ ଯୁଦ୍ଧ ବନ୍ଦ କଲେ ସତ୍ୟ କିନ୍ତୁ ପରବର୍ତ୍ତୀ ପରିସ୍ଥିତିରେ କୌଣସି ଦାୟ ଦାୟିତ୍ୱ ସେମାନେ ନେଲେ ନାହିଁ । ଜାତୀୟ ନେତୃବୃନ୍ଦ ସରକାରୀ ପକ୍ଷମାନଙ୍କ ସମ୍ମୁଖରେ ନିଜକୁ ଅତ୍ୟନ୍ତ ଦୁର୍ବଳ ବୋଲି ଅନୁଭବ କରୁଥିଲେ । କାରଣ କଂଗ୍ରେସ ଓ ମୁସ୍‌ଲିମ୍ ଲିଗ୍ ବ୍ରିଟିଶ୍ ପକ୍ଷକୁ ଖୁସି ରଖି ସେମାନଙ୍କ ଠାରୁ ଲାଭ ଆଦାୟ କରିବାରେ ଲାଗିଥିଲେ ସ୍ୱ ସ୍ୱ କ୍ଷମତା ଲିପ୍ସା ଚରିତାର୍ଥ କରିବା ପାଇଁ । ନୌବିଦ୍ରୋହୀଙ୍କ ସ୍ୱାର୍ଥ ବା ସମ୍ମାନକୁ ବଳି ଦେବାବେଳେ ସେମାନଙ୍କ ବିବେକ ବାଧା ଦେଲା ନାହିଁ । ଓଲଟା ସେମାନଙ୍କ ମଧ୍ୟରୁ ବହୁନେତା ପ୍ରକାଶ୍ୟରେ କହୁଥିଲେ- ''ସେମାନେ ଯେମିତି କରିଛନ୍ତି ସେମିତି ପାଇବେ ।''

ଏହିଭଳି ଭାବରେ ସର୍ବାତ୍ମକ ସଶସ୍ତ୍ର ବିଦ୍ରୋହର ବିଜୟର ପଥ ରୁଦ୍ଧ ହୋଇ ଭାରତରେ ପ୍ରତିବିପ୍ଳବ ଶକ୍ତିଶାଳୀ ହୋଇଅଛି ।



# ସିଂହାବଲୋକନ

ପ୍ରାୟ ଦୁଇଶହ ବର୍ଷଧରି ଦେଶରେ ସ୍ୱାଧୀନତା ପ୍ରାପ୍ତି ଓ ବ୍ରିଟିଶ୍ ଶାସନର ଲୋପ ପାଇଁ ଯେଉଁ ସଶସ୍ତ୍ର ବିଦ୍ରୋହ ହୋଇଛି, ତାହାର ଇତିହାସ ପର୍ଯ୍ୟାଲୋଚନା କଲେ ଏହି ନିର୍ବିବାଦୀୟ ସିଦ୍ଧାନ୍ତରେ ଉପନୀତ ହେବାକୁ ହୁଏ ଯେ ୧୯୪୫-୪୬ରେ ଯେଉଁ ସର୍ବାତ୍ମକ ସଶସ୍ତ୍ର ସାମରିକ ବିଦ୍ରୋହ ତାହାର ଚରମ ପରିଣତିରେ ପହଞ୍ଚିବା ପୂର୍ବରୁ କଂଗ୍ରେସ-ମୁସଲିମ୍ ଲିଗ୍‌ର ଅବିମୃଷ୍ୟକାରିତା କାରଣରୁ ପ୍ରତ୍ୟାହୃତ ହୋଇଥିଲା, ତାହା ଦିନକର ବା ମାସକ ପ୍ରସ୍ତୁତିର ଫଳଶ୍ରୁତି ନୁହେଁ ।

ଇଂରେଜମାନଙ୍କ ଦ୍ୱାରା ଭାରତ ଦଖଲର ପ୍ରାରମ୍ଭରୁ ହିଁ ବିଦେଶୀ ଶାସନ ବିରୁଦ୍ଧରେ ସୈନ୍ୟ ଅସନ୍ତୋଷ ପରିଲକ୍ଷିତ ହୋଇଥିଲା । ଇଂରେଜମାନଙ୍କ ପ୍ରଥମ ସଫଳ ଅଭିଯାନ ବା ପଲାସୀ ଯୁଦ୍ଧ ୧୭୫୭ରେ ଯାହା ଘଟିଥିଲା, ତାହା କେତେକ ଦେଶପ୍ରେମୀ ସୈନ୍ୟମାନଙ୍କ ଭିତରେ ବିଦ୍ରୋହ ଭାବର ଉଦ୍ରେକ କରିଥିଲା । ପଲାସୀ ଯୁଦ୍ଧରେ ମାତ୍ର ନଅଜଣ ବିଦେଶୀ ସୈନ୍ୟ ମୃତ୍ୟୁବରଣ କରିଥିଲେ । କିନ୍ତୁ ସେମାନଙ୍କ ଅଧୀନରେ ଯୁଦ୍ଧ କରୁଥିବା ଏକ ହଜାରରୁ ଉର୍ଦ୍ଧ୍ୱ ଭାରତୀୟ ସୈନ୍ୟ ମରିଥିଲେ । ଏହା ଭାରତୀୟ ସୈନ୍ୟମାନଙ୍କ ମନରେ ଭାବାନ୍ତର ସୃଷ୍ଟି କରିଥିଲା । ତେଣୁ ତାହାର ମାତ୍ର ସାତ ବର୍ଷ ପରେ ୧୭୬୪ରେ ଇଂରେଜ ସେନାପତି ମନ୍‌ରୋ ନେତୃତ୍ୱରେ ମୀର୍ କାଶିମ୍‌ଙ୍କର ବକ୍ସାର ଠାରେ ଯେଉଁ ଯୁଦ୍ଧ ହେଲା, ସେଠାରେ ଶତାଧିକ ଭାରତୀୟ ସୈନ୍ୟ ମନ୍‌ରୋ ବିରୋଧରେ ବିଦ୍ରୋହ ଘୋଷଣା କରି ମୀର କାଶିମ୍‌ଙ୍କ ସୈନ୍ୟମାନଙ୍କ ସହ ମିଶିଯିବାରୁ ମନ୍‌ରୋ ବାଧ ହୋଇ ପଛଘୁଞ୍ଚା ଦେଲା । ଅବଶ୍ୟ ପରେ କଲିକତାରୁ ଅଧିକ ଗୋରା ସୈନ୍ୟ ଆଣି ମନ୍‌ରୋ ବକ୍ସାର ଯୁଦ୍ଧରେ ଜୟଲାଭ କଲା ।

'ବକ୍ସାର ଯୁଦ୍ଧକ୍ଷେତ୍ରରେ ଭାରତୀୟ ସେନ୍ୟମାନଙ୍କ ବିଦ୍ରୋହ ଘୋଷଣା ଭବିଷ୍ୟତ ସାମରିକ ବିଦ୍ରୋହ ପାଇଁ ଥିଲା ପ୍ରଥମ ଶଂଖଧ୍ୱନି । ସେହି ଦିନଠାରୁ ଶହେ ଅଶିବର୍ଷ (୧୯୪୫-୪୬) ପର୍ଯ୍ୟନ୍ତ ପ୍ରତିବର୍ଷ ଦେଶର ବିଭିନ୍ନ ସ୍ଥାନରେ ହୋଇଥିବା ବିକ୍ଷିପ୍ତ ସାମରିକ ବିଦ୍ରୋହ ସେହି ବିଦ୍ରୋହାଗ୍ନି ଜଳାଇ ରଖିଥିବାରୁ ୧୮୫୭ର ମହାନ୍ ସିପାହୀ ବିଦ୍ରୋହ ବା ମହାବିଦ୍ରୋହ, ୧୯୧୪ର ପଞ୍ଜାବ ଓ ସିଙ୍ଗାପୁରର ସୈନ୍ୟ ବିଦ୍ରୋହ, ୧୯୪୪ରେ ନେତାଜୀ ସୁଭାଷଙ୍କ ନେତୃତ୍ୱରେ ''ଆଜାଦ୍ ହିନ୍ଦ୍ ଫୌଜ ବା ଇଣ୍ଡିଆନ ନ୍ୟାସ୍‌ନାଲ୍ ଆର୍ମି ଭାରତରେ ବ୍ରିଟିଶ୍ ସିଂହାସନକୁ ମୂଳରୁ ଦୋହଲାଇ ଦେଇଥିଲା । ତାହାର ଧ୍ୱଂସ ସାଧନ ପାଇଁ ଆବଶ୍ୟକ ଥିଲା- ଶେଷ ଧକ୍କା । ସେହି ଶେଷ ପ୍ରହାର ଦେବାକୁ ପ୍ରସ୍ତୁତ ହୋଇଯାଇଥିଲା ୧୯୪୬ର ସର୍ବାତ୍ମକ ସାମରିକ ବିଦ୍ରୋହ !

୧୮୫୭ର ମହାବିଦ୍ରୋହ ବ୍ରିଟିଶ୍ ଶାସନକୁ ଥରହର କରିଦେଇ ଭାରତରେ ଇଷ୍ଟ ଇଣ୍ଡିଆ କମ୍ପାନୀର ଏକଛତ୍ରବାଦୀ ଶାସନକୁ ଲୋପ କରି ଦେଇଥିଲା ଓ ଆଜାଦ୍-ହିନ୍ଦ୍-ଫୌଜ ବ୍ରିଟିଶ୍ ସୈନ୍ୟମାନଙ୍କ ସହ ମୁହାଁ ମୁହିଁ ଯୁଦ୍ଧ କରି ଆସାମର ଶହ ଶହ ବର୍ଗମାଇଲ ଅଞ୍ଚଳରୁ ସେମାନଙ୍କୁ ପରାଜିତ କରିଥିଲେ ଓ ସେହି ମୁକ୍ତାଞ୍ଚଳରେ ପ୍ରତିଷ୍ଠା କରିଥିଲେ ''ସ୍ୱାଧୀନ ଭାରତ ସରକାର ।'' ବିଡ଼ମ୍ବନା ଯେ ଆଜାଦ୍ ହିନ୍ଦ୍-ଫୌଜ' ତାହାର ଇପ୍ସିତ ଲକ୍ଷ୍ୟସ୍ଥଳ-ସମ୍ପୂର୍ଣ୍ଣ ସ୍ୱାଧୀନତା ପ୍ରାପ୍ତିରେ ପହଞ୍ଚିବା ପୂର୍ବରୁ ନାନା ଅଲଂଘନୀୟ ଓ ଅପ୍ରତିବିଧେୟ ପ୍ରତିବନ୍ଧକ କାରଣରୁ ଯୁଦ୍ଧ ବନ୍ଦ କରାଯାଇଥିଲା କିନ୍ତୁ ମାତ୍ର ଗୋଟିଏ ବର୍ଷ ଭିତରେ ତାହା ବମ୍ବେ ନୌବିଦ୍ରୋହରେ ଅଧିକ ଉଗ୍ର ରୂପରେ ପ୍ରକଟିତ ହୋଇ 'ସମ୍ପୂର୍ଣ୍ଣ ବିପ୍ଲବ'ରେ ରୂପାନ୍ତରୀତ ହେଉଥିଲା ।

ପୂର୍ବରୁ ଆଲୋଚିତ ହୋଇଅଛି ଯେ ବିଦ୍ରୋହ ସଫଳ ହେବା ପାଇଁ ତତ୍‌କାଳୀନ ରାଜନୈତିକ ପରିସ୍ଥିତି ସମ୍ପୂର୍ଣ୍ଣ ଅନୁକୂଳ ଥିଲା । ଯୁଦ୍ଧ ଜନିତ ମହଙ୍ଗା (ମୂଲ୍ୟବୃଦ୍ଧି) ଅତ୍ୟାବଶ୍ୟକ ଜିନିଷ ଓ ଖାଦ୍ୟ ଦ୍ରବ୍ୟର ଘୋର ଅଭାବ, ଦୁର୍ଭିକ୍ଷରେ ପୋକମାଛି ପରି ତିରିଶିଲକ୍ଷ ଲୋକଙ୍କର ଅକାଳ ମୃତ୍ୟୁ, ସର୍ବତ୍ର ଅଶାନ୍ତି ଓ ଅସନ୍ତୋଷ ସାଙ୍ଗକୁ ୩୫ ଲକ୍ଷ ଶ୍ରମିକ, ବେସାମରିକ ପୋଲିସ୍ ଓ ଗୁର୍ଖା ରେଜିମେଣ୍ଟରେ ଧର୍ମଘଟ, ସର୍ବତ୍ର ଛାତ୍ର ଧର୍ମଘଟ ବମ୍ବେ ସାଙ୍ଗକୁ କରାଚୀ, କୋଚିନ୍, ଭାଇଜାଗ୍, କଲିକତା ଚିଟାଗଙ୍ଗରେ ଥିବା ନୌ ଜେଲାର ବିଦ୍ରୋହ ଘୋଷଣା, ପୁନେ, ଜବଲପୁର, ଲାହୋର ଓ କଲିକତା ଆକାଶବାହିନୀର ବିଦ୍ରୋହ ଉଦ୍ୟମ ଭାରତରେ ବ୍ରିଟିଶ୍ ଶାସନର ମୃତ୍ୟୁ ଘଣ୍ଟି ବଜାଉଥିଲା । ''ବମ୍ବେର ବିଦ୍ରୋହୀ ସେନା ଜାତୀୟ ନେତୃବୃନ୍ଦଙ୍କ ଉଦ୍ଦେଶ୍ୟରେ ବାରମ୍ବାର କହୁଥିଲେ ''ବମ୍ବେ ଦଖଲ ହୋଇ ସାରିଛି । ଦିଲ୍ଲୀ ଆଉ କେତେ ଦୂର ବା ।''

ତାହା ଆଦୌ ଅସମ୍ଭବ ନଥିଲା । ତାହାହିଁ ହୋଇଥିଲା କଂଗ୍ରେସ, ମୁସ୍‌ଲିମ୍ ଲିଗ୍ ଓ ବ୍ରିଟିଶର ପ୍ରଧାନ ଦୁଶ୍ଚିନ୍ତା । ତେଣୁ ସବୁ ଶକ୍ତି ଏକତ୍ରିତ ହୋଇଗଲେ । ଶେଷକୁ ଗାନ୍ଧିଜୀଙ୍କୁ ମଧ୍ୟ କାମରେ ଲଗାଇଦେଲେ ।

ସାମରିକ ବିଦ୍ରୋହ ଭୟରେ ''ବ୍ରିଟିଶ୍ ପ୍ରଧାନମନ୍ତ୍ରୀ ୧୯୪୮ ଜୁନ୍ ଭିତରେ କ୍ଷମତା ହସ୍ତାନ୍ତର କରିବେ ଏବଂ ହସ୍ତାନ୍ତର ପାଇଁ ଆନୁସଙ୍ଗିକ ବ୍ୟବସ୍ଥା କରିବାକୁ ଇଂଲାଣ୍ଡରୁ ଏକ କ୍ୟାବିନେଟ୍ ମିସନ୍ ଭାରତକୁ ପଠାହେବ'' ବୋଲି ଘୋଷଣା କରିବା ପରେ କ୍ଷମତା ଲାଳସାରେ କଂଗ୍ରେସ ଓ ଲିଗ୍ ଉନ୍ମାଦ ହୋଇଗଲେ । 'ଅଖଣ୍ଡ ଭାରତ'ର ସ୍ୱାଧୀନତା ପାଇଁ କଂଗ୍ରେସ ମୁହଁରେ କହୁଥିଲେ ମଧ୍ୟ ନେହେରୁ-ପଟେଲ ଗ୍ରୁପ୍‌ର ମାନସିକତା ଥିଲା ବିଭାଜନ ପାଇଁ । ଜିନ୍ନା ତ ୧୯୪୦ ମସିହାରୁ ଧର୍ମଭିତ୍ତିରେ ଦେଶକୁ ୨/୩ ଖଣ୍ଡ କରିବାକୁ କୃତସଂକଳ୍ପ ଥିଲେ । କେବଳ ଗାନ୍ଧିଜୀ ଚାହୁଁଥିଲେ ଅଖଣ୍ଡ ଭାରତ । ସେ ତ ଭାବପ୍ରବଣ ହୋଇ କହୁଥିଲେ ''ମୋର ଶବ ଉପରେ ଭାରତ ଦୁଇଖଣ୍ଡ ହୋଇପାରେ ।'' କିନ୍ତୁ ତାଙ୍କର ଜୀବଦ୍ଦଶାରେ ହିଁ ଭାରତ ବିଭାଜିତ ହେଲା । କଂଗ୍ରେସରେ ଗାନ୍ଧିଜୀଙ୍କ ସ୍ଥିତି ସମ୍ପୂର୍ଣ୍ଣ ଦୁର୍ବଳ ହେବା ପର୍ଯ୍ୟନ୍ତ କଂଗ୍ରେସର ବିଭାଜନ ପନ୍ଥୀମାନେ ଅପେକ୍ଷା କରିଥିଲେ ମାତ୍ର ।

'କ୍ୟାବିନେଟ୍ ମିଶନ୍' ଅବଶ୍ୟ 'ସ୍ୱତନ୍ତ୍ର ପାକିସ୍ତାନ' ପ୍ରସ୍ତାବରେ ବିରୋଧ କରି ଏକ ସଂଘୀୟ ଭାରତ ବା 'Federal India' ପାଇଁ ପ୍ରସ୍ତାବ ଦେଇଥିଲେ । ସେହି ସଂଘୀୟ ପ୍ରସ୍ତାବ ଗୃହୀତ ହୋଇଥିଲେ ଦେଶ ବିଭାଜିତ ହେବାର କୌଣସି ସମ୍ଭାବନା ନଥିଲା । କାବିନେଟ୍ ମିସନ୍ ଆସିବା ପୂର୍ବରୁ କଂଗ୍ରେସ ମଧ୍ୟ ଅନୁରୂପ ପ୍ରସ୍ତାବ ଗ୍ରହଣ କରିଥିଲେ । ଜିନ୍ନା ପ୍ରଥମରୁ ତାହାକୁ ବିରୋଧ କରୁଥିଲେ ସୁଦ୍ଧା 'ସ୍ୱତନ୍ତ୍ର ପାକିସ୍ତାନ' ଅପେକ୍ଷା ତାହା ବହୁଗୁଣରେ ଭଲ ବୋଲି ଉପଲବ୍ଧି କରି ଶେଷରେ ଗ୍ରହଣ କଲେ । କିନ୍ତୁ ବିଚିତ୍ର କଥା ଯେ କଂଗ୍ରେସ ପ୍ରଥମେ 'ସଂଘୀୟ' ପ୍ରସ୍ତାବକୁ ଗ୍ରହଣ କରି ଶେଷ ମୁହୂର୍ତ୍ତରେ ସେଥିରୁ ଓହରି ଆସିବାରୁ ଜିନ୍ନା ମଧ୍ୟ ତାକୁ ପ୍ରତ୍ୟାଖ୍ୟାନ କରିବାକୁ ସୁଯୋଗ ପାଇଲେ । ତେଣୁ ବିଭାଜନ ଅପରିହାର୍ଯ୍ୟ ହେଲା ।

'ଭାରତ ବିଭାଜନ'ରେ ସେହି ବ୍ରିଟେନ୍‌ର ହିଁ ଭବିଷ୍ୟତ ସ୍ୱାର୍ଥ ସୁରକ୍ଷିତ ହେଲା । ସାମରିକ ବିଦ୍ରୋହରେ ଦେଶ ସ୍ୱାଧୀନ ହେଲେ ତାହା ବ୍ରିଟେନ୍‌ର ଘୋର କ୍ଷତି ସାଧନ କରିବ ବୋଲି ସେମାନେ ଆଶଙ୍କା କରୁଥିଲେ । କାରଣ ତାହା ସମ୍ଭବ ହେଲେ ଭାରତରେ ଲଗାଯାଇଥିବା ବ୍ରିଟିଶ୍ ପୁଞ୍ଜି ବ୍ୟାଜାପ୍ତ ହେବ ଏବଂ ବ୍ରିଟେନ୍ ବାସୀ ଭାରତରେ କୌଣସି ପ୍ରକାର ବ୍ୟବସାୟ ବାଣିଜ୍ୟ କରିପାରିବେ ନାହିଁ, ବରଂ ଧର୍ମ ଭିତ୍ତିରେ ଭାରତ ବିଭାଜିତ ହେଲେ ସବୁଦିନ ପାଇଁ ସେମାନଙ୍କ ଭିତରେ କଳହ, ଏପରିକି ଯୁଦ୍ଧ ମଧ୍ୟ ସଙ୍ଘଠିତ ହେବ ଏବଂ ସେହି ଦୁଇଟି ଦେଶର ପୂର୍ବ ଶାସକ ରୂପେ ବ୍ରିଟେନ୍‌ର ଦୌତ୍ୟ ଉଭୟ ଦେଶ ଆବଶ୍ୟକ ମନେକରିବେ । ସର୍ବୋପରି ବିଶ୍ୱଯୁଦ୍ଧରେ ଆର୍ଥିକ ଓ ଅନ୍ୟାନ୍ୟ ସାମର୍ଥ୍ୟ ଦୃଷ୍ଟିରୁ ବ୍ରିଟେନ୍ ଯେପରି ଦୁର୍ବଳ ହୋଇ ଯାଇଥିଲା, ଭାରତରେ ସାମରିକ ବିଦ୍ରୋହ ଯଦି ସଫଳ ହୁଏ ବିଶ୍ୱର ମହାଶକ୍ତି ମାନଙ୍କ ନିକଟରେ ବ୍ରିଟେନ୍‌ର ସମ୍ମାନ ଭୂଲୁଣ୍ଠିତ ହେବ । ଅଧିକନ୍ତୁ କଂଗ୍ରେସ ଓ ମୁସ୍‌ଲିମ୍ ଲିଗ ପୁଞ୍ଜିବାଦ ଓ ସାମନ୍ତବାଦର ସମର୍ଥକ ଥିଲେ । କଂଗ୍ରେସକୁ ଯେମିତି ବ୍ରିଟିଶ୍ ସିଭିଲିଆନ୍, ରାଜା ଜମିଦାର ଓ ଉଚ୍ଚ ଶିକ୍ଷିତ ଭାରତୀୟମାନେ ଗଢ଼ିଥିଲେ । ତାହାର ବିରୋଧ କରିବା ପାଇଁ ୧୯୦୬-୦୭ ପରେ ଲିଗ୍ ସେହି ବ୍ରିଟିଶ୍ ସିଭିଲିଆନ୍, ଏପରିକି ସ୍ୱୟଂ ଭାଇସରାୟଙ୍କ ଦ୍ୱାରା ମୁସଲମାନ ନବାବ ଓ ଇଂରେଜୀ ଶିକ୍ଷିତ ମୁସଲମାନ ମାନଙ୍କର ପୃଷ୍ଠପୋଷକତାରେ ଗଠିତ ହୋଇଥିଲା । କଂଗ୍ରେସରେ ଗାନ୍ଧିଜୀଙ୍କ ନେତୃତ୍ୱରେ କୋଟି କୋଟି ଜନସାଧାରଣ ଯୋଗ ଦେଇଥିଲେ ମଧ୍ୟ ନେତୃତ୍ୱ ସମ୍ପୂର୍ଣ୍ଣ ସାମନ୍ତବାଦୀ ଥିଲା । ଅପର ପକ୍ଷରେ ନୌବିଦ୍ରୋହର ନେତୃତ୍ୱମଣ୍ଡଳୀରେ ସୋସାଲିଷ୍ଟ- କମ୍ୟୁନିଷ୍ଟଙ୍କର ଅଧିକ ପ୍ରଭାବ ଥିଲା । ତେଣୁ କଂଗ୍ରେସ ଓ ଲିଗ୍ ନୌବିଦ୍ରୋହର ବିରୋଧ କରିବା ସ୍ୱାଭାବିକ ଥିଲା ।

କିନ୍ତୁ ଗାନ୍ଧିଜୀ ନୌବିଦ୍ରୋହରେ ବ୍ୟାପକ ହିଂସାକାଣ୍ଡ ହେଉଥିବାରୁ ତାହାର ବିରୋଧ କରୁଥିଲେ ବୋଲି କହିଲେ । ଏପରିକି ସେହି ହିଂସାକାଣ୍ଡରେ ହିନ୍ଦୁ ଓ ମୁସଲମାନ ମାନେ ବ୍ରିଟିଶ୍ ଗୁଳିରେ ମୃତ୍ୟୁ ବରଣ କରିବା ମଧ୍ୟ ଦେଶପାଇଁ ଶୁଭଙ୍କର ନୁହେଁ ବୋଲି ସେ ଦୃଢ଼ ଭାବରେ କହୁଥିଲେ । ଗାନ୍ଧିଜୀଙ୍କର ସେହି ଯୁକ୍ତିରେ କୌଣସି ଐତିହାସିକ ଯଥାର୍ଥତା ନଥିଲା । କାରଣ, ଭାରତର ସ୍ୱାଧୀନତା ସଂଗ୍ରାମରେ ହିନ୍ଦୁ-ମୁସଲମାନଙ୍କ ମଧ୍ୟରେ ଇଂରେଜମାନେ ଯେତେ

ଭେଦ ଭାବ ସୃଷ୍ଟି କରିବାକୁ ଅପଚେଷ୍ଟା କଲେ ମଧ୍ୟ ଉଭୟ ସମ୍ପ୍ରଦାୟ ଭେଦଭାବ ଭୁଲି କାନ୍ଧକୁ କାନ୍ଧ ମିଳାଇ ବିଦେଶୀ ଶକ୍ତି ବିରୁଦ୍ଧରେ ଲଢୁଥିଲେ । ୧୮୫୭ର ମହାବିଦ୍ରୋହରେ ତାହା ବ୍ୟାପକ ଭାବରେ ହୋଇଥିଲା ବୋଲି ହିଁ ବିଦେଶୀ ସରକାର ଆତଙ୍କିତ ହୋଇଯାଇଥିଲେ । ଏଠାରେ ପୁନର୍ବାର ସେହି ବହୁଚର୍ଚ୍ଚିତ କଥା ସ୍ମରଣ କରିବା ଆବଶ୍ୟକ ଯେ ''ବ୍ରାହ୍ମଣ ମଙ୍ଗଳ ପାଣ୍ଡେ ଆରମ୍ଭ କରିଥିବା ସିପାହୀ ବିଦ୍ରୋହରେ ନେତୃତ୍ୱ ନେଲେ ମୁସଲମାନ ବାହାଦୁର ସାହା ଜାଫର ।'' ସେହି ମହାନ୍ ଆଦର୍ଶରେ ଅନୁପ୍ରାଣିତ ହୋଇ କେତେ ରାଣୀ ଲକ୍ଷ୍ମୀବାଇ, ମାତା ମହାରାଣୀ ତପସ୍ୱିନୀଙ୍କ ସାଙ୍ଗକୁ ଅଯୋଧ୍ୟା ବେଗମ୍ ହଜରତ୍ ମହଲ ମଧ୍ୟ ଏକତ୍ର ପ୍ରାଣ ଦେଇଥିଲେ । ଯୁଦ୍ଧ କ୍ଷେତ୍ରରେ କେତେ ମହମ୍ମଦ ଅଲ୍ଲୀ, ଲିଆକତ୍ ଅଲ୍ଲୀ, ମାନଙ୍କର ରକ୍ତ ମରହଟ୍ଟା ନାନା ସାହେବଙ୍କ ରକ୍ତରେ ମିଶି ଏକାକାର ହୋଇ ଯାଇଥିଲା, ତାହା କଦାପି ଏକ 'ଅପରାଧ' ନଥିଲା ବାସ୍ତବରେ ତାହାଥିଲା ଭାରତ ଇତିହାସର ଗର୍ବ ଓ ଗୌରବ ।

ଗାନ୍ଧିଜୀଙ୍କର ବିରୋଧ ଫଳରେ 'ନୌବିଦ୍ରୋହୀ ମାନେ' 'ଅସ୍ତ୍ରତ୍ୟାଗ' କରି ଦେଶବାସୀଙ୍କ ନିକଟରେ ଆତ୍ମ ସମର୍ପଣ କଲେ ।''

କିନ୍ତୁ ସେତେବେଳକୁ ପଞ୍ଜାବରେ ଯେଉଁ ହିନ୍ଦୁମୁସଲମାନ ଦଙ୍ଗା ଆରମ୍ଭ ହୋଇଯାଇଥିଲା ବିଶେଷତଃ ୧୯୪୬ ଅଗଷ୍ଟ ୧୬ ତାରିଖରୁ ମୁସ୍‌ଲିମ୍‌ଲିଗ୍ ଡାକରାରେ କଲିକତାରେ ଯେଉଁ ଗଣହତ୍ୟା ହେଲା ଏବଂ ୧୯୪୭ ଅଗଷ୍ଟ ପନ୍ଦର ଓ ତାହାପରେ ବର୍ଷ ବର୍ଷ ଧରି ଯେଉଁ ଦଙ୍ଗା ଚାଲିଲା, ଯୁଗ ଯୁଗ ଧରି ଭାଇ-ଭାଇ ଭାବରେ ଜୀବନ ବିତାଇଥିବା ହିନ୍ଦୁ ଓ ମୁସଲମାନ ନିଜ ନିଜ ଭିତରେ ହାଣ କାଟ ହୋଇ ସମଗ୍ର ଭାରତବର୍ଷରେ ଯେପରି ରକ୍ତନଦୀ ବୁହାଇଦେଲେ ତାହା ଅପେକ୍ଷା ସିପାହୀ ବିଦ୍ରୋହ ଓ ନୌ ବିଦ୍ରୋହରେ ବିଦେଶୀ ଦସ୍ୟୁମାନଙ୍କ ବିରୁଦ୍ଧରେ ଲଢ଼ି ହିନ୍ଦୁ ମୁସଲମାନ ବିଦେଶୀ ଗୁଳିରେ ରକ୍ତଦାନ ବା ପ୍ରାଣଦାନ କରିବା କଣ ଅଧିକ ଶ୍ଳାଘ୍ୟ ନୁହେଁ ?

ପୁନଶ୍ଚ ନୌବିଦ୍ରୋହ ବା ସାମରିକ ବିଦ୍ରୋହର ଅବଶ୍ୟମ୍ଭାବୀ ପରିଣତି ସମାଜବାଦୀ-ଭାରତ, ବ୍ରିଟିଶ୍ ଶାସକମାନଙ୍କ ଦୟାର ଦାନ ଆଜିର ତ୍ରିଖଣ୍ଡିତ ଭାରତର ପୁଞ୍ଜିବାଦୀ-ସାମନ୍ତବାଦୀ ଶାସନ ଅପେକ୍ଷା କଣ ଅଧିକ ଶ୍ଳାଘ୍ୟ ହୋଇ ନଥାନ୍ତା !

'କ୍ଷମତା ହସ୍ତାନ୍ତର' ବା ତଥାକଥିତ ସ୍ୱାଧୀନତା ପ୍ରାପ୍ତିର ଷାଠିଏ ବର୍ଷ ଭିତରେ ସରକାର ମାନେ କମ୍ପ୍ୟୁଟରଠାରୁ ଆରମ୍ଭକରି ଟେଲିଭିଜନ୍ ଓ ପରମାଣୁ ବୋମା ଠାରୁ ଆରମ୍ଭ କରି ପ୍ରସ୍ତାବିତ ଚନ୍ଦ୍ର ଅଭିଯାନ' ପାଇଁ ହଜାର ହଜାର କୋଟି ଟଙ୍କା ଅପବ୍ୟୟ କରି ପାରନ୍ତି ସେହି ସରକାର ମଧ୍ୟ ଲକ୍ଷ ଲକ୍ଷ କ୍ୱିଣ୍ଟାଲ ଖାଦ୍ୟ ଦ୍ରବ୍ୟ ଗୋଦାମ ମାନଙ୍କରେ ପଚାଇ ନଷ୍ଟ କରନ୍ତି ନଚେତ୍ ଶସ୍ତାମୂଲ୍ୟରେ ବିଦେଶକୁ ରପ୍ତାନି କରନ୍ତି ସେହି ସରକାରମାନେ ଦେଶର ଅନ୍ୟ ଚାଳିଶ କୋଟି ଲୋକଙ୍କୁ ଦିନରେ ଥରେ ସୁଦ୍ଧା ପେଟପୁରା ଖାଇବାକୁ ଦେଇପାରନ୍ତି ନାହିଁ । ଫଳରେ ଅଧିକାଂଶ ଅଖାଦ୍ୟ ଖାଇ ବା ଅନାହାରରେ ମରନ୍ତି । କୋଟି କୋଟି ଲୋକଙ୍କ ମୁଣ୍ଡ ଉପରେ ଛପର ନାହିଁ, ଅଧେ ଫୁଟପାଥର ଅଧିବାସୀ, କୋଟି କୋଟି ଲୋକଙ୍କର ବସ୍ତ୍ର ଲେଙ୍ଗୁଟିରେ ସୀମାବଦ୍ଧ, ଦେଶର

ଅଧେଲୋକ ନିରକ୍ଷର । କୋଟି କୋଟି ଶିକ୍ଷିତ ବେକାର । ଏହାହିଁ କଣ ମହାତ୍ମା ଗାନ୍ଧିଙ୍କ ଅହିଂସ ଓ ଶାନ୍ତିପୂର୍ଣ୍ଣ କ୍ଷମତା ହସ୍ତାନ୍ତରର ଆଶୀର୍ବାଦ !

ଯେଉଁମାନେ ପାକିସ୍ଥାନ, ବାଂଲାଦେଶ ବା ଅନ୍ୟାନ୍ୟ ନୂତନ ସ୍ୱାଧୀନ ଦେଶର ସାମରିକ ବିଦ୍ରୋହ ସହ ଭାରତର ଗୌରବମୟ ନୌବିଦ୍ରୋହ ବା ସର୍ବାତ୍ମକ ସାମରିକ ବିଦ୍ରୋହକୁ ତୁଳନା କରନ୍ତି, ସେମାନେ ନୌବିଦ୍ରୋହ ବା ୧୯୪୬ରେ ଭାରତରେ ହୋଇଥିବା ସର୍ବାତ୍ମକ ସାମରିକ ବିଦ୍ରୋହର ଗତି ପ୍ରକୃତି ଓ ଚରିତ୍ର ସମ୍ପର୍କରେ ବିନ୍ଦୁ ବିଃସର୍ଗ ଜାଣି ନାହାନ୍ତି । ପାକିସ୍ଥାନ ବା ଅନ୍ୟ ଦେଶର ସାମରିକ ବିଦ୍ରୋହର ନେତୃତ୍ୱ ନେଇଥାନ୍ତି, କେହି ଜଣେ କ୍ଷମତାସୀନ ସେନାଧକ୍ଷ ଆଉ ଜଣେ ସେନାଧକ୍ଷ ବିରୁଦ୍ଧରେ । ସେଥିପାଇଁ ପରାଜିତ ସେନାଧକ୍ଷ ପାଏ ପ୍ରାଣ ଦଣ୍ଡ ବା ଜାବଜ୍ଜୀବନ ବନ୍ଦୀ । ସେ ଦେଶରେ ଗଣତନ୍ତ୍ର ଲୋପପାଇ ଏକଛତ୍ରବାଦ ସାମରିକ ଶାସନ ଜାରି ହୁଏ ।

ଭାରତର ବିଫଳ ସାମରିକ ବିଦ୍ରୋହ କ୍ଷେତ୍ରରେ ଦେଖାଯାଏ, ଏହାର କୌଣସି ନେତା ବ୍ରିଟିଶ୍ ସେନ୍ୟ ବାହିନୀର ସେନାଧକ୍ଷ ନଥିଲେ । କାରଣ ସେ ଅଧିକାର କେବଳ ବ୍ରିଟିଶ୍ ନାଗରିକଙ୍କର ଏକଚାଟିଆ ଥିଲା । ତେଣୁ ସେ ବିଦ୍ରୋହର ଯେଉଁମାନେ ନେତୃତ୍ୱ ନେଇଥିଲେ ଭାରତ ଭଳି ବିରାଟ ଦେଶର ସର୍ବୋଚ୍ଚ ନେତୃତ୍ୱ ନେବାର ଯୋଗ୍ୟତା ସେମାନଙ୍କର ନଥିଲା କିମ୍ବା ସାମାନ୍ୟ ଅଭିଳାଷ ମଧ ନଥିଲା । ସେମାନେ ସମସ୍ତେ ଥିଲେ ଅଧସ୍ତନ ସାମରିକ ଅଫିସର ବା ପେଟି ଅଫସିର । ସେହ ଦୃଷ୍ଟିରୁ ହିଁ ବିଦ୍ରୋହୀମାନେ କଂଗ୍ରେସ ଓ ଲିଗ୍ ନେତୃବୃନ୍ଦଙ୍କୁ ବାରମ୍ବାର ନିବେଦନ କରୁଥିଲେ, ''ଆପଣମାନେ ଏହାର ନେତୃତ୍ୱ ନିଅନ୍ତୁ । ଦେଶ ସ୍ୱାଧୀନ ହେଲେ ସ୍ୱାଧୀନ ସରକାର ଚାହିଁଲେ ଆମ୍ଭମାନଙ୍କୁ ସୈନ୍ୟ ବାହିନୀରେ ରଖିବେ । ନଚେତ୍ ଆମ୍ଭେମାନେ ଜଣେ ଜଣେ ସାଧାରଣ ନାଗରିକ ହୋଇ ରହିବୁ । ତାହାହିଁ ଆମ୍ଭମାନଙ୍କ ଏକମାତ୍ର ଗର୍ବ ଓ ଗୌରବ । କିନ୍ତୁ ବିଦେଶୀଙ୍କୁ ନତଡ଼ି ସେମାନଙ୍କ 'ଦୟାର ଦାନ' ଭାବରେ ଧର୍ମ ଭିତ୍ତିରେ ଦେଶକୁ ଖଣ୍ଡ ଖଣ୍ଡ କରି ତଥାକଥିତ ସ୍ୱାଧୀନତା ପ୍ରାପ୍ତିର ଆମେ ଘୋର ବିରୋଧୀ ।''

ନୌବିଦ୍ରୋହୀମାନଙ୍କର ରାଜନୈତିକ ଆଦର୍ଶ ଚିନ୍ତାଧାରା ଓ କାର୍ଯ୍ୟକଳାପ ବିଚାର କରି ଆଜି ମଧ କୁହାଯାଇପାରେ ଯେ ସେହି ବିଦ୍ରୋହରେ ଯଦି ଭାରତ ସ୍ୱାଧୀନତା ପାଇ ଥାନ୍ତା, ତେବେ ବିଦ୍ରୋହ ବିରୋଧୀ ଜଣେ ସୁଦ୍ଧା ରାଜନେତାଙ୍କର କ୍ଷତି ହୋଇ ନଥାନ୍ତା । ବରଂ ସେହିମାନେ ହିଁ ନେଇଥାନ୍ତେ ସ୍ୱାଧୀନ ସରକାରର ନେତୃତ୍ୱ । କାରଣ ସେ 'ବିଦ୍ରୋହ' ଯେ କୌଣସି ନିର୍ଦ୍ଦିଷ୍ଟ ଦଳ ଦ୍ୱାରା ପରିଚାଳିତ ହେଉନଥିଲା, ଏହା 'ବିଦ୍ରୋହୀ ମାନେ ସେମାନଙ୍କ କଥା ଓ କାର୍ଯ୍ୟାବଳୀରେ ବାରମ୍ବାର ପ୍ରମାଣିତ କରୁଥିଲେ ।

'ବିଦ୍ରୋହ' ରେ ଚାରିଗୋଟି ଦଳର 'ପତାକା' ଉଡ୍ଡୀନ ହେଉଥିଲା । ଯଥା:- କଂଗ୍ରେସର ଚରଖାଚିହ୍ନିତ ଜାତୀୟ ପତାକା, ଚନ୍ଦ୍ର ଚିହ୍ନିତ ମୁସ୍‌ଲିମ୍ ଲିଗର ସବୁଜ ପତାକା, କମ୍ୟୁନିଷ୍ଟ ପାର୍ଟି ଦା-ହାତୁଡ଼ି ଚିହ୍ନଥିବା ଲାଲ ପତାକା ଏବଂ ସମାଜବାଦୀ ନେତା ଅରୁଣା ଆସଫ୍ ଅଲ୍ଲୀଙ୍କର ମଧ ସେହି ପତାକା ।

ସର୍ଦ୍ଦାର ପଟେଲ ପ୍ରଭୃତି ଉଗ୍ର କମ୍ୟୁନିଷ୍ଟ ବିରୋଧୀ କଂଗ୍ରେସ ନେତା ଭିନ୍ନ କାରଣରୁ ସର୍ବଦଳୀୟ ଆକ୍ସନ୍ କମିଟି ଦ୍ୱାରା ପରିଚାଳିତ ''ନୌ ବିଦ୍ରୋହ''ରେ କମ୍ୟୁନିଷ୍ଟ କୋକୁଆ ଭୟ ସୃଷ୍ଟି କରୁଥିଲେ । କାରଣ କମ୍ୟୁନିଷ୍ଟ ପାର୍ଟି ଦ୍ୱାରା ପରିଚାଳିତ ''ତେଲେଙ୍ଗାନା ସଶସ୍ତ୍ର କୃଷକ ବିଦ୍ରୋହ'' ଅଭିଯାନରେ ଦଶହଜାର ସଶସ୍ତ୍ର କୃଷକଙ୍କର ବିଦ୍ରୋହ କେବଳ ମାନ୍ଦ୍ରାଜ ପ୍ରଦେଶରେ ନୁହେଁ, ସମଗ୍ର ଭାରତବର୍ଷର କୋଟି କୋଟି ଶୋଷିତ କୃଷକମାନଙ୍କ ଭିତରେ ଯେଉଁ ଜାଗରଣ ଓ ଶିହରଣ ସୃଷ୍ଟି କରିଥିଲା, ସ୍ୱାଧୀନ ଭାରତର ଭାବୀ ଶାସକମାନଙ୍କୁ ତାହା ଆତଙ୍କିତ କରି ଦେଇଥିଲା । ସେହି ପ୍ରତିକ୍ରିୟା ହିଁ ନୌବିଦ୍ରୋହ ବିଦ୍ରୋହରେ ବିସ୍ଫୋରିତ ହୋଇଥିଲା ।

ପୂର୍ବରୁ ଏହା ଉଲ୍ଲେଖ କରାଯାଇଛି ନୌବିଦ୍ରୋହ ପରିଚାଳନା ପାଇଁ ଗଠିତ ''ଗୋପନ ଆକ୍ସନ କମିଟି'' ରେ ଅନ୍ୟମାନଙ୍କ ମଧ୍ୟରେ ଦୃଢ଼ କମ୍ୟୁନିଷ୍ଟ ନେତା ରଣଦିବେ ଓ ଅଧିକାରୀ ପ୍ରଭୃତି ଆରମ୍ଭରୁ ଶେଷଯାଏ ସକ୍ରିୟ ଥିଲେ । କିନ୍ତୁ ସେମାନଙ୍କର ସେଭଳି ରିସ୍କ ନେବାର ଯୋଗ୍ୟତା, ସାହସ ବା ଅଭିଳାଷ ଥିଲେ ସେମାନେ ସେ ସୁବର୍ଣ୍ଣ ସୁଯୋଗ ଛାଡ଼ିଥାନ୍ତେ କି ? ତା' ହୋଇଥିଲେ ସ୍ୱାଧୀନତା ସଂଗ୍ରାମର ସେହି ଶେଷ ପର୍ଯ୍ୟାୟ କେଉଁଆଡ଼େ ଗତି କରିଥାନ୍ତା, ତାହା କୁହାଯାଇ ପାରିବ ନାହିଁ । କିନ୍ତୁ ଏତିକି, ଦୃଢ଼ତା ସହକାରେ କୁହାଯାଇପାରିବ ଯେ ବୋଧହୁଏ ତାହା ହୋଇଥିଲେ ଦେଶ କଦାପି ଧର୍ମ ଭିତ୍ତିରେ ଖଣ୍ଡ ଖଣ୍ଡ ହୋଇନଥାନ୍ତା ।

କମ୍ୟୁନିଷ୍ଟ ବା ଆକ୍ସନ କମିଟିରେ ଥିବା ଅନ୍ୟ ଦଳର କୌଣସି ନେତା ପ୍ରତ୍ୟକ୍ଷ ଭାବରେ ବିପ୍ଳବର ନେତୃତ୍ୱ ନେବା ଦୂରେ ଥାଉ ବରଂ ତୁରନ୍ତ ଅସ୍ତ୍ର ସମର୍ପଣ କରିବାକୁ ବିଦ୍ରୋହୀମାନଙ୍କୁ ନିର୍ଦ୍ଦେଶ ଦେଲେ ।

ସେହି ନିର୍ଦ୍ଦେଶ ଯୁଦ୍ଧରତ ନୌବିଦ୍ରୋହୀମାନଙ୍କ ମଧ୍ୟରେ କିଭଳି ପ୍ରତିକ୍ରିୟା ସୃଷ୍ଟି କରିଥିଲା ତାହା ଜନୈକ ଭୁକ୍ତଭୋଗୀଙ୍କ ଲେଖାରୁ ଶଣାଯାଏ ।

''ଆମେ ସମସ୍ତେ ଜାଣୁ ଯେ କ୍ଷେତ୍ର ପ୍ରସ୍ତୁତ ଥିଲେ ସାମାନ୍ୟ ଏକ ଅଗ୍ନି ସ୍ଫୁଲିଙ୍ଗର ଦାବାନଳ ସୃଷ୍ଟି ହୋଇପାରେ । ଏହାହିଁ ପ୍ରକୃତି ଗତ ନିୟମ । କିନ୍ତୁ ବିପ୍ଳବର ପରିଚାଳନା କରୁଥିବା ନେତୃତ୍ୱ ଯଦି ନିମ୍ନସ୍ତରର ବ୍ୟକ୍ତି ହୋଇଥାଏ, ତେବେ ବିପ୍ଳବ ବରଂ ପ୍ରତିବିପ୍ଳବ ସୃଷ୍ଟି କରେ । ୧୯୪୬ ନୌବିଦ୍ରୋହରେ ତାହାହିଁ ଘଟିଥିଲା । ବିପ୍ଳବର ସାଫଲ୍ୟ ପାଇଁ ସମସ୍ତ ପରିସ୍ଥିତି ଅନୁକୂଳ ଥିଲେ ମଧ୍ୟ ଅଭାବ ଥିଲା ବିପ୍ଳବକୁ ସଠିକ୍ ମାର୍ଗରେ ପରିଚାଳିତ କରି ନିଶ୍ଚିତ ବିଜୟ ସ୍ଥଳରେ ପହଞ୍ଚାଇବାକୁ ସତ୍ୟନିଷ୍ଠ ଦେଶପ୍ରେମିକର । କେନ୍ଦ୍ରୀୟ ଗୋପନ ସଂସ୍ଥାର ଅଧିକାଂଶ ନେତା ଥିଲେ ବୋଧହୁଏ ଅସତ୍, ବ୍ୟକ୍ତିଗତ ସ୍ୱାର୍ଥ ସିଦ୍ଧି ପ୍ରବଣ କୃତ୍ରିମ ଦେଶପ୍ରେମିକ ସେଥିପାଇଁ ସେମାନଙ୍କ ଭିତରୁ କେହି ଆବଶ୍ୟକ ବେଳେ ବିଦ୍ରୋହର ନେତୃତ୍ୱ ନେବାକୁ ନୈତିକ ସାହସ କରିପାରିଲେ ନାହିଁ ଏବଂ ଅବିଚାରିତ ଭାବେ 'ବିଦ୍ରୋହ'ର ଅବସାନ କରିବାକୁ ନିର୍ଦ୍ଦେଶ ଦେଲେ । ''ଆର୍ମି ଡିସିପ୍ଲିନ୍'' ଦୃଷ୍ଟିରୁ ସେହି ନିର୍ଦ୍ଦେଶ ସମସ୍ତେ

ମାନିଗଲେ ସିନା- କେହି ସେଥିରେ ସନ୍ତୁଷ୍ଟ ନଥିଲେ । (ନୌବିଦ୍ରୋହର ଇତିହାସ- ୧୩୫ ପୃଷ୍ଠା ଲେଖକ- ଫଣୀ ଭୂଷଣ ଦାସ, ନୌବାହିନୀ ପେଟି ଅଫିସର୍)

ଉପସଂହାରରେ ଯେତେ ଗୁଡ଼ିଏ ବିଷୟର ଅବତାରଣା କରାଯାଇଛି, ତାହା କେବଳ ଅନୁମାନ ବା କଳ୍ପନା ଜଳ୍ପନା ଉପରେ ପର୍ଯ୍ୟବେସିତ ନୁହେଁ । ଏଥିରେ ବହୁ ବାସ୍ତବତା ମଧ ନିହିତ ଅଛି । କାରଣ ସାମରିକ ବା ସୈନିକମାନଙ୍କ ମଧରେ ବ୍ରିଟିଶ୍ ସରକାର ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବା ଆଦୌ ନୂଆ କଥା ନଥିଲା । ତେଣୁ ୧୯୪୬ର ବିଦ୍ରୋହକୁ ଯଦି ବାରମ୍ବାର ବାଧା ଦିଆଯାଇନଥାନ୍ତା, ତାହା ଅନତି ବିଳମ୍ବରେ ଏକ ନିଷ୍ପତ୍ତିମୂଳକ ଭୂମିକାରେ ଅବତୀର୍ଣ୍ଣ ହୋଇଥାନ୍ତା । ସେ ପରିସ୍ଥିତିରେ ଅନ୍ତତଃ ନିଜକୁ ସମାଜବାଦୀ ବୋଲି କହୁଥିବା ନେହେରୁ ଯେ ସାମରିକ ବିଦ୍ରୋହୀମାନଙ୍କ ଦ୍ୱାରା ନିର୍ବିଚାରରେ ''ଶତ୍ରୁ'' ଭାବରେ ଘୋଷିତ ହୋଇଥାନ୍ତେ, ତାହା ଆଦୌ ଘଟିନଥାନ୍ତା ବରଂ ସେ ସୈନ୍ୟବିଦ୍ରୋହର ନେତାମାନଙ୍କ ଦ୍ୱାରା ନୂତନ ଭାରତର ସର୍ବୋଚ୍ଚ କର୍ତ୍ତା ଭାବରେ ଯେ ଗୃହୀତ ହୋଇନଥାନ୍ତେ, ତାହାର କୌଣସି କାରଣ ନଥିଲା । ଅବଶ୍ୟ ସେଭଳି ଭାରତରେ ସାମ୍ପ୍ରଦାୟିକବାଦୀ ମାନେ କଦାପି କ୍ଷମତା ବଳୟ ଭିତରକୁ ଆସି ପାରିନଥାନ୍ତେ । ମହାତ୍ମା ଗାନ୍ଧୀ ତାଙ୍କର ଯଥୋପଯୁକ୍ତ ମର୍ଯ୍ୟାଦା ସହକାରେ ସମ୍ମାନଜନକ ସ୍ଥାନରେ ରହିଥାନ୍ତେ ବୋଲି ଚିନ୍ତାଶୀଳ ବ୍ୟକ୍ତିମାନେ ମତ ଦିଅନ୍ତି । ତାଙ୍କର ପ୍ରିୟ ଶିଷ୍ୟମାନେ ତାଙ୍କୁ ଜୀବଦ୍ଦଶାରେ ଯେପରି ଅପ୍ରାସଙ୍ଗିକ କରି ଦେଇଥିଲେ ବିପ୍ଲବୀ ଭାରତରେ ତାହା କଦାପି ହୋଇନଥାନ୍ତା କିମ୍ବା ସାମ୍ପ୍ରଦାୟିକ ଅସ୍ତ୍ରରେ ତାଙ୍କୁ ଦୟନୀୟ ଭାବରେ ହତ୍ୟା କରିବାକୁ କେହି ଦୁଃସାହସ କରିନଥାନ୍ତା ।

ଇଂରାଜୀରେ ଗୋଟିଏ ଉକ୍ତି ଅଛି ଯେ "For all the sad words of tongue and pen, the saddest are these-" It might have been." ଅର୍ଥାତ୍ ମୁହଁରୁ ବା ଲେଖନୀରୁ ଯେଉଁ ଦୁଃଖଦାୟକ ଶବ୍ଦସବୁ ନିସୃତ ହୁଏ, ସେଗୁଡ଼ିକ ମଧ୍ୟରୁ ସବୁଠାରୁ ଦୁଃଖଦାୟକ ହେଉଛି ''ଏଭଳି ନହୋଇ ସେଭଳି ହୋଇଥାନ୍ତା କି !'' ତେଣୁ କେବଳ କଳ୍ପନା ବିଳାସରେ ନୁହେଁ ବାସ୍ତବତାର କଷଟି ପଥରରେ ଉପରୋକ୍ତ ଉକ୍ତିଟିକୁ ବିଚାର କରାଯାଉଅଛି । ଶେଷରେ ଏହା ନିର୍ବିବାଦରେ କୁହାଯାଇ ପାରିବ ଯେ ଯଦି ସେହି ସାମରିକ ବିଦ୍ରୋହ ଫଳରେ ଅଖଣ୍ଡ ଭାରତ ସ୍ୱାଧୀନ ହୋଇଥାଆନ୍ତା, ତେବେ ସେହି ଭାରତରେ ଆଜି ଶୋଷଣ, କଷଣ, ଦାରିଦ୍ର୍ୟ ଓ ଦୁର୍ଭାଗ୍ୟ ବଦଳରେ ପ୍ରତିଷ୍ଠିତ ହୋଇଥାନ୍ତା ଏକ ଶ୍ରେଣୀହୀନ-ଶୋଷଣମୁକ୍ତ-ସମାଜବାଦୀ ଭାରତ ।

ବିପ୍ଳବ ଦୀର୍ଘଜୀବୀ ହେଉ ।

■■■

# ସହାୟକ ପୁସ୍ତକ ସୂଚୀ

1. ନୌ ବିଦ୍ରୋହର ଇତିହାସ (ବଙ୍ଗଳା) - ଶ୍ରୀ ଫଣୀଭୂଷଣ ଭଟ୍ଟାଚାର୍ଯ୍ୟ (ପେଟି ଅଫିସର୍ - ରୟାଲ୍ ଇଣ୍ଡିୟାନ୍ ନାଭି)

2. First War of Independence of India - Karl Marx

3. History of Freedom Movement in India - TARACHAND (4 Vols.)

4. The Indian Rebellion - Alexandar Duff

5. The History of Indian Mutiny - Sir S. Ahamad

6. The Springing Tiger - Hugh Toye

7. The War of the Springing Tiger - G.H.Corr

8. The Story of the INA - S.A.Ayer

9. The Indian Army - Its Contribution to the Development of Nation - Stephen P.Cohen

10. The untold Story - Lt. General B.M.Kaul

11. My Nonviolence -M.K.Gandhi

12. Army Magazines

# ଲେଖକଙ୍କର ଅନ୍ୟାନ୍ୟ ପୁସ୍ତକ

| | | | |
|---|---|---|---|
| ୧. | ଗ୍ରାମଦାନ | ୧୯୫୬ | (ଉତ୍କଳ ଖଦୀ ମଣ୍ଡଳ) |
| ୨. | ଛାତ୍ରଙ୍କ ପ୍ରତି ଜୟପ୍ରକାଶ | ୧୯୫୬ | (ଉତ୍କଳ ଖଦୀ ମଣ୍ଡଳ) |
| ୩. | ଅଗ୍ନିଯୁଗର ଆହ୍ୱାନ | ୧୯୭୪ | (ଅଗ୍ନିଯୁଗ ପ୍ରକାଶନି) |
| ୪. | ଭାରତର ସଶସ୍ତ୍ର ମୁକ୍ତି ସଂଗ୍ରାମ (୨ୟ ସଂ.) | ୧୯୮୦ | (ଗ୍ରନ୍ଥ ମନ୍ଦିର) |
| ୫. | କଳାପାଣିରେ ଅଗ୍ନିଶିଖା | ୧୯୮୨ | (ଅଗ୍ନିଯୁଗ ପ୍ରକାଶନି) |
| ୬. | କନିକା ପ୍ରଜା ଆନ୍ଦୋଳନର ଇତିହାସ<br>- ଶହିଦ ବାସୁ -ବିଶ୍ୱନି | ୧୯୮୭ | (ଅଗ୍ନିଯୁଗ ପ୍ରକାଶନି) |
| ୭. | ଅଗ୍ନିଯୁଗର ପୁରାଣ | ୧୯୮୮ | (ଅଗ୍ନିଯୁଗ ପ୍ରକାଶନି) |
| ୮. | ରକ୍ତସ୍ନାତା | ୧୯୯୨ | (ଅଗ୍ନିଯୁଗ ପ୍ରକାଶନି) |
| ୯. | ନେତାଜୀ ଆଉ ଫେରି ନାହାନ୍ତି (୨ୟ ସଂ.) | ୧୯୯୭ | (ଗ୍ରନ୍ଥ ମନ୍ଦିର) |
| ୧୦. | ଫାଶୀ ମଞ୍ଚରେ ବିପ୍ଳବୀ (୨ୟ ସଂ.)<br>(ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ) | ୧୯୯୭ | (ଗ୍ରନ୍ଥ ମନ୍ଦିର) |
| ୧୧. | ଭାରତ ବିଭାଜନ<br>ସେହି ରକ୍ତାକ୍ତ ଅଗଷ୍ଟ ପନ୍ଦର | ୨୦୦୩ | (ଲୋହିଆ ଏକାଡେମୀ) |
| ୧୨. | ସଶସ୍ତ୍ର ସଂଗ୍ରାମରେ<br>ଓଡ଼ିଶାର ବୀର ଓ ବୀରାଙ୍ଗନା | ୨୦୦୫ | (ଲୋହିଆ ଏକାଡେମୀ) |
| ୧୩. | ଭାରତର ସ୍ୱାଧୀନତା ସଂଗ୍ରାମରେ<br>ସାମରିକ ବିଦ୍ରୋହ | ୨୦୦୬ | (ଲୋହିଆ ଏକାଡେମୀ) |
| ୧୪. | Non-cooperation Movement<br>in Kaulia | ୧୯୯୪ | (ଅଗ୍ନିଯୁଗ ପ୍ରକାଶନି) |
| ୧୫. | ହିଟଲରର ଇହୁଦୀ ଗଣ ସଂହାର ଶିବିର -<br>ଜଣେ ବନ୍ଦିନୀର ଆତ୍ମକଥା | ୨୦୦୭ | (ଲୋହିଆ ଏକାଡେମୀ) |
| ୧୬. | ବହ୍ନିମାନ୍ ମାଳତୀ ଚୌଧୁରୀ | | (ପ୍ରସ୍ତୁତି ପଥେ) |



ବ୍ରିଟିଶ ସାମ୍ରାଜ୍ୟବାଦ ଓ କନିକାର ରାଜତନ୍ତ୍ରବାଦ ବିରୁଦ୍ଧରେ ଛାତ୍ରାବସ୍ଥାରୁ ଆରମ୍ଭ ହୋଇଥିବା ସଂଗ୍ରାମ ଏବେ ବି ଅବ୍ୟାହତ । ଗାନ୍ଧିବାଦୀ ଜୀବନଚର୍ଯ୍ୟା ଓ ମାର୍କ୍ସବାଦୀ ଦର୍ଶନ ପ୍ରତି ଅଟଳ ବିଶ୍ୱାସ ଓ ନିଷ୍ଠା, ସ୍ୱାଧୀନତା ସଂଗ୍ରାମରେ ସଶସ୍ତ୍ର ବୈପ୍ଳବିକ ଆନ୍ଦୋଳନର ଅବଦାନ ସମ୍ପର୍କରେ ବିଶେଷ ଗବେଷଣା ଓ ସଂକଳନ । ଅଦ୍ୟାବଧି ପ୍ରକାଶିତ ୧୪ ଗୋଟି ପୁସ୍ତକ ମଧ୍ୟରୁ ୧୦ ଗୋଟି ସମର ସାହିତ୍ୟ ପର୍ଯ୍ୟାୟର । 'ଭାରତର ସଶସ୍ତ୍ର ମୁକ୍ତି ସଂଗ୍ରାମ' ସର୍ବଶ୍ରେଷ୍ଠ କୃତି ।

ଜନ୍ମ, ୩୦ ସେପ୍ଟେମ୍ବର ୧୯୨୭, ଜରିସାହି, ରାଜକନିକା ।





ଲୋହିଆ ଏକାଡେମୀ ଟ୍ରଷ୍ଟ